# ରାଣୀଙ୍କ ଶାସନ

ମୂଳ ରଚନା: ଆଇଭର୍ ଜେନିଙ୍ଗସ୍
ଅନୁବାଦ: ଅଧ୍ୟାପକ ବିଷ୍ଣୁ ଚରଣ ରାଉତ

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ରାଣୀଙ୍କ ଶାସନ

( ବି.ଏ. ଶ୍ରେଣୀ ନିମନ୍ତେ )

ମୂଳରଚନା

ସାର୍ ଆଇଭର ଜେନିଙ୍ଗ୍ସ

ଅନୁବାଦ

ଅଧ୍ୟାପକ ବିଷ୍ଣୁଚରଣ ରାଉତ, ଏମ୍. ଏ.,
ରାଜନୀତି-ବିଜ୍ଞାନ ବିଭାଗ,
ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟ,
ଭୁବନେଶ୍ୱର

୧୯୭୨



ପ୍ରକାଶକ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# QUEEN'S GOVERNMENT

*By* : ***Sir Ivor Jennings***

( FOR DEGREE STUDENTS )

Published by the Orissa State Bureau of Text book Preparation and Production under the centrally sponsored scheme of production of books and literature in regional languages at the University level of the Government of India in the Ministry of Education & Social Welfare ( Department of Education ), New Delhi.

*Translated by* :

***Sri Bishnu Charan Rout,*** M. A.

Reader in Political Science, Bauxi Jagabandhu Bidyadhar College, Bhubaneswar.

*Reviewed by* :

***Dr. Sreeram Chandra Dash*** M.A., D. Phil. (Berlin), LL.B.

Retired Professar of Political Science, Kukuriapada, Cuttack,

*Language Scrutinised by* :

***Smt. Haripriya Mohapatra,*** M.A.

Language Expert, Text Book Bureau, Bhubaneswar.

*First Edition—1976 : 2100 Copies.*

*Published by* :

**THE ORISSA STATE BUREAU OF**
**TEXT BOOK PREPARATION & PRODUCTION**
**Bhubaneswar**

**Publication No. 208**



Paper used for this book was made available from the Government of Orissa at concessional rate.

*Printed by* :

**The Cuttack Printing House,**
Balubazar, Cuttack.

**Price : Rs. 11-50**

# ଉପୋଦ୍‌ଘାତ

"ପଢ଼ିଲି ନାନା ଦେଶ ଭାଷା
କାହିଁ ତ ନ ପୂରିଲା ଆଶା,
ହେଉ ପଛକେ ସେ ନିକୃଷ୍ଟ
ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।"

ଫକୀରମୋହନ

ଅନେକ ସମୟରେ ଯୁକ୍ତି କରାଯାଇଛି ଯେ କଲେଜ ଓ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ ମାଧ୍ୟମ କେବଳ ଗୋଟିଏ ଭାଷାରେ କରାଯାଉ, ବର୍ତ୍ତମାନ ପାଇଁ ଇଂରାଜୀ ଓ ପରେ ଇଂରାଜୀ ପରିବର୍ତ୍ତିରେ ହିନ୍ଦୀ । ଏହା ପଛରେ ଯୁକ୍ତି ହେଉଛି ଯେ ଭାରତବର୍ଷର ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଶିକ୍ଷକ ଓ ଛାତ୍ର ସହଜରେ ଯିବା ଆସିବା କରିପାରିବେ; ବିଶ୍ୱବିଦ୍ୟାଳୟର ଶିକ୍ଷିତଶ୍ରେଣୀ, ବ୍ୟବସାୟୀଗୋଷ୍ଠୀ ଏବଂ ଶାସକଗୋଷ୍ଠୀଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ ସୁଗମ ହେବ; ଭାରତର ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ବୌଦ୍ଧିକ ସହଯୋଗର ଅଭିବୃଦ୍ଧି ଘଟିବ । ଅନ୍ୟାନ୍ୟ ଅନେକ ଦୃଷ୍ଟିରୁ ଦେଶରେ ଏକ ସୁସଂହତ ସାଂସ୍କୃତିକ ଜୀବନର ବିକାଶ ଘଟିବ ।

ଭାରତ ସରକାରଙ୍କଦ୍ୱାରା ନିଯୁକ୍ତ ଶିକ୍ଷା କମିସନ୍ (୧୯୬୪-୬୬) ସବୁ ଦିଗରୁ ବିଚାର କରି ସୁଚିନ୍ତିତ ମତ ଦେଇଥିଲେ ଯେ ଏହି ସବୁ ଯୁକ୍ତି ଠିକ୍ ନୁହେଁ । ବାସ୍ତବ କ୍ଷେତ୍ରରେ କମିସନ୍ ହୃଦୟଙ୍ଗମ କରିଥିଲେ ଯେ ଏହାଦ୍ୱାରା ଉଚ୍ଚଶିକ୍ଷା କ୍ଷେତ୍ରରେ କେବଳ ଇଂରାଜୀ ହିଁ ଶିକ୍ଷାର ମାଧ୍ୟମ ହୋଇ ଅନିର୍ଦ୍ଦିଷ୍ଟ କାଳ ପାଇଁ ରହିଯିବ । ଦେଶର ସର୍ବାଧିକ ମଙ୍ଗଳ ଦୃଷ୍ଟିରୁ କମିସନ୍ ଏହି ସିଦ୍ଧାନ୍ତକୁ ଗ୍ରହଣ କରିପାରି ନ ଥିଲେ । କମିସନ୍ ଆହୁରି ମତ ଦେଇଥିଲେ ଯେ ଭାରତବର୍ଷର ସବୁପ୍ରାନ୍ତରେ ହିନ୍ଦୀ ଉଚ୍ଚଶିକ୍ଷାର ମାଧ୍ୟମ ହେବ । ଆସନ୍ତା କିଛି ବର୍ଷ ପାଇଁ ଏହା ସମ୍ଭବପର ନଥିଲା ଓ ଅଣ-ହିନ୍ଦୀ ଅଞ୍ଚଳରେ ହିନ୍ଦିକୁ ମାଧ୍ୟମରୂପେ ଗ୍ରହଣ କରିବାରେ କେତେକ ଅସୁବିଧା ଥିଲା ଓ ସେଥିପାଇଁ ତାର ବିରୋଧ ମଧ୍ୟ ହେଉଥିଲା । ତେଣୁ କମିସନ୍ ମତ ଦେଇଥିଲେ ଯେ ଆଞ୍ଚଳିକ ଭାଷାକୁ ବିଶ୍ୱବିଦ୍ୟାଳୟ ସ୍ତରରେ ଶିକ୍ଷାର ମାଧ୍ୟମ କରିବା ପାଇଁ ଯେଉଁ ଅନୁକୂଳ ବାତାବରଣ ସେତେବେଳେ ପରିସ୍ଫୁଟ ହେଉଥିଲା ତାର ବିରୁଦ୍ଧାଚରଣ କରିବା ବିଜ୍ଞତାର ପରିଚାୟକ ହେବ ନାହିଁ ।

କମିସନ୍‌ର ଦୃଢ଼ ହୃଦ୍‌ବୋଧ ହୋଇଥିଲା ଯେ ଉଚ୍ଚଶିକ୍ଷାର ମାଧ୍ୟମରୂପେ ଆଞ୍ଚଳିକ ଭାଷାର ପ୍ରବର୍ତ୍ତନ ଓ ବହୁଳ ପ୍ରଚଳନ ହେଲେ ସେଥିରୁ ଅନେକ ଉପକାର ମିଳିବ । ଆଞ୍ଚଳିକ ଭାଷାର ପ୍ରଭୂତ ବିକାଶ ଭାରତବର୍ଷର ଜନସାଧାରଣଙ୍କ ଉନ୍ନତି ପାଇଁ ଏକାନ୍ତ ଅପରିହାର୍ଯ୍ୟ ବୋଲି କମିସନ୍ ବିଚାର କରିଥିଲେ । ଏତଦ୍‌ବ୍ୟତୀତ ଶିକ୍ଷାର ଗୁଣାତ୍ମକ ଉତ୍କର୍ଷ ତାହାଦ୍ୱାରା ହାସଲ ହୋଇପାରିବ ବୋଲି କମିସନ୍ ମତ ଦେଇଥିଲେ । କମିସନ୍ ମଧ୍ୟ ମତ ଦେଇଥିଲେ ଯେ ଆଞ୍ଚଳିକ ଭାଷାର ବିକାଶ ଉପରେ ସେମାନେ ଦୃଢ଼ ମତ ପୋଷଣ କରୁଛନ୍ତି ବୋଲି କେହି ଯେପରି ଭୁଲ ନ ବୁଝନ୍ତି ଯେ ସେମାନେ ଇଂରାଜୀ କିମ୍ବା ଅନ୍ୟ କୌଣସି ପୃଥିବୀର

ସମ୍ପୃକ୍ତ ଭାଷାର ଶିକ୍ଷା କରିବାର ବିରୋଧୀ । ସେମାନଙ୍କର ମତ ଥିଲା ଯେ ଆମର ଶିକ୍ଷା ଆଞ୍ଚଳିକ ଭାଷା ମାଧ୍ୟମଯୋଗୁଁ ଅଧିକ ଉପକାରୀ ହେବ । ତାହାହେଲେ ଇଂରାଜୀ ଓ ପୃଥିବୀର ଅନ୍ୟାନ୍ୟ ଭାଷା ଶିକ୍ଷାରୁ ଆମେ ଅଧିକ ଲାଭବାନ ହେବା ।

ଶିକ୍ଷା କମିସନଙ୍କ ଏହି ଯେଉଁ ଅକାଟ୍ୟ ଯୁକ୍ତି ତାହା ଭାରତ ସରକାର ଅକୁଣ୍ଠିତ ଚିତ୍ତରେ ଗ୍ରହଣକଲେ । ୧୯୬୮ ମସିହା ଜାନୁଆରୀ ୧୮ ତାରିଖ ଦିନ ଭାରତସରକାର ଉଭୟ ଲୋକସଭା ଓ ରାଜ୍ୟସଭାରେ ନିମ୍ନଲିଖିତ ପ୍ରସ୍ତାବ ଆକାରରେ ଜାତୀୟ ଶିକ୍ଷାନୀତିକୁ ଘୋଷଣା କରିଥିଲେ ।

"ଭାରତୀୟ ସଂସ୍କୃତିର ବିକାଶ ନିମନ୍ତେ ଭାରତୀୟ ଭାଷାମାନଙ୍କର ତଥା ସାହିତ୍ୟର ଶକ୍ତିଶାଳୀ ବିକାଶ ଅପରିହାର୍ଯ୍ୟ । ଏହା ନ ହେଲେ ଲୋକମାନଙ୍କର ସୃଜନୀ ଶକ୍ତି ବିକଶିତ ହେବ ନାହିଁ, ଶିକ୍ଷାର ମାନରେ ଅଭିବୃଦ୍ଧି ଘଟିବ ନାହିଁ; ଜନସାଧାରଣଙ୍କ ମଧ୍ୟରେ ଜ୍ଞାନର ପ୍ରସାର ହେବ ନାହିଁ ଏବଂ ଶିକ୍ଷିତ ସମ୍ପ୍ରଦାୟ ଓ ଜନସାଧାରଣଙ୍କ ମଧ୍ୟରେ ବ୍ୟବଧାନ ଅଧିକ ବିସ୍ତୀର୍ଣ୍ଣ ନ ହେଲେ ମଧ୍ୟ ସେହିପରି ରହିଥିବ ।"

ଭାରତ ସରକାରଙ୍କ ଏହି ଜାତୀୟ ଶିକ୍ଷାନୀତି ଅନୁଯାୟୀ କେନ୍ଦ୍ର ଶିକ୍ଷା ଓ ଯୁବ ମଙ୍ଗଳ ବିଭାଗ, ଆଞ୍ଚଳିକ ଭାଷାରେ ବିଶ୍ୱବିଦ୍ୟାଳୟ ସ୍ତରରେ ପାଠ୍ୟପୁସ୍ତକ ପ୍ରଣୟନ ପାଇଁ ଏକ ବ୍ୟାପକ କାର୍ଯ୍ୟକ୍ରମ ଗ୍ରହଣ କଲେ ଯଦ୍ୱାରା କି ଉଚ୍ଚଶିକ୍ଷା ସ୍ତରରେ ଇଂରାଜୀରୁ ଆଞ୍ଚଳିକ ଭାଷାକୁ ଶିକ୍ଷାର ମାଧ୍ୟମ ପରିବର୍ତ୍ତନ ସହଜ ହେବ । ଏଥିପାଇଁ କେନ୍ଦ୍ର ସରକାର ୧୯୬୮-୬୯ ମସିହାରୁ ଭାରତର ସମସ୍ତ ରାଜ୍ୟକୁ ଆଞ୍ଚଳିକ ଭାଷାରେ ବିଶ୍ୱବିଦ୍ୟାଳୟ ସ୍ତରରେ ପୁସ୍ତକ ପ୍ରକାଶନ ପାଇଁ ଆର୍ଥିକ ସାହାଯ୍ୟ ପ୍ରଦାନ କରି ଆସୁଛନ୍ତି । ଓଡ଼ିଶାରେ ଏହି ଉଦ୍ଦେଶ୍ୟର ପରିପୂର୍ତ୍ତି ପାଇଁ ୧୯୭୦ ମାର୍ଚ୍ଚ ମାସରୁ "ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା" ଗଠିତ ହୋଇ କାର୍ଯ୍ୟକରି ଆସୁଛି । ଓଡ଼ିଶାର ସୁଧୀ ଅଧ୍ୟାପକବୃନ୍ଦଙ୍କ ଲିଖିତ ସହସ୍ରାଧିକ ଉପାଦେୟ ଗ୍ରନ୍ଥ କଲେଜ ଓ ବିଶ୍ୱବିଦ୍ୟାଳୟ ଛାତ୍ର ଛାତ୍ରୀମାନଙ୍କ ପାଇଁ ଏହି ସଂସ୍ଥା ଆନୁକୂଲ୍ୟରେ ପ୍ରକାଶିତ ହୋଇ ସାରିଲଣି ।

ବର୍ତ୍ତମାନ ମହାବିଦ୍ୟାଳୟର ଅଧ୍ୟାପକ ଅଧ୍ୟାପିକାବୃନ୍ଦଙ୍କୁ ଅନୁରୋଧ ଯେ ସେମାନେ ମାତୃଭାଷା ମାଧ୍ୟମରେ ଶ୍ରେଣୀଗୃହଗୁଡ଼ିକରେ ଶିକ୍ଷାଦାନପୂର୍ବକ ଆଞ୍ଚଳିକ ଭାଷାର ପୁଷ୍ଟିପ୍ରଚାର ଓ ପ୍ରସାର ଦ୍ୱାରା ତାହାର ସମୁନ୍ନତି ବିଧାନ କରନ୍ତୁ ।

ପ୍ରସ୍ତୁତ ପୁସ୍ତକ "ରାଣୀଙ୍କ ଶାସନ" "Queen's Government" ଶୀର୍ଷକ ଇଂରାଜୀ ପୁସ୍ତକର ଓଡ଼ିଆ ଅନୁବାଦ—ଅନୁବାଦକ ଅଧ୍ୟାପକ ଶ୍ରୀ ବିଷ୍ଣୁଚରଣ ରାଉତ ଏଥିପାଇଁ ଧନ୍ୟବାଦାର୍ହ । ଏହି ପୁସ୍ତକର ସମୀକ୍ଷକ ଡକ୍ଟର ଶ୍ରୀ ରାମଚନ୍ଦ୍ର ଦାଶ ଓ ଭାଷା ସଂଶୋଧିକା ଅଧ୍ୟାପିକା ଶ୍ରୀମତୀ ହରପ୍ରିୟା ମହାପାତ୍ରଙ୍କୁ ସଂସ୍ଥା ତରଫରୁ ଧନ୍ୟବାଦ ଦେଉଛି ।

ଭୁବନେଶ୍ୱର
୨୨ ନଭେମ୍ବର, ୧୯୭୬
୧ ମାର୍ଗଶୀର, ୧୮୯୮ ଶକାବ୍ଦ

ନିର୍ଦ୍ଦେଶକ
ଗଦାଧର ମିଶ୍ର
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

# ଇଂରାଜୀ ପୁସ୍ତକରେ ଥିବା ମୁଖବନ୍ଧ

ବ୍ରିଟିଶ ସମ୍ବିଧାନ ବର୍ଣ୍ଣନା କରିବାରେ ନିମ୍ନଲିଖିତ ଚାରିଗୋଟି ପ୍ରଣାଳୀ ମଧ୍ୟରୁ କୌଣସି ଗୋଟିଏ କିମ୍ବା ଏକାଧିକ ପ୍ରଣାଳୀ ବ୍ୟବହୃତ ହୋଇପାରେ । ଏହି ପ୍ରଣାଳୀଗୁଡ଼ିକ ହେଲ— ଐତିହାସିକ ଆଇନଗତ, ବିଶ୍ଳେଷଣାତ୍ମକ ଓ ସମାଲୋଚନାମୂଳକ । ଶେଷୋକ୍ତ ପ୍ରଣାଳୀରେ ଦାର୍ଶନିକ କିମ୍ବା ରାଜନୈତିକ ଧାରଣାର ଆବଶ୍ୟକ ହୋଇଥାଏ ଏବଂ ସେଥିପାଇଁ ତାହାକୁ ଏହି ପୁସ୍ତକରେ ବାଦ୍ ଦିଆଯାଇଅଛି । ଅବଶ୍ୟ ସମ୍ବିଧାନରେ ଥିବା ଉଦାରବାଦ ଓ ସହନଶୀଳ ମତକୁ ଏହି ପୁସ୍ତକରେ ସ୍ଥାନ ଦିଆଯାଇଛି । ପାଠକକୁ ସମ୍ବିଧାନ ବିଷୟରେ ଏକ ସାଧାରଣ ଉପକ୍ରମଣିକା ଦେବା ପାଇଁ ଅନ୍ୟାନ୍ୟ ତିନୋଟି ପ୍ରଣାଳୀ ଏହି ପୁସ୍ତକରେ ବ୍ୟବହାର କରାଯାଇଛି । ପାଠକ ଇଚ୍ଛାକଲେ ଏହି ତିନୋଟି ପ୍ରଣାଳୀ ସମ୍ବନ୍ଧରେ ଅଧିକ ଅଧ୍ୟୟନ କରିପାରେ । ଏହି ପୁସ୍ତକ ଓ ମୋର ଅନ୍ୟ ପୁସ୍ତକ, "ବ୍ରିଟିଶ ସମ୍ବିଧାନ" (**"The British Constitution"—Cambridge University Press, 4th Edition, 1951**) ରେ କେତେକ ଚତ୍ୱାଧାରୀ ସମାନ ଅଛି, କିନ୍ତୁ ସାଧାରଣଭାବରେ ସେଗୁଡ଼ିକର ଆଲୋଚନା ଭିନ୍ନ ଅଟେ ।

ଜଣେ ସାବଧାନ ପାଠକ ବିଭିନ୍ନ ଅଧ୍ୟାୟରେ କେତେକ ବିଷୟରେ ପୁନରାବୃତ୍ତି ଦେଖିପାରେ । ଏହାର କାରଣ ସ୍ୱରୂପ କୁହାଯାଇପାରେ ଯେ ଇଂଲଣ୍ଡରେ ସମ୍ପୂର୍ଣ୍ଣ ସମ୍ବିଧାନ ଏକକ ରହି ନ ଥାଏ । ଏହିପରି ଏକ ପୁସ୍ତକରେ କୌଣସି ବିଷୟକୁ ଥରେ ପ୍ରକାଶ କରିବା ଅପେକ୍ଷା ବିଭିନ୍ନ ଅବସ୍ଥାରେ ସେହି ବିଷୟକୁ ଦୁଇଥର ପ୍ରକାଶ କରିବା ଶ୍ରେୟସ୍କର ହୋଇଥାଏ ।

ଟ୍ରିନିଟୀ ହଲ୍
କ୍ୟାମ୍ବ୍ରିଜ
୨୫ ନଭେମ୍ବର ୧୯୨୪

ଡବଲ୍ୟୁ. ଆଇ. ଜେନିଙ୍ଗସ୍
**W. I. Jennigs**

# ଭୂମିକା

ଭାରତରେ ଆଞ୍ଚଳିକ ଭାଷା ମାଧ୍ୟମରେ ମହାବିଦ୍ୟାଳୟସ୍ତରରେ ଶିକ୍ଷାଦାନ କରିବା ପାଇଁ ସୁପାରିଶ କରି କୋଠାରୀ କମିସନ୍ ଏକ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ । ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ କରାଗଲେ ଛାତ୍ରଛାତ୍ରୀବୃନ୍ଦ ସହଜରେ ବିଷୟବସ୍ତୁ ଶିକ୍ଷା କରିବା ସଙ୍ଗେ ସଙ୍ଗେ ଶୃଙ୍ଖଳିତ ଭାବେ ନିଜର ମନୋଭାବ ପ୍ରକାଶ କରିଥାନ୍ତି ।

ଇଂରାଜୀ ଭାଷା ଏକ ଆନ୍ତର୍ଜାତିକ ଭାଷା । ଏହି ଭାଷାର ବହୁ ଉପାଦେୟ ପାଠ୍ୟ-ପୁସ୍ତକଗୁଡ଼ିକୁ ଆଞ୍ଚଳିକ ଭାଷାରେ ଅନୁବାଦ କରିବା ପାଇଁ ଭାରତ ସରକାର ପଦକ୍ଷେପ ନେଇଥିଲେ । ଏହାଦ୍ୱାରା ଛାତ୍ରଛାତ୍ରୀମାନେ ବିଶ୍ୱର ବହୁ ବିଶିଷ୍ଟ ଲେଖକଙ୍କର ଚିନ୍ତାଧାରା ସହ ପରିଚିତ ହୋଇପାରିବେ ଓ ଆମ ଶିକ୍ଷାର ମାନ ଆନ୍ତର୍ଜାତିକ ସ୍ତର ସହ ସମକକ୍ଷ ହୋଇ ପାରିବ ।

ଉପରୋକ୍ତ ଉଦ୍ଦେଶ୍ୟ ରଖି ବିଶ୍ୱ-ବିଖ୍ୟାତ ଇଂଲଣ୍ଡର ବିଶିଷ୍ଟ ରାଜନୀତି ବିଜ୍ଞାନ ଅଧ୍ୟାପକ ଆଇଭର ଜେନିଙ୍ଗସ୍ଙ୍କ ପୁସ୍ତକ, "Queen's Government" (ରାଣୀଙ୍କ ଶାସନ) ଅନୁବାଦ କରାଯାଇଛି । ଏହି ପୁସ୍ତକ ଅନୁବାଦ ସମୟରେ ରାଜନୀତି ବିଜ୍ଞାନରେ କୌଣସି ପରିଭାଷା ପୁସ୍ତକ ନ ଥିବାରୁ, କେତେକ ପରିଭାଷା ନେଇ ମତଭେଦ ଦେଖା ଦେଇପାରେ । ଓଡ଼ିଆ ଭାଷାର ଉନ୍ନତି ପାଇଁ ବେଳେ ବେଳେ କେତେକ ଇଂରାଜୀ ମୌଳିକ ଶବ୍ଦ ମଧ୍ୟ ଗ୍ରହଣ କରାଯାଇଛି ।

ଏହି ପୁସ୍ତକ ସ୍ନାତକ ଶ୍ରେଣୀର ଛାତ୍ରଛାତ୍ରୀମାନଙ୍କ ପାଇଁ ଉଦ୍ଦିଷ୍ଟ । "ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ" ସଂସ୍ଥାର କର୍ମକର୍ତ୍ତାବୃନ୍ଦ ଏହି ପୁସ୍ତକ ଅନୁବାଦ କରିବାର ସୁଯୋଗ ପ୍ରଦାନ କରିଥିବାରୁ ସେମାନଙ୍କ ନିକଟରେ ମୁଁ କୃତଜ୍ଞ । ଏହି ପୁସ୍ତକ ଅନୁବାଦ ଦ୍ୱାରା ଓଡ଼ିଆ ଭାଷାର ଯତ୍‌ସାମାନ୍ୟ ସମୃଦ୍ଧି ଓ ପାଠକ ପାଠିକା ବିଶେଷତଃ ସ୍ନାତକ ସ୍ତରରେ ଛାତ୍ରଛାତ୍ରୀମାନେ ଉପକୃତ ହେଲେ ମୋର ଶ୍ରମ ସାର୍ଥକ ହେବ ।

ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟ
ଭୁବନେଶ୍ୱର

ବିଷ୍ଣୁ ଚରଣ ରାଉତ
ପ୍ରାଧ୍ୟାପକ,
ରାଜନୀତି ବିଜ୍ଞାନ ବିଭାଗ

# ସୂଚୀପତ୍ର



---

# ପ୍ରଥମ ଅଧ୍ୟାୟ

## ଆଇନାନୁଧୀନ ସ୍ୱାଧୀନତା

## ( Freedom under the Law )

**ଆଇନର ଶାସନ ( The Rule of Law ) :**

ନିଜର ମୌଳିକ ରାଜନୈତିକ ଚିନ୍ତାଧାରାକୁ ଗୋଟିଏ ସୂତ୍ରରେ ପ୍ରକାଶ କରିବାକୁ ଜଣେ ଇଂରେଜ ଲୋକକୁ ( ଯେ କି ରାଜ୍ୟଗୋଷ୍ଠୀର ଲୋକମାନଙ୍କ ମଧ୍ୟରେ ଜଣେ ପ୍ରତିନିଧି ରୂପେ ବିବେଚିତ ହୋଇପାରେ ) କୁହାଗଲେ ସେ ତାହା ନିମ୍ନଲିଖିତ ଭାବେ ବ୍ୟକ୍ତ କରିଥାଏ : —

"ଆଇନ ଭଙ୍ଗ ନ କରି ଥିଲେ କୌଣସି ପୁରୁଷ (କିମ୍ବା ସ୍ତ୍ରୀ) ପୋଲିସ ଦ୍ୱାରା ଗିରଫ ହେବେ ନାହିଁ । ଜଣେ ଦଣ୍ଡାଧୀଶ କିମ୍ବା ନ୍ୟାୟାଧୀଶ ଓ ସପ୍ତବାନ (Jury) ଦ୍ୱାରା ଦୋଷୀ ସାବ୍ୟସ୍ତ ନ ହେଲା ପର୍ଯ୍ୟନ୍ତ କୌଣସି ବ୍ୟକ୍ତି କାରାଗାରରେ ବନ୍ଦୀ ହୋଇ ପାରିବ ନାହିଁ । ଆଇନାନୁମୋଦିତ କାର୍ଯ୍ୟାନୁଷ୍ଠାନ ଓ କ୍ଷତିପୂରଣ ଦିଆ ନ ଯିବା ପର୍ଯ୍ୟନ୍ତ କୌଣସି ବ୍ୟକ୍ତିଙ୍କୁ ତା'ର ସମ୍ପତ୍ତିରୁ ବଞ୍ଚିତ କରାଯାଇ ପାରିବ ନାହିଁ । ଆଇନରେ ବ୍ୟବସ୍ଥା ନ ଥିଲେ ସରକାରୀ କର୍ମଚାରୀମାନେ ଉକ୍ତ ବ୍ୟକ୍ତି ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରି ପାରିବେ ନାହିଁ । ସୁସ୍ପଷ୍ଟଭାବରେ ଦୋଷାଦୋଷ ପରିଲକ୍ଷିତ ନ ହେଲା ପର୍ଯ୍ୟନ୍ତ କୌଣସି ବ୍ୟକ୍ତି ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଇ ପାରିବ ନାହିଁ । କୌଣସି ବ୍ୟକ୍ତି ଉପରୋକ୍ତ ନିୟମମାନ ଲଙ୍ଘନ କଲେ ଏଥିପାଇଁ ସଂପୃକ୍ତ ବ୍ୟକ୍ତି ନ୍ୟାୟାଳୟରେ ଅଭିଯୋଗ କରିପାରେ, କିମ୍ବା ସମ୍ବାଦପତ୍ରରେ ତାହା ପ୍ରକାଶ କରି ଚାଞ୍ଚଲ୍ୟ ସୃଷ୍ଟି କରିପାରେ, ଅଥବା ସଂସଦରେ ଏହି ପ୍ରଶ୍ନ ଉତ୍ଥାପନ କରିବା ପାଇଁ ନିଜ ପ୍ରତିନିଧିଙ୍କୁ କହିପାରେ ।"

ଏହା ଏକ ଉତ୍କୃଷ୍ଟ ସୂତ୍ର । ୧୨୧୫ରେ ରନମିଡ଼ ନାମକ ସ୍ଥାନରେ ରାଜା ଜନ୍ ( King John ) ଯେଉଁ ବିଷୟଗୁଡ଼ିକରେ ରାଜି ହୋଇଥିଲେ ତାହାଠାରୁ ଏହା ବିଶେଷ ଭିନ୍ନ ନୁହେଁ ।

ମାଗ୍ନା କାର୍ଟା ( Magna Carta ) ବା ମହାସନନ୍ଦର ପ୍ରସିଦ୍ଧ ୩୯ ଅନୁଚ୍ଛେଦର ଅର୍ଥ ବିବାଦାସ୍ପଦ, କିନ୍ତୁ ଏହାକୁ ନିମ୍ନଲିଖିତମତେ ଅନୁବାଦ କରାଯାଇପାରେ—

"କୌଣସି ସ୍ୱାଧୀନ ବ୍ୟକ୍ତିକୁ ଅଟକ ବା ବନ୍ଦୀ କରାଯାଇ ପାରିବ ନାହିଁ କିମ୍ବା ତାକୁ ଭୂମିହୀନ କରାଯାଇ ପାରିବ ନାହିଁ । ତାକୁ ଦେଶରୁ ବହିଷ୍କାର କରି ହେବ ନାହିଁ ବା କୌଣସି ପ୍ରକାରେ ଧ୍ୱଂସ କରିହେବ ନାହିଁ ଅଥବା ତାର କାର୍ଯ୍ୟକଳାପ ଉପରେ କଟକଣା ଜାରି କରି ହେବ ନାହିଁ । ଏହା କେବଳ ସମାସ୍ତନ ଲୋକଙ୍କ ନିଷ୍ପତ୍ତି ବା ପ୍ରଚଳିତ ଆଇନ ବଳରେ ସମ୍ଭବପର ହୋଇପାରେ ।"

ପ୍ରାୟ ସାତଶହ ବର୍ଷରୁ ବେଶୀ ସମୟ ଧରି ଉପରୋକ୍ତ ପ୍ରସିଦ୍ଧ ଘୋଷଣା-ପତ୍ର ସ୍ୱଳ୍ପ ପରିବର୍ତ୍ତିତ ହୋଇ ଆଇନ ପୁସ୍ତକମାନଙ୍କରେ ସ୍ଥାନ ପାଇ ଆସିଅଛି । ବିଶେଷତଃ ସଂସଦର ଅନୁରୋଧକ୍ରମେ ପରବର୍ତ୍ତୀ ସମ୍ରାଟମାନେ ପଞ୍ଚାବନଥର ମାଗ୍ନା କାର୍ଟାକୁ ସ୍ୱୀକୃତ ପ୍ରଦାନ କରିଛନ୍ତି । ଇଂଲଣ୍ଡର ସୁପ୍ରସିଦ୍ଧ ଆଇନଜୀବୀ ସାର ଏଡ୍‌ଓ୍ୟାର୍ଡ଼ କୋକ୍ ( Sir Edward Coke ) ମାଗ୍ନା କାର୍ଟାର ପୁନରୁଦ୍ଧାର କରିଥିଲେ । ପ୍ରଥମ ଜେମସ୍ ଓ ପ୍ରଥମ ଚାର୍ଲସଙ୍କ ରାଜତ୍ୱ ସମୟରେ ବୃଦ୍ଧ କୋକ୍ ଇଂଲଣ୍ଡର ଇତିହାସ ପ୍ରସିଦ୍ଧ ବ୍ୟକ୍ତିମାନଙ୍କ ମଧ୍ୟରେ ସବୁଠାରୁ ଟାଣୁଆ ବ୍ୟକ୍ତି ଥିଲେ । ସେ "Institutes" ବା ବିଧି ନାମକ ଟୀକା ଲେଖିଥିଲେ ଓ ତାହା ସଂସଦର ଅନୁମତିସହ ୧୬୪୨ରେ ପ୍ରକାଶିତ ହୋଇଥିଲା । ସେହିବର୍ଷ ପ୍ରଥମ ଚାର୍ଲସଙ୍କୁ ଅବଜ୍ଞା କରିବା ପାଇଁ ସଂସଦରେ ନିଷ୍ପତ୍ତି ନିଆଯାଇଥିଲା । ଉକ୍ତ ବିଧି ବା "Institutes" ହିଁ ଆଧୁନିକ ଆଇନଶାସ୍ତ୍ରର ମୂଳଭିତ୍ତି । ଆଧୁନିକ ପୂର୍ବ ଦୃଷ୍ଟାନ୍ତଗୁଡ଼ିକ ( Modern Precedents ) ଅସ୍ପଷ୍ଟ ଥିଲେ ଅଥବା କୌଣସି ମତ ଉପରେ ପର୍ଯ୍ୟବସିତ ହୋଇ ନ ଥିଲେ ଆଇନଜ୍ଞମାନେ ଉପରୋକ୍ତ ଟୀକାର ସାହାଯ୍ୟ ନେଇଥାନ୍ତି । ୧୬୨୮ର ଅଧିକାର ନିବେଦନ ପତ୍ର ( The Petition of Right of 1628 ) ଠିକ୍ କୋକ୍‌ଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା । ଇଂଲଣ୍ଡର ସାଂବିଧାନିକ ଦଲିଲମାନଙ୍କ ମଧ୍ୟରେ ଏହା ଦ୍ୱିତୀୟସ୍ଥାନ ଅଧିକାର କରିଛି । ଉକ୍ତ ଆବେଦନ ପତ୍ରଟି ସଂସଦ ଦ୍ୱାରା ଆଲୋଚିତ ହେବାବେଳେ ଏହା ଛଅଗୋଟି ଅଧିନିୟମ ( Acts ) ଅର୍ଥାତ୍ ମହାସନନ୍ଦ ଓ ଅନ୍ୟ ପାଞ୍ଚ ଗୋଟି ସ୍ୱୀକାରକ ଅଧିନିୟମ ଉପରେ ପ୍ରତିଷ୍ଠିତ ଥିଲା । ମହାସନନ୍ଦର ୩୯ ଧାରାରେ ଯାହା ଲିପିବଦ୍ଧ ହୋଇଛି ତାହାହିଁ ଇଂଲଣ୍ଡର ଆଇନରେ ନିହିତ ଓ ତାହା ବିଭିନ୍ନ ପୁସ୍ତକମାନଙ୍କରେ ପ୍ରକାଶ୍ୟରେ ବର୍ଣ୍ଣିତ ହୋଇଛି ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଏହି ଯେ, ୩୯ ଧାରାର ପ୍ରଭାବ ସାଧାରଣ ଇଂରାଜୀ ଲୋକଙ୍କର ଆଚାର-ବ୍ୟବହାରରେ ଅନ୍ତର୍ନିହିତ ଥାଏ । ସେ କେବଳ ଜଣେ ସ୍ୱାଧୀନ ବ୍ୟକ୍ତି ନୁହେଁ; ବରଂ ସେ ତାର ସ୍ୱାଧୀନତାକୁ ପୂର୍ଣ୍ଣମାତ୍ରାରେ ଉପଭୋଗ କରିଥାଏ । ବିଶେଷତଃ ଆଇନର ଯଥାର୍ଥତା ଥିଲେ, ବୋଧହୁଏ ପୃଥିବୀରେ ଇଂରେଜ ଲୋକ ସବୁଠାରୁ ଶ୍ରେଷ୍ଠ ଆଇନ ବଶବର୍ତ୍ତୀ ନାଗରିକ । କେହି ଆଇନ ଭଙ୍ଗ କଲେ ତା ବିରୁଦ୍ଧରେ ସଙ୍ଗେ ସଙ୍ଗେ କାର୍ଯ୍ୟାନୁଷ୍ଠାନ କରିବା ପାଇଁ ଜଣେ ଇଂରେଜ ଅପେକ୍ଷା ଅନ୍ୟ କେହି ଏତେ ଆଗ୍ରହୀ ହୋଇ ନ ଥାଏ । କ୍ଷମତାରେ ଥିବା କୌଣସି ବ୍ୟକ୍ତି ନିର୍ଦ୍ଦେଶ ଦେଉଛି ବୋଲି ସେ ତାହାକୁ ମାନି ନ ଥାଏ; ବରଂ ନିର୍ଦ୍ଦେଶଗୁଡ଼ିକ ଆଇନସମ୍ମତ ହୋଇଥିଲେ ଏବଂ ଆଇନାନୁମୋଦିତ କ୍ଷମତାପ୍ରାପ୍ତ ବ୍ୟକ୍ତି ଦ୍ୱାରା ଜାରି କରାଯାଇଥିଲେ, ସେ ତାହା ମାନି ଥାଏ । ଇଂଲଣ୍ଡର ଜାତୀୟ ବୀରମାନଙ୍କ ମଧ୍ୟରୁ ବକିଙ୍ଗହାମ ସାୟାରର ଜନ୍ ହ୍ୱାମ୍‌ଡେନ ( John Hampden ) ଅନ୍ୟତମ । କୋଡ଼ିଏ ସିଲିଙ୍ଗ ଟିକସ ଦେବାକୁ ମନା କରିଦେବା ଫଳରେ ହ୍ୱାମ୍‌ଡେନ ଇତିହାସରେ ନିଜର ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରିଯାଇଛନ୍ତି । ସମ୍ରାଟଙ୍କ ନିର୍ଦ୍ଦେଶାନୁସାରେ ସେରିଫଙ୍କ ଦ୍ୱାରା ଉକ୍ତ ଟିକସ ତାଙ୍କ ଉପରେ ବସାଯାଇଥିଲା । "ପ୍ରସିଦ୍ଧ ନୌଶୁଳ୍କ ମକଦ୍ଦମା" ( The Great Case of Shipmoney ) ରେ ଏକ୍‌ସଚେକର ଚ୍ୟାମ୍ବରରେ * ତାଙ୍କର ବିଚାର ହୋଇଥିଲା । ସାତଜଣ ବିଚାରପତି ତାଙ୍କ ବିରୁଦ୍ଧରେ ମତଦେବା ସ୍ଥଳେ, ପାଞ୍ଚଜଣ ବିଚାରପତି ତାଙ୍କ ସପକ୍ଷରେ ମତ ଦେଇଥିଲେ । କିନ୍ତୁ ପରେ ସଂସଦ ଏହି ରାୟକୁ ବାତିଲ କରି ଦେଇଥିଲେ । ଏହାର ବିଶେଷତ୍ୱ ହେଲା ଯେ ବେଆଇନ ମନେ କରୁଥିବା ଏକ ନିର୍ଦ୍ଦେଶକୁ ମାନିବାକୁ ହ୍ୱାମ୍‌ଡେନ ମନାକରି ଦେଇଥିଲେ ଓ ଏହା ଦ୍ୱାରା ସେ ଏକ ପରମ୍ପରା ସୃଷ୍ଟି କରିବାରେ ସାହାଯ୍ୟ କରିଥିଲେ ।

ଗ୍ରେ ତାଙ୍କ ଲିଖିତ କବିତା "ଏଲିଜି ରିଟିନ୍ ଇନ୍ ଏ କଣ୍ଟ୍ରି ଚର୍ଚ୍ଚୟାର୍ଡ଼" ବା "ଗୋଟିଏ ମଫସଲୀ ଗୀର୍ଜା ପ୍ରାଙ୍ଗଣରେ ଲିଖିତ ଶୋକଗୀତିକା" ( Elegy written in a Country Churchyard ) ରେ "ଗ୍ରାମ୍ୟ ହ୍ୱାମ୍‌ଡେନ" ଶବ୍ଦ ବ୍ୟବହାର କରିଥିଲେ । ଗ୍ରାମ୍ୟ ହ୍ୱାମ୍‌ଡେନମାନେ ପ୍ରତ୍ୟେକ ସ୍ଥାନରେ ଅଛନ୍ତି ଓ ଏହା ସଙ୍ଗେ ସଙ୍ଗେ ସହରୀ ହ୍ୱାମ୍‌ଡେନ ମଧ୍ୟ ପ୍ରତ୍ୟେକ ସ୍ଥାନରେ ଅଛନ୍ତି । ବ୍ରିଟେନରେ ପ୍ରତ୍ୟେକ ଲୋକ ଜଣେ ଜଣେ ହ୍ୱାମ୍‌ଡେନ, କାରଣ ପଦାଧିଷ୍ଠିତ ଯେ କୌଣସି ଅନାମଧେୟ ଲୋକ ତାଙ୍କୁ "ବାଧ୍ୟ କରି ପାରିବେ" ନାହିଁ । ବୋଧହୁଏ ଏଥିପାଇଁ ତାଙ୍କ ସ୍ତ୍ରୀ ଅଧିକ କୁହାଳିଆ, କାରଣ ସେ ଖୁବ୍ ତବତବ କରି କହିପାରେ । ଅବଶ୍ୟ ଏଥିପାଇଁ ବିଶେଷ କହିବା ଦରକାର ପଡେ ନାହିଁ । "ଦେଖ, ଏହା ବନ୍ଦରଖ"—ଏହାହିଁ କହିଲେ ଯଥେଷ୍ଟ ହୋଇଥାଏ । ଏକ ପୋଲିସ ରାଷ୍ଟ୍ରରେ ଆଇନକୁ ସରକାରୀ ନିୟନ୍ତ୍ରଣର ପରିପ୍ରକାଶ ରୂପେ ଧରି ନିଆଯାଇଥାଏ । ଶାସକ ଆଇନ

* ଏହି ପ୍ରକୋଷ୍ଠର ଛାତ ଚିତ୍ରିତ ହୋଇଥିବାରୁ ତାହାର ଏପରି ନାମକରଣ ହୋଇଛି ।

ମାଧ୍ୟମରେ ଶାସିତଙ୍କୁ କେତେଗୁଡ଼ିଏ ନିର୍ଦ୍ଦେଶ ଦେଇଥାନ୍ତି । ଅନ୍ୟାନ୍ୟ ଦେଶ ଅପେକ୍ଷା ଇଂଲଣ୍ଡର ଆଇନ ସାମାଜିକ ପରମ୍ପରା ଅଭିମୁଖୀ, କାରଣ ଏହା ଲୋକମାନଙ୍କ ବିକାଶ ଧାରା ସହିତ ସଂପୃକ୍ତ । ସୁତରାଂ ଏହି ଆଇନ ପ୍ରଥାରୁ ଉଦ୍‌ଭୂତ ଓ ପ୍ରଥା ଦ୍ୱାରା ପରିପୁଷ୍ଟ । କେବଳ ପେଶାଦାର ଆଇନଜ୍ଞମାନଙ୍କ ବ୍ୟତୀତ ଅନ୍ୟକେହି ଆଇନ କ'ଣ ବୋଲି ଜାଣିବା ପାଇଁ ଚିନ୍ତା କରି ନ ଥାନ୍ତି । କିନ୍ତୁ କେଉଁଟା ଠିକ୍ ଓ କେଉଁଟା ଭୁଲ ତାହା ପ୍ରତ୍ୟେକ ଲୋକ ଜାଣିଥାନ୍ତି । ଏଥିରୁ ସର୍ବସାଧାରଣଙ୍କର ଆଇନ ସମ୍ବନ୍ଧରେ ଏକ ଅସ୍ପଷ୍ଟ ଧାରଣା ଜାତ ହୋଇଥାଏ । "ତୁମେ ସେଠାରେ ତାହା କରିପାରିବ ନାହିଁ" ବୋଲି ପୋଲିସ କନେଷ୍ଟବଲ ଜଣକ ମନ୍ତବ୍ୟ ଦେଲବେଳେ ଆଇନ ସମ୍ବନ୍ଧରେ ତାହାର ସେହି ଅସ୍ପଷ୍ଟ ଧାରଣା ଥାଏ । ସେହିପରି ଲଣ୍ଡନ ସହରବାସୀ ସାଧାରଣ ହାମିଡ଼େନ ଉତ୍ତରରେ କହିଥାଏ—"ଦେଖ ! ମୁଁ ତାହା କାହିଁକି କରିପାରିବି ନାହିଁ ? ଏହା କିଏ କରିଛି ?" ଏଥିରୁ ମଧ୍ୟ ଆଇନ ସମ୍ବନ୍ଧରେ ଅସ୍ପଷ୍ଟ ଧାରଣା ଜନ୍ମିଥାଏ । "ଆଇନ ମୋ ସପକ୍ଷରେ" ବୋଲି ପୋଲିସ ଲୋକ ଯେଉଁ ମନ୍ତବ୍ୟ ପ୍ରକାଶ କରିଥାନ୍ତି, ତାହା ଆଇନର ଗୋଟିଏ ଦିଗ ପ୍ରକାଶ କରେ । ଅପର ପକ୍ଷରେ ସ୍ତ୍ରୀଲୋକ ଜଣକ ଥାନା ମଧ୍ୟକୁ ଯାଇ ଜଣେ ସହାନୁଭୂତିଶୀଳ ସର୍ଜେଣ୍ଟ ପାଖରେ ନିଜର ଅଭିଯୋଗ ଦାଖଲ କରିପାରନ୍ତି । ସର୍ଜେଣ୍ଟ ଜଣକ ସହାନୁଭୂତିଶୀଳ ନ ହେଲେ ଏହି ଅଭିଯୋଗ ସ୍ଥାନୀୟ ଜଷ୍ଟିସ୍ ଅଫ୍ ପିସ୍ ( the Justice of the Peace) ବା ଆଇନ ବିଚାରକଙ୍କ ପାଖରେ ଦାଖଲ କରାଯାଇଥାଏ । ନିଜ ସପକ୍ଷରେ ଆଇନ ଅଛି ବୋଲି ସ୍ତ୍ରୀଲୋକଟି ଜାଣିଥିଲେ, ତାଙ୍କୁ କୌଣସି ପୋଲିସ ଲୋକ କିମ୍ବା ବିଚାରପତି ଚୁପ୍ କରିପାରିବେ ନାହିଁ । "ଗୃହ ମଧ୍ୟରେ ସ୍ୱାଧୀନତା ଉପଭୋଗ" ଇଂଲଣ୍ଡର ନାଗରିକ ପ୍ରତି ପ୍ରଯୁଜ୍ୟ ହୋଇଥାଏ ।

ଆଇନାନୁମୋଦିତ ନିର୍ଦ୍ଦେଶକୁ ମାନିବା ଓ ବେଆଇନ ନିର୍ଦ୍ଦେଶକୁ ଅମାନ୍ୟ କରିବା ପଛରେ ବହୁ ଉଦ୍ଦେଶ୍ୟ ନିହିତ ଅଛି । ଏଥିରେ ସ୍ୱାଧୀନତାର ଧାରଣା ରହିଛି ଏବଂ ଏହି ସମ୍ବନ୍ଧରେ ଅଧିକ ଆଲୋଚନା ଆବଶ୍ୟକ । ବିଗତ ତିରିଶ ପୁରୁଷ ଧରି ଏତେ ଅନ୍ତର୍ବିବାଦ ହୋଇ ଆସିଛି ଯେ ଆଜିକାଲି ପ୍ରତ୍ୟେକ ବ୍ୟକ୍ତି ନିଜକୁ ଭୂମିଦାସ ( Serf )ର ବଂଶଧର ବୋଲି ବିଚାର କରିଥାଏ; କାରଣ ଆଠଶହ ବର୍ଷ ପୂର୍ବେ ଅଧିକାଂଶ ସାଧାରଣ ଲୋକେ ଭୂମିଦାସ ଥିଲେ । ଭୂମିଦାସମାନେ କିଣାବିକା ହେଉଥିବା ଓ ସଂପୂର୍ଣ୍ଣ ଭାବେ ମାଲିକମାନଙ୍କର ଆଜ୍ଞାଧୀନ ଥିବା କ୍ରୀତଦାସ ନ ଥିଲେ । ଜଣେ କ୍ରୀତଦାସ ଆଇନର ବାହାରେ ରହିପାରେ ଓ ସେ ଏକ ସମ୍ପତ୍ତି ଅଥବା "ପଣ୍ୟଦ୍ରବ୍ୟ" ରୂପେ ବିବେଚିତ ହୋଇପାରେ । ଜଣେ ମାଲିକଙ୍କ ଅଧୀନରେ ଥିବା ଭୂମି ସହିତ ଭୂମିଦାସର ସଂପର୍କ ଥିଲା । ସେ ତା ପ୍ରଭୁଙ୍କ ପାଇଁ କାର୍ଯ୍ୟ କରୁଥିଲା, କିନ୍ତୁ ତା ନିଜର ମଧ୍ୟ ଅଧିକାର ଓ କର୍ତ୍ତବ୍ୟ ଥିଲା । ସେହି ଅଧିକାର ଓ କର୍ତ୍ତବ୍ୟଗୁଡ଼ିକ ଆଇନ ଦ୍ୱାରା ନିର୍ଦ୍ଧାରିତ ହେଉଥିଲା । ଏଥିରୁ ପ୍ରତ୍ୟେକ ଲୋକର ସ୍ଥିତି ଓ ତତ୍‌ସମ୍ବନ୍ଧୀୟ ବ୍ୟବସ୍ଥା ମଧ୍ୟ ନିର୍ଦ୍ଧାରିତ ହେଉଥିଲା । ସମ୍ରାଟ୍ ନିଜେ ମଧ୍ୟ ଆଇନ ମାନିବାକୁ ବାଧ୍ୟ ହେଉଥିଲେ । ପ୍ରାୟ ୧୨୫୦ ମସିହା ବେଳକୁ ହେନରି ଡ଼ି ବ୍ରାଟନ୍ ( Henry de Bratton ) ( ଯେକି

ସାଧାରଣତଃ ବ୍ରାଟନ୍ ନାମରେ ସୁପରିଚିତ ) ଧାରାବାହିକ ଭାବରେ ( ଲାଟିନ ଭାଷାରେ ) ଆଇନ ପୁସ୍ତକ ଲେଖା ଆରମ୍ଭ କରିଥିଲେ । ସେ ଲେଖିଥିଲେ "ସମ୍ରାଟ୍ କୌଣସି ବ୍ୟକ୍ତିର ଅଧୀନସ୍ଥ ନ ହୋଇ ଈଶ୍ୱର ଓ ଆଇନର ଅଧୀନରେ ରହିଥାନ୍ତି ।" ସମ୍ରାଟଙ୍କ ନ୍ୟାୟାଳୟରେ ସମ୍ରାଟଙ୍କର ବିଚାରପତିମାନେ ଆଇନ ପ୍ରୟୋଗ କରନ୍ତି ବୋଲି ଆଜିକାଲି ଆମ୍ଭେମାନେ ଯାହା ବୁଝୁଅଛୁ, ତାହା ବ୍ରାଟନ୍ ବୁଝି ନ ଥିଲେ । ସେ ବୁଝିଥିଲେ ଯେ ଜଣେ ବ୍ୟକ୍ତି ଇଂଲଣ୍ଡର ସମ୍ରାଟ୍ ହୁଅନ୍ତୁ ବା କୌଣସି ଭୂମିଦାସ ହୁଅନ୍ତୁ, ତାହାର ଅଧିକାର ଓ କର୍ତ୍ତବ୍ୟ ଗତାନୁଗତିକ ଆଇନ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଏହି ଗତାନୁଗତିକ ଆଇନକୁ ରାଜା ଜନ୍ ଭାଙ୍ଗି ଦେଉଥିଲେ କିମ୍ବା ଭାଙ୍ଗିବା ପାଇଁ ଚେଷ୍ଟା କରିଥିଲେ ବୋଲି ଜଣା ପଡ଼ିଥିଲା । ସେଥିପାଇଁ ଧର୍ମୀୟ ନେତୃବୃନ୍ଦ, ସାମନ୍ତବୃନ୍ଦ ଓ ଲଣ୍ଡନ ସହରର ପ୍ରତିନିଧିଗଣ ମାଗ୍ନା କାର୍ଟାକୁ ଅନୁମୋଦନ କରିବା ପାଇଁ ତାଙ୍କୁ ବାଧ୍ୟ କରିଥିଲେ । ଏହା ଫଳରେ ସେମାନଙ୍କର ଅଧିକାରକୁ ସୁରକ୍ଷା କରିବା ପାଇଁ ସେ ପ୍ରତିଶ୍ରୁତି ଦେଇଥିଲେ ଏବଂ ଏହା ଦ୍ୱାରା ( ୩୯ ଧାରା ଅନୁଯାୟୀ ) ସାଧାରଣ ଭାବରେ ସ୍ୱାଧୀନ ବ୍ୟକ୍ତିମାନଙ୍କର ଅଧିକାର ସୁରକ୍ଷିତ ହୋଇଥିଲା ।

ମାଗ୍ନା କାର୍ଟାରେ ଥିବା "ସ୍ୱାଧୀନ ବ୍ୟକ୍ତିମାନଙ୍କ" ମଧ୍ୟରେ ଭୂମିଦାସମାନେ ଅନ୍ତର୍ଭୁକ୍ତ ନ ଥିଲେ; କିନ୍ତୁ ସେଥିରେ ନିହିତ ଥିବା ନୀତି ସମସ୍ତଙ୍କ ପାଇଁ ସମାନ ଥିଲା । ସମ୍ରାଟଙ୍କର ଅଧିକାର ଥିଲା; ସାମନ୍ତମାନଙ୍କର ଓ ସ୍ୱାଧୀନ ବ୍ୟକ୍ତିମାନଙ୍କର ଅଧିକାର ଥିଲା ଏବଂ ଭୂମିଦାସମାନଙ୍କର ମଧ୍ୟ ଅଧିକାର ଥିଲା । ଏହି ଅଧିକାରଗୁଡ଼ିକୁ କେହି ଲଙ୍ଘନ କରିପାରୁ ନଥିଲେ । ଇଂଲଣ୍ଡର ବିଶେଷତ୍ୱ ହେଲା ଯେ ଏହି ଅଧିକାରଗୁଡ଼ିକ ବିବର୍ତ୍ତନ ପ୍ରଣାଳୀରେ ଦୃଢ଼ୀଭୂତ ହୋଇଥିଲା (ଏହା ଉଏଲସ୍ କିମ୍ବା ସ୍କଟଲଣ୍ଡରେ ଘଟି ନ ଥିଲା) । ସମ୍ରାଟଙ୍କ ନ୍ୟାୟାଳୟରେ ସମ୍ରାଟଙ୍କର ବିଚାରପତିମାନେ ଏଗୁଡ଼ିକୁ କାର୍ଯ୍ୟକାରୀ କରୁଥିଲେ ଓ ସେଗୁଡ଼ିକ ନ୍ୟାୟାଳୟମାନଙ୍କରେ ଇଂଲଣ୍ଡର ସାଧାରଣ ଆଇନ କିମ୍ବା କମନ୍ ଲ (Common law) ଦ୍ୱାରା ହେଉଥିଲା । କୋକ୍ ମାଗ୍ନା କାର୍ଟାକୁ ପୁନରୁଦ୍ଧାର କରିଥିଲେ ଓ ଏହାର ୩୯ ଧାରା ଅନୁସାରେ ସମସ୍ତେ "ସ୍ୱାଧୀନ ବ୍ୟକ୍ତି" (free men) ବୋଲି ଘୋଷଣା କରାଯାଇଥିଲା । ସେତେବେଳେ ଆଉ ସାମନ୍ତବାଦୀ ଲର୍ଡ଼ କିମ୍ବା ଭୂମିଦାସ ନ ଥିଲେ; କିନ୍ତୁ ଦେଶରେ ବିଭିନ୍ନ ଲୋକମାନଙ୍କର ବିଭିନ୍ନ ଅଧିକାର ଥିଲା ଓ କେତେ ଲୋକଙ୍କର ମୋଟେ କୌଣସି ଅଧିକାର ନଥିଲା । ସମ୍ରାଟଙ୍କର ପ୍ରଜା ହିସାବରେ ସେମାନଙ୍କର ଅଧିକାର ଥିଲା ଓ ସେହି ଅଧିକାରକୁ ସୁରକ୍ଷା କରିବା ସମ୍ରାଟଙ୍କ ନ୍ୟାୟପାଳିକ ସଂସ୍ଥାର କର୍ତ୍ତବ୍ୟ ଥିଲା ।

ସାଧାରଣ ଆଇନ ବା କମନ ଲ ସମ୍ରାଟଙ୍କ ପ୍ରତି ପ୍ରଯୁଜ୍ୟ କି ନୁହେଁ ଏହା ଥିଲା ସପ୍ତଦଶ ଶତାବ୍ଦୀରେ ଗୋଟିଏ ମୌଳିକ ପ୍ରଶ୍ନ । ଏହା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଥିଲା, କାରଣ ସେତେବେଳେ କ୍ରୀତଦାସ କିମ୍ବା ଭୂମିଦାସ ନ ଥିଲେ; ପ୍ରତ୍ୟେକ ବ୍ୟକ୍ତି "ସ୍ୱାଧୀନ" ଥିଲେ ମଧ୍ୟ ସମ୍ରାଟ୍ କିମ୍ବା ସମ୍ରାଟଙ୍କ କର୍ମଚାରୀଗୋଷ୍ଠୀ ତା ଉପରେ "ଅତ୍ୟାଚାର" କରିବାର

ଆଣିଥା ଥିଲା । ସେଥିପାଇଁ ଜନ୍ ହାମ୍ପଡ଼େନ ଦାବୀ କରିଥିଲେ ଯେ ତାଙ୍କୁ କୋଡ଼ିଏ ସିଲିଙ୍ଗ ଟିକସ ଦେବାପାଇଁ ବାଧ୍ୟ କରିବା ପାଇଁ ପ୍ରଥମ ଚାର୍ଲସ୍‌ଙ୍କର କୌଣସି ଆଇନ ସଙ୍ଗତ ଅଧିକାର ନ ଥିଲା । ସାତଜଣ ବିଚାରପତି ତାଙ୍କ ବିରୁଦ୍ଧରେ ମତ ଦେଇଥିଲେ ଯୁଦ୍ଧ ସମ୍ରାଟ୍ ଆଇନର ଊର୍ଦ୍ଧ୍ୱରେ ଯାହା ଇଚ୍ଛା ତାହା କରିପାରିବେ ବୋଲି ଜଣେ ହେଲେ ବିଚାରପତି ମତ ଦେଇ ନ ଥିଲେ; ଏପରିକି ତତ୍‌କାଳୀନ ପ୍ରଧାନ ବିଚାରପତି ଫିଞ୍ଚ୍ ଖୁବ୍ ସାହସର ସହିତ ଏପରିକି କହି ପାରିଥିଲେ ଯେ ସମ୍ରାଟ୍‌ଙ୍କର କେତେଗୋଟି ଅଧିକାରକୁ ସଂସଦ ମଧ୍ୟ ସଙ୍କୁଚିତ କରି ପାରିବେ ନାହିଁ ।

## ସଂସଦୀୟ ସାର୍ବଭୌମତ୍ୱ (Parliamentary Sovereignty)

ସଂସଦର କାର୍ଯ୍ୟ କେବଳ ଆଇନ ପ୍ରଣୟନ ଓ ତାହାର କାର୍ଯ୍ୟକାରିତା ପର୍ଯ୍ୟବେକ୍ଷଣ ବୋଲି କହି ସଂସଦର ଗୁରୁତ୍ୱକୁ କମାଇ ଦିଆଯାଇ ପାରିବ ନାହିଁ । ଇଂଲଣ୍ଡର ସମ୍ରାଟ୍ କେବେହେଲେ ନିରଙ୍କୁଶ ଶାସକ ନ ଥିଲେ । ସେ କେବଳ ସାମନ୍ତବାଦୀ ଆଇନର କାର୍ଯ୍ୟକାରିତାକୁ ନ ଦେଖି ତା ସଙ୍ଗେ ସଙ୍ଗେ ଯୁଦ୍ଧ ଘୋଷଣା ବା ସ୍ୱତନ୍ତ୍ର କର-ନିର୍ଦ୍ଧାରଣ ପରି ଅସାଧାରଣ ବିଷୟମାନଙ୍କରେ ଆଇନାନୁସାରେ ବିଶିଷ୍ଟ ବ୍ୟକ୍ତି ଓ ସାମନ୍ତମାନଙ୍କ ସହିତ ପରାମର୍ଶ କରିବାକୁ ବାଧ୍ୟ ହେଉଥିଲେ । ମାଗ୍‌ନା କାର୍ଟାରେ ବ୍ୟବସ୍ଥା ଥିଲା ଯେ,"ଦେଶବାସୀଙ୍କର ସାଧାରଣ ପରାମର୍ଶ" ବିନା ପାରଂପରିକ ଆଇନ ବାହାରେ କୌଣସି "ଭୂମି-କର କିମ୍ବା ସାହାଯ୍ୟ" ଆଦାୟ କରିବା ସମ୍ରାଟଙ୍କ ପକ୍ଷରେ ଉଚିତ କାର୍ଯ୍ୟ ହେବ ନାହିଁ । ଏହି "ପରାମର୍ଶ" ପାଇବା ପାଇଁ ସମ୍ରାଟ୍‌ଙ୍କୁ ଭିନ୍ନ ଭିନ୍ନ ଭାବରେ ଆର୍ଚବିସପ୍, ବିସପ୍, ଆବୋଟ, ଅର୍ଲ ଓ ବିଶିଷ୍ଟ ବ୍ୟକ୍ତିମାନଙ୍କୁ (ବାରନମାନଙ୍କୁ) ଡାକିବା ପାଇଁ ପଡ଼ୁଥିଲା ଏବଂ ସମ୍ରାଟ ଅନ୍ୟ ପ୍ରଜାମାନଙ୍କ ମତ ଶେରିଫମାନଙ୍କ ମାଧ୍ୟମରେ ହୁକୁମନାମା ଦ୍ୱାରା ସଂଗ୍ରହ କରୁଥିଲେ । ଅବଶ୍ୟ ୧୨୧୫ ପରେ ମାଗ୍‌ନା କାର୍ଟାର ଏହି ବ୍ୟବସ୍ଥାଟିର ପୁନରାବୃତ୍ତି ହୋଇ ନ ଥିଲା ।

ଏହାର ଅର୍ଥ ନୁହେଁ ଯେ ମହାନ୍ ପରିଷଦ (ଗ୍ରେଟ୍ କାଉନସିଲ)ର ସଭ୍ୟସଂଖ୍ୟା ନିର୍ଦ୍ଧାରିତ ହୋଇଥିଲା । ଯେଉଁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରିବାକୁ ଥିଲା, ସମ୍ରାଟ୍ କେବଳ ସେମାନଙ୍କୁ ଡାକୁଥିଲେ । କିନ୍ତୁ ବେଳେବେଳେ ଗ୍ରେଟବଡ଼ କଥାରେ ପରାମର୍ଶ ଦେବା ପାଇଁ ସମ୍ରାଟ ମନଇଚ୍ଛା ବାଛି ବାଛି ଲୋକଙ୍କୁ ଡାକି ପାରୁଥିଲେ । ଯୁକ୍ତିସାମ୍ରାରରେ ଗଣ୍ଡଗୋଳ ଦେଖାଦେଲେ ତାହାର ସମାଧାନ କରିବା ପାଇଁ କାଉଣ୍ଟି ନ୍ୟାୟାଳୟରେ କେତେକ ନାଇଟଙ୍କୁ ପ୍ରତିନିଧିରୂପେ ନିର୍ବାଚିତ କରିବା ପାଇଁ ଶେରିଫଙ୍କୁ କୁହାଯାଉଥିଲା । ସେମାନେ ୱେଷ୍ଟମିନଷ୍ଟର କିମ୍ବା ସମ୍ରାଟଙ୍କ ଅନ୍ୟାନ୍ୟ ବାସସ୍ଥାନକୁ ଆସି ଯୁକ୍ତିସାମ୍ରାରର ଲୋକମାନଙ୍କ ପାଇଁ ଉତ୍ତର ଦେଉଥିଲେ । ସମ୍ରାଟ୍ ସମସ୍ତ କାଉଣ୍ଟିରୁ ସମ୍ବାଦ ପରାମର୍ଶ କିମ୍ବା ଆର୍ଥିକ ସାହାଯ୍ୟ ଚାହିଁଲେ ସେ ସବୁ କାଉଣ୍ଟିରୁ ନାଇଟ୍ ନିର୍ବାଚନ କରିବା ପାଇଁ ନିର୍ଦ୍ଦେଶ ଦେଉଥିଲେ । ୧୨୧୩ ମସିହା ବେଳକୁ ରାଜା ଜନ୍

ତାଙ୍କ ରାଜ୍ୟ ବିଷୟରେ ଆଲୋଚନା କରିବା ପାଇଁ ପ୍ରତ୍ୟେକ କାଉଣ୍ଟିରୁ ଦୁଇଜଣ ଲେଖାଏଁ ପ୍ରତିନିଧିଙ୍କୁ ଡାକିଥିଲେ । ୧୨୫୪ ମସିହାରେ ତୃତୀୟ ହେନରୀ ସାହାଯ୍ୟ ମଞ୍ଜୁର କରିବା ପାଇଁ ପ୍ରତ୍ୟେକ ସାୟାରରୁ ଦୁଇଜଣ ଲେଖାଏଁ ନାଇଟଙ୍କୁ ଡାକିଥିଲେ । ୧୨୬୫ ମସିହାରେ ସାଇମନ ଡି ମଣ୍ଟଫୋର୍ଟ ଆଉ ପାହୁଣ୍ଡେ ଆଗକୁ ଯାଇ ରାଜାଙ୍କ ନାମରେ ପ୍ରତ୍ୟେକ କାଉଣ୍ଟିରୁ କେବଳ ଦୁଇଜଣ ନାଇଟଙ୍କୁ ଡକାଇବା ସଙ୍ଗେ ସଙ୍ଗେ କେତେକ ସହରରୁ ମଧ୍ୟ ଗ୍ରାମରୁ ଦୁଇଜଣ ପର୍ଯ୍ୟନ୍ତ ପୌରପ୍ରତିନିଧି ବା ବରଜେସ୍ ( burgesses )ଙ୍କୁ ଡକାଇଥିଲେ । କୌଣସି ପରମ୍ପରା ସୃଷ୍ଟି କରିବା ତାଙ୍କର ଉଦ୍ଦେଶ୍ୟ ନ ଥିଲା । ବାରନ୍‌ମାନଙ୍କ ବିରୁଦ୍ଧରେ ସମର୍ଥନ ଲାଭ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । କିନ୍ତୁ ବାସ୍ତବ କ୍ଷେତ୍ରରେ ଏହା ଏକ ପରମ୍ପରା ସୃଷ୍ଟି କରିଥିଲା । ବିଭିନ୍ନ ସମୟରେ ପ୍ରଥମ ଏଡ୍‌ୱାର୍ଡ ତାଙ୍କ ଦୃଷ୍ଟାନ୍ତ ଅନୁସରଣ କରିଥିଲେ । ସ୍କଟଲଣ୍ଡ ସହିତ ଯୁଦ୍ଧ ଲାଗିବା ଯୋଗୁ ଅର୍ଥ ସଂଗ୍ରହ ପରି ଗୁରୁତ୍ୱପୂର୍ଣ୍ଣ ବିଷୟ ଆଲୋଚନା କରିବା ନିମିତ୍ତ ସେ ନାଇଟ ଓ ବରଜେସ୍‌ମାନଙ୍କୁ ସଂସଦର ଅଧିବେଶନକୁ ଡକାଉଥିଲେ । ଉଦାହରଣ ସ୍ୱରୂପ ୧୨୯୫ରେ ସଂସଦର ବୈଠକକୁ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ପ୍ରତ୍ୟେକ ସାୟାରରୁ ଦୁଇଜଣ ଲେଖାଏଁ ନାଇଟ ଓ ପ୍ରତ୍ୟେକ ବରୋରୁ ବରଜେସ୍‌ଙ୍କୁ ଡକାଯାଇଥିଲା । ସେହି ସମୟଠାରୁ ୧୮୩୨ ପର୍ଯ୍ୟନ୍ତ ସଂସଦର ବୈଠକ ଆହୂତ ହେବାବେଳେ ଗୋଷ୍ଠୀ ବା ସଂପ୍ରଦାୟରୁ ( ଲାଟିନ ଭାଷାରେ କମ୍ୟୁନିଏଟ, ଫ୍ରେଞ୍ଚ୍ ଭାଷାରେ କମ୍ୟୁନ୍ କିମ୍ବା ଇଂରାଜୀ ଭାଷାରେ ଏହାକୁ କମନ୍‌ସ କୁହାଯାଏ ) ଦୁଇଜଣ ଲେଖାଏଁ ପ୍ରତିନିଧି ଡକାଯାଉଥିଲେ ।

କମନ୍‌ସ ପ୍ରତିନିଧିମାନେ ରାଜା କିମ୍ବା ସାମନ୍ତମାନଙ୍କ ସହିତ ଏକାଠି ବସୁ ନ ଥିଲେ । ସମ୍ରାଟ୍ ସେମାନଙ୍କ ଉପସ୍ଥିତି ଚାହିଁଲା ବେଳେ ସେମାନଙ୍କୁ ବାର୍ ( the Bar ) ବା ରୋଧକ ରେଖା ପର୍ଯ୍ୟନ୍ତ ଡକାଯାଉଥିଲା । ଚତୁର୍ଦ୍ଦଶ ଶତାବ୍ଦୀଠାରୁ ସେମାନଙ୍କ ମୁଖପାତ୍ର ହେବା ପାଇଁ ଜଣେ ବାଚସ୍ପତି ( a Speaker ) ବାଛିବା ପାଇଁ କୁହାଯାଇଥିଲା । ବାଚସ୍ପତି ବା ଅଧ୍ୟକ୍ଷ ସେମାନଙ୍କ ପାଇଁ କ'ଣ କହୁଥିଲେ ତାହା ଯେ କୌଣସି ବୈଠକରେ ନିର୍ଣ୍ଣୟ କରିବା ସେମାନଙ୍କ କାର୍ଯ୍ୟ ଥିଲା । ବାସ୍ତବିକ, ଅର୍ଥ ଆଦାୟ କରିବା ପାଇଁ କୌଣସି ପ୍ରସ୍ତାବକୁ ମଞ୍ଜୁର କଲାବେଳେ ସେମାନଙ୍କୁ ଏକତ୍ର କିମ୍ବା ଭିନ୍ନ ଭିନ୍ନ ବୈଠକରେ ମିଳିତ ହେବାକୁ ପଡ଼ୁଥିଲା । ନାଇଟ୍ ଓ ବରଜେସ୍ ଭିନ୍ନ ଭିନ୍ନ ବୈଠକରେ ମିଳିତ ହେଉଥିଲେ । ଏହାର ଏକ ବିଶେଷତ୍ୱ ଥିଲା ଯେ ରାଜା ଯାହା କହୁଥିଲେ ତାହା କମନ୍‌ସମାନେ ( The Commons) ଆଲୋଚନା କରୁଥିଲେ । ଏହାକୁ ଆଜିକାଲି ସମ୍ରାଟଙ୍କର ଭାଷଣ ( The King's Speech ) କୁହାଯାଉଛି । ଏଥି ସଙ୍ଗେ ସଙ୍ଗେ ସେମାନେ ମଧ୍ୟ ସେମାନଙ୍କ ସାଧାରଣ ଆପତ୍ତି—ଅଭିଯୋଗଗୁଡ଼ିକ ସମ୍ବନ୍ଧରେ ଆଲୋଚନା କରୁଥିଲେ । ସେଗୁଡ଼ିକର ଦୂରୀକରଣ ପାଇଁ ଇଚ୍ଛାକଲେ, ସେମାନେ ତାହାକୁ ଗୋଟିଏ ଆବେଦନ-ପତ୍ର ( ପିଟିସନ୍ ) ଆକାରରେ ସମ୍ରାଟଙ୍କ ସମ୍ମୁଖରେ ଉପସ୍ଥାପିତ କରୁଥିଲେ, ଅଥବା ସେଥିପାଇଁ ଆବଶ୍ୟକ ଆଇନ ପ୍ରଣୟନ କରିବା ପାଇଁ ସମ୍ରାଟଙ୍କୁ ଅନୁରୋଧ କରୁଥିଲେ । ପଞ୍ଚମ ହେନରୀଙ୍କ ଶାସନ କାଳଠାରୁ

ସେମାନେ ଆଉ ପାର୍ଲାମେଣ୍ଟ ଆଗକୁ ଯାଇ ଯେଉଁ ବିଷୟକୁ ସେମାନେ ଆଇନରେ ପରିଣତ କରିବାକୁ ଚାହୁଁଥିଲେ ତାହା ସ୍ପଷ୍ଟଭାବରେ ସେମାନେ ଉକ୍ତ ଆବେଦନ ପତ୍ରରେ ଅନ୍ତର୍ଭୁକ୍ତ କରୁଥିଲେ ।

୧୨୭୨ରେ ପ୍ରଥମ ଏଡ୍‌ୱାର୍ଡଙ୍କ ସିଂହାସନ ଆରୋହଣ ଠାରୁ ୧୪୮୫ରେ ସପ୍ତମ ହେନରୀଙ୍କ ସିଂହାସନ ଆରୋହଣ ପର୍ଯ୍ୟନ୍ତ ଦୁଇଶତ ବର୍ଷ ମଧ୍ୟରେ ପୁରାତନ ସାମନ୍ତବାଦୀ ସମ୍ଭ୍ରାନ୍ତବଂଶ ଓ ସମ୍ରାଟଙ୍କଠାରୁ ଭୂମିଦାନ ପାଇଥିବା ବିଶିଷ୍ଟ ବାରନ୍‌ଗୋଷ୍ଠୀ ଲୋପ ପାଇ-ଯାଇଥିଲେ । ବାରନ୍‌ଗୋଷ୍ଠୀ ସମ୍ରାଟଙ୍କୁ ନାଇଟ ଓ ସୈନ୍ୟବାହିନୀ ପାଇଁ ଲୋକ ଯୋଗାଇ ଦେଉଥିଲେ । ତୃତୀୟ ଏଡ୍‌ୱାର୍ଡଙ୍କ ଉତ୍ତରାଧିକାରୀମାନଙ୍କ ମଧ୍ୟରେ ବିବାଦଯୋଗୁଁ "ରୋଜେସ ଯୁଦ୍ଧ" ବା ଗୋଲାପ ଯୁଦ୍ଧ ( The Wars of Roses ) ଆରମ୍ଭ ହୋଇଥିଲା । ଏହି ଯୁଦ୍ଧ ଫଳରେ ଉପରୋକ୍ତ ବ୍ୟବସ୍ଥା ସମ୍ପୂର୍ଣ୍ଣ ରୂପେ ଲୋପ ପାଇଗଲା । ଇତି ମଧ୍ୟରେ ଇଂଲଣ୍ଡୀୟ ପଶମର ମୂଲ୍ୟ ବୃଦ୍ଧି ପାଇବା ଫଳରେ ଭୂମ୍ୟଧିକାରୀମାନଙ୍କ ଗୁରୁତ୍ୱ ମଧ୍ୟ ବୃଦ୍ଧି ପାଇଥିଲା । ପଶମ ବ୍ୟବସାୟ ଯୋଗୁ ସହରଗୁଡ଼ିକରେ ମଧ୍ୟ ଉନ୍ନତି ସାଧିତ ହୋଇଥିଲା । ଇଂଲଣ୍ଡର କମନ୍‌ସଶ୍ରେଣୀ, କାଉଣ୍ଟିମାନଙ୍କର ଭୂମ୍ୟଧିକାରୀ ଓ ସହରାଞ୍ଚଳର ବରଜେସ୍‌ମାନଙ୍କ ଗୁରୁତ୍ୱ କ୍ରମଶଃ ବୃଦ୍ଧି ପାଇଥିଲା । ଭୂମିଦାସମାନେ ସ୍ୱାଧୀନ ଚାଷୀ ଓ କୃଷି ଶ୍ରମିକରେ ପରିଣତ ହୋଇଥିଲେ । ଟିଉଡ଼ର ରାଜାମାନେ ଆଭ୍ୟନ୍ତରୀଣ ଶାନ୍ତି ଓ ନିରାପତ୍ତା ରକ୍ଷା କଲେ ବୋଲି ଉପରୋକ୍ତ ବ୍ୟବସ୍ଥାର ଦ୍ରୁତ ବିକାଶ ହୋଇଥିଲା । ଅପର ପକ୍ଷରେ ଟିଉଡ଼ର ସମ୍ରାଟମାନେ "ମଧ୍ୟବିତ୍ତ ଶ୍ରେଣୀ" ( middle class )ର ବିକାଶ ଉପରେ ଗୁରୁତ୍ୱ ଦେଇଥିଲେ । ଅଷ୍ଟମ ହେନରୀ ଓ ପ୍ରଥମ ଏଲିଜାବେଥଙ୍କ କ୍ଷମତା ପଛରେ "ମଧ୍ୟବିତ୍ତ ଶ୍ରେଣୀ"ର ସମର୍ଥନ ଥିଲା । ସଂସଦ ସହିତ ରାଣୀ ଏଲିଜାବେଥଙ୍କର ସାମାନ୍ୟ ଗଣ୍ଡଗୋଳ ହୋଇଥିଲା; କିନ୍ତୁ ପରିସ୍ଥିତିକୁ କିପରି ସମ୍ଭାଳିବାକୁ ହେବ ରାଣୀ ତାହା ଜାଣିଥିଲେ । ସ୍କଟଲଣ୍ଡର ଷଷ୍ଠ ଜେମସ୍ ଇଂଲଣ୍ଡରେ ପ୍ରଥମ ଜେମସ୍ ରୂପେ ଗାଦିନସୀନ ହେଲା ପରେ ସଂସଦ ଓ ରାଜାଙ୍କ ବିବାଦ ମଧ୍ୟରେ ବିବାଦ ସୃଷ୍ଟି ହୋଇଥିଲା ।

ଏହି ବିବାଦ ବୋଧହୁଏ ଅପରିହାର୍ଯ୍ୟ ଥିଲା । ଭୂମ୍ୟଧିକାରୀମାନେ ଅଧିକ କ୍ଷମତାଶାଳୀ ହୋଇ ଉଠିଥିବାରୁ ସେମାନେ ଆଉ କ୍ଷୁଦ୍ର ଭୂମିକା ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ସେମାନେ ଅଷ୍ଟମ ହେନରୀଙ୍କ ପ୍ରସ୍ତାବଗୁଡ଼ିକୁ ସମର୍ଥନ କରିଥିଲେ ଏବଂ ସମ୍ରାଟ ସାଧାରଣତଃ ସଂସଦରେ ନିଜ କ୍ଷମତା ବଜାୟ ରଖି ପାରିଥିଲେ । ସେମାନେ ପ୍ରଥମ ମେରୀଙ୍କ ପ୍ରସ୍ତାବଗୁଡ଼ିକୁ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । କେବଳ ରାଣୀ ପ୍ରଥମ ଏଲିଜାବେଥ ନିଜର ବିଚକ୍ଷଣବୁଦ୍ଧି ପ୍ରୟୋଗ କରି ସେମାନଙ୍କ ସମର୍ଥନ ଲାଭ କରି ପାରିଥିଲେ । ପ୍ରଥମ ଜେମସ୍ ଓ ପ୍ରଥମ ଚାର୍ଲସଙ୍କୁ ଏହି କୌଶଳ ଜଣା ନ ଥିଲା । ବାସ୍ତବିକ୍ ସେମାନଙ୍କ ପକ୍ଷରେ ଅଧିକ କୌଶଳ ପ୍ରୟୋଗ କରିବାର ଆବଶ୍ୟକତା ଥିଲା; କାରଣ ଟିଉଡ଼ର ଶାସନ ସମୟରେ କମନ୍‌ସଶ୍ରେଣୀ ସେମାନଙ୍କ

କ୍ଷମତା ସମ୍ବନ୍ଧରେ ସମ୍ୟକ୍ ସଚେତନ ହୋଇ ପାରିଥିଲେ ଏବଂ କୋକ, ଇଲିସ୍ମର୍ଥ, ପାଇମ୍ ଓ ହ୍ୱାମ୍ପଡ଼େନଙ୍କ ପରି ବ୍ୟକ୍ତିମାନଙ୍କୁ ଆଉ ଭୁଲାଇବା ସମ୍ଭବପର ନ ଥିଲା । ଷ୍ଟୁଅର୍ଟ ଶାସନ କାଳରେ ସଂସଦରେ କାଉଣ୍ଟି ଭଦ୍ରବ୍ୟକ୍ତି ଓ ସାଧାରଣ ଆଇନଜ୍ଞମାନେ ପ୍ରାଧାନ୍ୟ ବିସ୍ତାର କରିଥିଲେ । ସେମାନଙ୍କ ସହିତ ପ୍ରତିଯୋଗିତା କରିବା ପାଇଁ ଉଭୟ ସମ୍ରାଟଙ୍କର ଯୋଗ୍ୟତା ଓ ଅଭିଜ୍ଞତା ନ ଥିଲା ।

ସମ୍ରାଟ୍ ଓ ସଂସଦ ମଧ୍ୟରେ ସମ୍ବନ୍ଧ ହିଁ ମୌଳିକ ପ୍ରଶ୍ନ ଥିଲା । ଯେତେବେଳେ ଇଉରୋପର ଅନ୍ୟାନ୍ୟ ଦେଶରେ ସାମନ୍ତବାଦୀ ଶାସନ କ୍ରମଶଃ ନିରଙ୍କୁଶ ରାଜତନ୍ତ୍ରରେ ପରିଣତ ହେବାକୁ ଯାଉଥିଲା । ଇଂଲଣ୍ଡର ପରମ୍ପରାନୁସାରେ ରାଜକୀୟ କ୍ଷମତା ଉପରେ ଯେଉଁ ସାମନ୍ତବାଦୀ ନିୟନ୍ତ୍ରଣ ଥିଲା, ତାହା ସଂସଦୀୟ ନିୟନ୍ତ୍ରଣରେ ରୂପାନ୍ତରିତ ହେଉଥିଲା । ଧର୍ମୀୟ ସମସ୍ୟା ଯୋଗୁ ସୃଷ୍ଟି ହୋଇଥିବା ଗୃହଯୁଦ୍ଧ ବିଷୟ ଏଠାରେ ସ୍ମରଣ କରାଯାଇପାରେ । ନିଶ୍ଚିତ ଭାବରେ ଉଭୟ ପକ୍ଷରେ ଦୃଢ଼ ଧର୍ମସମ୍ବନ୍ଧୀୟ ଯୁକ୍ତିମାନ ଥିଲା ; କିନ୍ତୁ ଦେଶର ଅଧିକାଂଶ ଲୋକେ ପୂଜାପାଠ ଓ ଅନ୍ଧବିଶ୍ୱାସରେ ଆଗ୍ରହୀ ନ ଥିଲେ । ଅଷ୍ଟମ ହେନରୀଙ୍କ ସମୟରେ ରୋମ ସହ ବିଚ୍ଛେଦ, ଷଷ୍ଠ ଏଡ୍‌ୱାର୍ଡ଼ଙ୍କ ସମୟରେ ପ୍ରୋଟେଷ୍ଟାଣ୍ଟ ରିଫର୍ମେସନ ବା ଧର୍ମସଂସ୍କାର ଆନ୍ଦୋଳନ ପ୍ରଥମ ମେରୀଙ୍କ ସମୟରେ ରୋମାନ କ୍ୟାଥଲିକ୍ ଧର୍ମର ପୁନଃ ପ୍ରତିଷ୍ଠା ଓ ପ୍ରଥମ ଏଲିଜାବେଥଙ୍କ ସମୟରେ ପ୍ରବର୍ତ୍ତିତ ପ୍ରୋଟେଷ୍ଟାଣ୍ଟ ଧର୍ମ ସହିତ ସଂସଦ ଏକମତ ହୋଇଥିଲା । ସଂସଦୀୟ ମଞ୍ଜୁରି ନ ନେଇ ନିଜର ଧର୍ମ ବିଶ୍ୱାସକୁ କାର୍ଯ୍ୟକାରୀ କରିବାକୁ ପ୍ରଥମ ଜେମସ୍ ଯେଉଁ କ୍ଷମତା ଦାବୀ କରିଥିଲେ, ତାହା ହିଁ ବିବାଦୀୟ ବିଷୟ ହୋଇଥିଲା । ଏହି ସମସ୍ୟାର ଅନ୍ୟାନ୍ୟ କେତେକ ଦିଗ ମଧ୍ୟ ଥିଲା । ଜାତୀୟତା କାରଣରୁ କମନ୍‌ସ ସଭା ପୋପ ଓ ଧର୍ମଯାଜକମାନଙ୍କ ବିରୁଦ୍ଧରେ ଥିଲା । ଅଧିକାଂଶ ଧର୍ମଯାଜକ ଅଶିକ୍ଷିତ ଓ ସମାଜର ନିମ୍ନସ୍ତରରେ ଥିବାରୁ ଭୂମ୍ୟଧିକାରୀ ଓ ବ୍ୟବସାୟୀ ଗୋଷ୍ଠୀ ସେମାନଙ୍କ ବ୍ୟକ୍ତିଗତ ଚରିତ୍ର ଓ ବ୍ୟାବସାୟିକ ସଂପର୍କରେ ବିଚାର କରି ଧର୍ମଯାଜକମାନଙ୍କ ପାରଂପରିକ ଧର୍ମୀୟ ଅଧିକାରକୁ ପସନ୍ଦ କରୁ ନ ଥିଲେ ।

ସେ ଯାହା ହେଉନା କାହିଁକି, ପ୍ରକୃତ ପ୍ରଶ୍ନ ଥିଲା ସଂସଦକୁ ନ ପଚାରି ସମ୍ରାଟଙ୍କର ଆଇନ ପ୍ରଣୟନ କ୍ଷମତା ଥିଲା କି ନାହିଁ ? ସଂସଦର ସଭ୍ୟ ତଥା ସାଧାରଣ ଆଇନଜ୍ଞମାନେ ଏହି ପ୍ରଶ୍ନ ଉଠାଇଥିଲେ । ଐତିହାସିକ ଓ ଆଇନ ଦୃଷ୍ଟିରୁ ଦେଖିଲେ ସମ୍ରାଟଙ୍କ ସପକ୍ଷରେ ଯଥେଷ୍ଟ ଯୁକ୍ତି ଥିଲା । କେବଳ ସଂସଦଠାରେ ଆଇନ-ପ୍ରଣୟନ କ୍ଷମତା ନ୍ୟସ୍ତ ଥିବା ଯୁକ୍ତି ସତ୍ୟ ନଥିଲା । ସଂସଦର ଅନୁମତି ବିନା ଆମଦାନୀ ଶୁଳ୍କ ବସାଇବା କ୍ଷମତା ସମ୍ରାଟଙ୍କର ଥିଲା ବୋଲି ବିଚାରପତିମାନେ ବେଟ୍‌ଙ୍କ ମକଦ୍ଦମା ( Bates' case )ରେ ରାୟ ଦେଇଥିଲେ । ସେହିପରି ହ୍ୱାମ୍ପଡ଼େନଙ୍କ ମକଦ୍ଦମାରେ ବିଚାରପତିମାନେ ସମ୍ରାଟ ନୌଶୁଳ୍କ ମଧ୍ୟ ବସାଇ ପାରିବେ ବୋଲି ରାୟ ଦେଇଥିଲେ । କୋକ୍ ଓ ସେଲଡ଼େନ ସଂସଦର କ୍ଷମତା ସମ୍ବନ୍ଧରେ

ଯଥେଷ୍ଟ ଦୃଷ୍ଟାନ୍ତ ଦେଇଥିଲେ ମଧ୍ୟ ସମ୍ରାଟଙ୍କ କ୍ଷମତା ସପକ୍ଷରେ ମଧ୍ୟ ଯଥେଷ୍ଟ ଦୃଷ୍ଟାନ୍ତ ଥିଲା । ସମ୍ରାଟଙ୍କ ଦାବୀ ଫଳରେ ମଧ୍ୟବିତ୍ତ ଶ୍ରେଣୀର ସ୍ୱାଧୀନତା ଓ ସମ୍ପତ୍ତି ବିପନ୍ନ ହେଉଥିବାରୁ ସେମାନେ କୋକ୍ ଓ ସେଲଡ଼େନଙ୍କ ପକ୍ଷ ସମର୍ଥନ କରିଥିଲେ । କିନ୍ତୁ "କମନଉଏଲଥ୍" ବା ସାଧାରଣତନ୍ତ୍ର ପ୍ରତିଷ୍ଠା ସମୟରେ ସଂସଦର ନିୟନ୍ତ୍ରଣ ତଥା ଶାସନ ଅତ୍ୟାଚାରୀ ହେବା ଫଳରେ ମଧ୍ୟବିତ୍ତ ଶ୍ରେଣୀ ଷ୍ଟୁଆର୍ଟ ରାଜତନ୍ତ୍ରର ପୁନଃପ୍ରତିଷ୍ଠାକୁ ସ୍ୱାଗତ କରିଥିଲେ ।

ସମ୍ରାଟ୍ ଆଇନ-ବହିର୍ଭୂତ କାର୍ଯ୍ୟ କରି ନ ପାରିବେ ବୋଲି ଗୃହ ଯୁଦ୍ଧବେଳେ ପ୍ରମାଣିତ ହୋଇଥିଲା । ସମ୍ରାଟ୍ କେବଳ ଆଇନାନୁମୋଦିତ କ୍ଷମତାର ଅଧିକାରୀ ଥିଲେ । ସଂସଦ ହିଁ କେବଳ "କମନ୍ ଲ" କୁ ସଂଶୋଧନ କରିପାରୁଥିଲେ । ପରେ ଏ କଥା ନିଷ୍ପତ୍ତି ହୋଇଥିଲା ଯେ ଆଇନକୁ ବାତିଲ କରିବା କିମ୍ବା କୌଣସି ବ୍ୟକ୍ତିଗତ ଘଟଣାରେ ଆଇନକୁ ରଦ୍ଦ କରିବା କ୍ଷମତା ଦ୍ୱିତୀୟ ଜେମସ୍‌ଙ୍କର ନ ଥିଲା । ଜଣେ ଦୋଷୀର ବିଚାର ହୋଇ ସେ ଦଣ୍ଡିତ ହୋଇଥିଲେ ତାକୁ ହିଁ ରାଜା କ୍ଷମା ଦେଇ ପାରୁଥିଲେ । ଅବଶ୍ୟ ଗୃହ ଯୁଦ୍ଧରେ ଧର୍ମସମ୍ବନ୍ଧୀୟ ସ୍ୱାଧୀନତା ବିଷୟ ସ୍ଥିର ହୋଇପାରି ନ ଥିଲା ଓ ଧର୍ମକ୍ଷେତ୍ରରେ ସହନଶୀଳତା ସହଜରେ ଗ୍ରହଣ କରାଯାଇ ପାରି ନ ଥିଲା । ଜଣେ ବ୍ୟକ୍ତି ନିଜ ବିଶ୍ୱାସକୁ ସତ୍ୟ ବୋଲି ଗ୍ରହଣ କରିଥାଏ ଓ ଯେଉଁମାନଙ୍କର ସେଥିରେ ବିଶ୍ୱାସ ନ ଥାଏ ସେମାନଙ୍କୁ ଧର୍ମଦ୍ରୋହୀ ଓ ମିଥ୍ୟାବାଦୀ ବୋଲି ଭାବିଥାଏ । ପୁନଶ୍ଚ, ଜଣେ କେବଳ ନିଜର ଧର୍ମ ବିରୋଧୀ ପ୍ରତିବେଶୀଙ୍କୁ ସହ୍ୟ କରିବା ପ୍ରଶ୍ନ ନ ଥିଲା । ପ୍ରଶ୍ନ ଥିଲା, ଜଣେ ନିଜ ଧର୍ମଠାରୁ ଅନ୍ୟ ଧର୍ମୀ ରାଜା ବା ରାଣୀଙ୍କୁ ସହ୍ୟ କରିବ କି ନାହିଁ ? ଅନ୍ୟ ଧର୍ମୀ ରାଜାଙ୍କ ପ୍ରତି ଜଣେ ଆନୁଗତ୍ୟ ସ୍ୱୀକାର କରି ପାରିବ କି ? ଅପର ପକ୍ଷରେ ସମ୍ରାଟମାନେ ମଧ୍ୟ ନିଜର ଅନ୍ୟ ଧର୍ମୀ ପ୍ରଜାମାନଙ୍କ ପ୍ରତି ସହାନୁଭୂତିଶୀଳ ହେବା କଷ୍ଟକର ବ୍ୟାପାର ଥିଲା । ସ୍ପେନର ସମ୍ରାଟ୍ ଫିଲିପ୍ ପୋପଙ୍କ ଆଶୀର୍ବାଦ ନେଇ ଇଂଲଣ୍ଡ ବିରୁଦ୍ଧରେ ଯେଉଁ ନୌସେନାବାହିନୀ ପଠାଇଥିଲେ, ତାହା କେବଳ ଯୁକ୍ତିତର୍କ ଉପରେ ପର୍ଯ୍ୟବସିତ ନ ଥିଲା ; ତାହା ପଛରେ ଧର୍ମ ବିରୋଧ ଓ ରାଜଦ୍ରୋହ ଉଭୟ କାରଣ ନିହିତ ଥିଲା ।

ରୋମାନ୍ କ୍ୟାଥଲିକମାନେ ରାଜଦ୍ରୋହୀ ଥିବା ଧାରଣା ସହଜରେ ଦୂରୀଭୂତ ହୋଇ ନ ଥିଲା । ୧୭୧୪ରେ ପ୍ରଥମ ଜର୍ଜ ସିଂହାସନ ଆରୋହଣ କରିବା ସମୟରେ ଜଣେ ରୋମାନ୍ କ୍ୟାଥଲିକ ମଧ୍ୟ ସିଂହାସନରେ ବସିବା ପାଇଁ ଦାବୀ କରୁଥିଲେ । ତାଙ୍କୁ ଅଧିକାଂଶ ଲୋକ (ସମ୍ଭବତଃ) ଦ୍ୱିତୀୟ ଜେମସଙ୍କର ନାତି ବୋଲି ଭାବୁଥିଲେ; ତେଣୁ ତାଙ୍କର ଆଇନ ଅନୁସାରେ ପ୍ରଥମ ଜର୍ଜ ଓ ଦ୍ୱିତୀୟ ଜର୍ଜଙ୍କ ଅପେକ୍ଷା ସିଂହାସନର ଉତ୍ତରାଧିକାରୀ ହେବା ପାଇଁ ବେଶୀ ଅଧିକାର ଥିଲା । ୧୭୪୬ରେ ବୋନି ପ୍ରିନ୍ସ ଚାର୍ଲେ ଶେଷଥର ପାଇଁ ପରାଜୟ ସ୍ୱୀକାର କରିଥିଲେ । ସୁତରାଂ ୧୭୬୦ ରେ ତୃତୀୟ ଜର୍ଜ ସିଂହାସନ ଆରୋହଣ କରିବା ସମୟରେ ତାଙ୍କର କେହି ପ୍ରତିଦ୍ୱନ୍ଦ୍ୱୀ ନ ଥିଲେ । ଏପରି କି ୧୭୮୦ରେ ଲଣ୍ଡନରେ ପୋପ୍‌ଙ୍କ

ବିରୁଦ୍ଧରେ କୌଣସି ଆନ୍ଦୋଳନ ହୋଇ ନ ଥିଲା । ଅବଶ୍ୟ ଏହି ଶତାବ୍ଦୀ ପର୍ଯ୍ୟନ୍ତ ରୋମାନ୍ କ୍ୟାଥଲିକମାନଙ୍କ ବିରୁଦ୍ଧରେ ଥିବା ବାଛବିଚାର ନୀତି ଦୂର ହୋଇ ନାହିଁ । ଆଜି ମଧ୍ୟ ଜଣେ ରୋମାନ୍ କ୍ୟାଥଲିକ ସିଂହାସନ ଆରୋହଣ କରିପାରିବେ ନାହିଁ । ସିଂହାସନ ତ୍ୟାଗ ନ କଲା ପର୍ଯ୍ୟନ୍ତ ଜଣେ ସମ୍ରାଟ୍ ରୋମାନ୍ କ୍ୟାଥଲିକ ହୋଇ ପାରିବେ ନାହିଁ, କିମ୍ବା ରୋମାନ୍ କ୍ୟାଥଲିକ ସଂପ୍ରଦାୟରେ ବିବାହ କରିପାରିବେ ନାହିଁ ।

ପ୍ରୋଟେଷ୍ଟାଣ୍ଟମାନଙ୍କ ପକ୍ଷରେ ମଧ୍ୟ ଖ୍ରୀଷ୍ଟିୟାନ ଧର୍ମର ବିଭିନ୍ନ ବ୍ୟାଖ୍ୟାକୁ ଗ୍ରହଣ କରିବା ସହଜ ହୋଇ ନ ଥିଲା । ଯେଉଁମାନେ ପ୍ରଥମ ଚାର୍ଲସଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ, ସେମାନେ ସମସ୍ତେ "ପ୍ୟୁରିଟାନ" ଅଥବା "ଚର୍ଚ୍ଚ ଅଫ୍ ଇଂଲଣ୍ଡ"ର ବିରୋଧୀ ନ ଥିଲେ । ସୁତରାଂ ଧର୍ମ କେବଳ ଏହାର ଏକମାତ୍ର କାରଣ ନ ଥିଲା । କିନ୍ତୁ "ପ୍ୟୁରିଟାନମାନେ" ସେମାନଙ୍କ ଧର୍ମ ବିଷୟରେ ସନ୍ଦେହୀ ଥିଲେ ଓ ସେଥିପାଇଁ କ୍ରମୱେଲଙ୍କୁ ( Cromwell ) ଦୃଢ଼ ଭାବରେ ସମର୍ଥନ କରିଥିଲେ । ତଥାପି ପ୍ୟୁରିଟାନମାନଙ୍କ ମଧ୍ୟରେ ସହନଶୀଳତାର ଅଭାବ ଦେଖା ଦେଇଥିଲା ଓ "ଲର୍ଡ଼ ପ୍ରୋଟେକ୍ଟର" ରୂପେ କ୍ରମୱେଲ ଏହି ତଥାକଥିତ "ସାଧୁମାନଙ୍କୁ" ଏଥିପାଇଁ ଭର୍ତ୍ସନା କରି କହିଥିଲେ "କେବଳ ତୁମ୍ଭେମାନେ ଖ୍ରୀଷ୍ଟଙ୍କର ସମର୍ଥକ ବୋଲି ଭାବ ନାହିଁ; ଏହା ଦ୍ୱାରା ଭୁଲ କରିବାର ସମ୍ଭାବନା ଅଛି" । ଜନ୍ ମିଲଟନ ତାଙ୍କ ସେକ୍ରେଟାରୀ ଥିଲେ । ସ୍ୱାଧୀନତାର ସୁରକ୍ଷା ବିଷୟରେ ସେ ଇଂରାଜୀ ଭାଷାରେ ସର୍ବୋତ୍କୃଷ୍ଟ ଗ୍ରନ୍ଥ ଲେଖି ଯାଇଛନ୍ତି । ଏହା ବୋଧହୁଏ ଅନ୍ୟ ସବୁ ଭାଷାରେ ଲିଖିତ ତଦବିଷୟକ ଗ୍ରନ୍ଥମାନଙ୍କ ମଧ୍ୟରେ ଗୋଟିଏ ଶ୍ରେଷ୍ଠ ରଚନା । ଏହା ସତ୍ତ୍ୱେ ଦ୍ୱିତୀୟ ଚାର୍ଲସଙ୍କ ସମୟରେ ରାଜତନ୍ତ୍ରର ପୁନଃପ୍ରତିଷ୍ଠାକୁ ଇଂଲଣ୍ଡର ପ୍ରାୟ ପ୍ରତ୍ୟେକ ବ୍ୟକ୍ତି ସ୍ୱାଗତ କରିଥିଲେ । ତାହା ପରଠାରୁ ନନ୍‌କନଫର୍ମିଷ୍ଟମାନେ ମଧ୍ୟ ସହନଶୀଳତାରେ ବିଶ୍ୱାସ କହିଥିଲେ । ସେମାନେ ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ କୌଣସି ରାଜନୈତିକ କ୍ଷମତା ଲାଭ କରିପାରି ନ ଥିଲେ ବୋଲି ନିଜ ପ୍ରତି ସହନଶୀଳତା ଆଶାକରି ସେମାନେ ନିଜେ ସହନଶୀଳ ମନୋବୃତ୍ତିର ପରିଚୟ ଦେଇଥିଲେ ।

ଏହା ମଧ୍ୟରେ ଚର୍ଚ୍ଚ ଅଫ୍ ଇଂଲଣ୍ଡ ମଧ୍ୟ ନିଜ ପ୍ରାଧାନ୍ୟ ବଜାୟ ରଖିବା ଲାଗି ସହନଶୀଳ ମନୋଭାବ ପ୍ରଦର୍ଶନ କରିଥିଲେ । ଏହା ନ ହୋଇ ଯଦି ବିଭାଜନ ଓ ମତଭେଦ ଦେଖାଦେଇଥାନ୍ତା, ତାହାହେଲେ ଗୋଟିଏ ଚର୍ଚ୍ଚ ପରିବର୍ତ୍ତେ ବହୁ ସଂଖ୍ୟକ ଚର୍ଚ୍ଚ ପ୍ରତିଷ୍ଠା ହୋଇଥାନ୍ତା । ପୁନଶ୍ଚ, ସମ୍ରାଟ ସ୍ୱୟଂ ବିଶପ୍ ନିଯୁକ୍ତ କରୁଥିଲେ । ସୁତରାଂ ନୀତି ବିରୁଦ୍ଧରେ ସତତ ସ୍ୱର ଉତ୍ତୋଳନ କରୁଥିବା ବିଶପ୍‌ମାନେ ରାଜନୈତିକ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରୁଥିଲେ । ବ୍ୟାପକ ଦୃଷ୍ଟିକୋଣ ତଥା ଉଦ୍ଭଟ ମତପୋଷଣ କରୁଥିବା ବ୍ୟକ୍ତିମାନଙ୍କୁ ସେଥି-ପାଇଁ ବଛା ଯାଉଥିଲା । ବାସ୍ତବିକ, ବେଳେବେଳେ ସେମାନଙ୍କର କୌଣସି ନିଜସ୍ୱ ମତ ନ ଥିଲା । ଆଲଙ୍କାରିକ ବା ସାଧାରଣ ଭାଷାରେ କହିଲେ ଭୂମ୍ୟଧିକାରୀମାନେ ଶୀର୍ଷ ସ୍ଥାନରେ

ଥିଲେ । ପରିବାରରେ ବଡ଼ପୁଅ ସମ୍ପତ୍ତିର ଉତ୍ତରାଧିକାରୀ ହୋଇ "ସ୍କ୍ୱାୟାର" ଉପାଧି ଲାଭ କରୁଥିଲା । ସାନ ପୁଅକୁ ନିଜ ଜୀବିକା ରୂପେ ସୈନ୍ୟବାହିନୀ କିମ୍ବା ଚର୍ଚ୍ଚ ମଧ୍ୟରୁ ଯେ କୌଣସି ଗୋଟିକୁ ବାଛି ନେବାକୁ ପଡ଼ୁଥିଲା । "ସ୍କ୍ୱାୟାର"ର ରାଜନୈତିକ ଗୁରୁତ୍ୱ ଥିବା ଦୃଷ୍ଟିରୁ, କୌଣସି ପରିବାରର କନିଷ୍ଠ ସନ୍ତାନ ଚର୍ଚ୍ଚ ଆଡ଼କୁ ଆକୃଷ୍ଟ ହେଲେ, ତାଙ୍କୁ ବିଶପ୍ ପଦ ଦିଆହୋଇ ନ ପାରିଲେ ସୁଦ୍ଧା ଖ୍ରୀଷ୍ଟଧର୍ମର ପ୍ରଧାନାଚାର୍ଯ୍ୟ ( a deanery ) ପରିବର୍ତ୍ତେ ପାଦ୍ରୀ ( parson ) ପଦ ଦିଆଯାଉଥିଲା । ଲର୍ଡ଼ ସଭାରେ ବିଶପ୍‌ମାନଙ୍କର ସ୍ଥାନ ଥିଲା । ଜଣେ ପ୍ରଧାନ ମନ୍ତ୍ରୀଙ୍କ ପଛରେ ସୁଶୃଙ୍ଖଳିତ ଦଳର ସମର୍ଥନ ନ ଥାଇ କେବଳ ରାଜନୈତିକ ବନ୍ଧୁମାନଙ୍କ ସମର୍ଥନ ଥିଲେ, ବିଶପ୍‌ମାନଙ୍କ ସମର୍ଥନ ତାଙ୍କ ପକ୍ଷରେ ଆବଶ୍ୟକ ହେଉଥିଲା । ଧର୍ମ ତତ୍ତ୍ୱ ତଥା ରାଜନୀତି ବିଷୟରେ ବିଶପମାନଙ୍କ ଜ୍ଞାନ ସମ୍ବନ୍ଧରେ ଆଲୋଚନା କରିବାର କୌଣସି ଯଥାର୍ଥତା ନ ଥିଲା ।

ଅଷ୍ଟାଦଶ ଶତାବ୍ଦୀରେ ଉଦାସୀନ ଭାବ ପ୍ରକାଶ ପାଇଥିବାରୁ ଜଣେ ଏଥିପ୍ରତି ଉଦାସୀନ ହେବା ସହଜ; କିନ୍ତୁ ଏହି ଶତାବ୍ଦୀରେ ବହୁ ଖ୍ୟାତନାମା ବ୍ୟକ୍ତିଙ୍କର ଆବିର୍ଭାବ ହୋଇଥିଲା । "ଇଂଲଣ୍ଡର ସ୍ୱେଚ୍ଛାସେବକ ଅଶ୍ୱାରୋହୀ ସୈନ୍ୟବାହିନୀ" ( "Yeomen of England" )ର ବୀରତ୍ୱ ଏକ ରୋମାଞ୍ଚକର କାହାଣୀ ହେଲେହେଁ ଏହି ଶତାବ୍ଦୀର ଗୋଟିଏ ଭାଗରେ ମାର୍ଲବରୋଙ୍କ ନେତୃତ୍ୱରେ ଓ ଅନ୍ୟ ଏକ ଭାଗରେ ୱେଲିଂଟନଙ୍କ ନେତୃତ୍ୱରେ ବ୍ରିଟିଶ ସୈନ୍ୟବାହିନୀ ଯେଉଁ ବୀରତ୍ୱ ଏବଂ ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ନୌସେନା ବାହିନୀ ନେଲସନଙ୍କ ନେତୃତ୍ୱରେ ଯୁଦ୍ଧ କ୍ଷେତ୍ରରେ ଯେଉଁ ସାହସ ପ୍ରଦର୍ଶନ କରିଥିଲେ, ତାହା କମ୍ ଗୌରବର ବିଷୟ ନ ଥିଲା । ନିଶ୍ଚିତ ଭାବରେ ଏଥିରେ ସମାଜର ଉପର ଶ୍ରେଣୀର ଲୋକମାନେ ଯୋଗ ଦେଇ ନ ଥିଲେ । ଯେଉଁ ଲୋକମାନେ ଉତ୍ତର ଆମେରିକାରେ ବସତି ଆରମ୍ଭ କରିଥିଲେ କିମ୍ବା ଇଷ୍ଟ ଇଣ୍ଡିଆ କମ୍ପାନୀର କର୍ମଚାରୀଗୋଷ୍ଠୀ ବା ସୈନ୍ୟବାହିନୀରେ ଯୋଗ ଦେଇଥିଲେ, ସେମାନେ ସମସ୍ତେ "ଭୂମ୍ୟଧିକାରୀ ଶ୍ରେଣୀରୁ" ଆସି ନ ଥିଲେ । ଏବେ ଆଉ "ସାମ୍ରାଜ୍ୟ" ଓ "ସାମ୍ରାଜ୍ୟବାଦୀ" ହେବାର ଆବଶ୍ୟକତା ପଡ଼ୁ ନାହିଁ; ବରଂ ଏହି ଶବ୍ଦଗୁଡ଼ିକୁ ଏବେ ଘୃଣା ଚକ୍ଷୁରେ ଦେଖାଯାଉଛି; କିନ୍ତୁ ସାମ୍ରାଜ୍ୟବାଦୀ ହେବା ପାଇଁ ସାହସ, ସହିଷ୍ଣୁତା, ଶକ୍ତି ଓ ସ୍ୱାର୍ଥ-ତ୍ୟାଗ ପରି ଅନେକ ସୁଗୁଣାବଳୀ ଆବଶ୍ୟକ ହୋଇଥାଏ । ବ୍ରିଟେନ ଗୋଟିଏ ସାମ୍ରାଜ୍ୟ ପ୍ରତିଷ୍ଠା କରିଥିଲା ଓ ଅଷ୍ଟାଦଶ ଶତାବ୍ଦୀରେ ଏହା ଦ୍ୱାରା ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ା ପରି ଦୁଇଟି ନୂତନ ରାଷ୍ଟ୍ର ସୃଷ୍ଟି ହୋଇଥିଲା । ପରେ ଏହା ଆଉ ଗୋଟିଏ ସାମ୍ରାଜ୍ୟ ପ୍ରତିଷ୍ଠା କରିବାକୁ ଚେଷ୍ଟା କରିଥିଲା । ଏହା କେବଳ ସାମରିକ ଦୁଃସାହସିକ କାର୍ଯ୍ୟ ଦ୍ୱାରା ସମ୍ଭବପର ନ ଥିଲା ଏବଂ ଏଥିରେ ଲୁଣ୍ଠିତ ଦ୍ରବ୍ୟ ସଂଗ୍ରହ କରିବା ଓ ବ୍ୟବସାୟୀ-ମାନେ ସହଜ ଲଭ୍ୟ ଧନ ପାଇବାର ଆଶା ମଧ୍ୟ ନ ଥିଲା । ଅତ୍ୟଧିକ ମଦ୍ୟପ ଓ ଅତ୍ୟନ୍ତ ଅଶ୍ୱାରୋହୀ ଭୂମ୍ୟଧିକାରୀ ଶ୍ରେଣୀ ଓ ସହରାଞ୍ଚଳର ଦ୍ରୁତ ବର୍ଦ୍ଧିଷ୍ଣୁ ମଧ୍ୟବିତ୍ତ ଶ୍ରେଣୀଙ୍କ କାର୍ଯ୍ୟ ପ୍ରଶଂସନୀୟ ଥିଲା । କଠିନ ପରିଶ୍ରମ କରୁଥିବା ସାମ୍ଭାରମାନେ କ୍ଷେତରେ ରହି ବୈଜ୍ଞାନିକ

କୃଷିପଦ୍ଧତିର ବିକାଶ କରିଥିଲେ ଓ କାରୁକାର୍ଯ୍ୟ ଖଚିତ ବିରାଟ ଗୃହସବୁ ନିର୍ମାଣ କରିଥିଲେ । ଚର୍ଚ୍ଚ ଦୁର୍ନୀତିପୂର୍ଣ୍ଣ ଓ ଉଦାସୀନ ଥିଲା; ତଥାପି ସେଥିରୁ ଓ୍ୱେଲେସଲିଙ୍କ ପରି ବ୍ୟକ୍ତିମାନେ ମଧ୍ୟ ବାହାରି ପାରିଥିଲେ । ବିଶ୍ୱବିଦ୍ୟାଳୟଗୁଡ଼ିକ ତନ୍ଦ୍ରାସିକ୍ତ ଥିଲେ; ତଥାପି ସେଥିରୁ ସାର୍ ଆଇଜାକ୍ ନିଉଟନ ଓ ଆଡ଼ାମ ସ୍ମିଥ୍‌ଙ୍କ ପରି ପଣ୍ଡିତମାନେ ବାହାରି ଥିଲେ । ରାଜନୀତି ସଂପୂର୍ଣ୍ଣ ରୂପେ ଦୁର୍ନୀତି-ପୂର୍ଣ୍ଣ ଥିଲା; ତଥାପି ସେଥିରୁ ବୋଲିଙ୍ଗବ୍ରୋକ୍ ଓ ଓ୍ୱାଲପୋଲ, ଚାଥାମ୍ ଓ ପୀଟ୍, ବର୍କ ଓ ଫକ୍ସଙ୍କ ପରି ବ୍ୟକ୍ତିମାନେ ବାହାରି ଥିଲେ । ସର୍ବୋପରି, ଶିଳ୍ପ ବିପ୍ଳବ ବ୍ରିଟେନରେ ଆରମ୍ଭ ହୋଇଥିଲା । ବ୍ରିଟେନର କୋଇଲା ଓ ଲୁହା ଏହାର କାରଣ ନ ଥିଲା; ବରଂ ଇଂରେଜ ଲୋକମାନଙ୍କ ବୁଦ୍ଧି ବଳରେ ଉଦ୍‌ଭାବିତ ନୂତନ କଳ ଓ ପରିବହନ ବ୍ୟବସ୍ଥା ଯୋଗୁ ତାହା ସମ୍ଭବପର ହୋଇଥିଲା ।

ଏହି ଘଟଣା ପଛରେ ନିଶ୍ଚିତ ଭାବରେ ବହୁବିଧ ଓ ଜଟିଳ କାରଣ ଥିଲା । ଏହାର ଗୋଟିଏ କାରଣ ହେଉଛି ଯେ ପ୍ରତ୍ୟେକ ଇଂରେଜ ( ପରେ ସ୍କଟମାନଙ୍କୁ ଅନ୍ତର୍ଭୁକ୍ତ କରା-ଯାଇଥିଲା ) ସ୍ୱାଧୀନ ଥିଲା । ସେ ଏପରି ଏକ ସହନଶୀଳ ଯୁଗରେ ବାସ କରୁଥିଲା ଯେ ସେ ଯେ କୌଣସି ବିଷୟରେ ଚିନ୍ତା କରିପାରୁଥିଲା ଓ ଯେ କୌଣସି କାର୍ଯ୍ୟ ସଂପାଦନ କରିପାରୁଥିଲା । ଆଇନର ସୀମା ମଧ୍ୟରେ ରହି ଏହା ସେ କରିପାରୁ ଥିଲା । କେବଳ ସଂପତ୍ତିର ରକ୍ଷଣା-ବେକ୍ଷଣକୁ ଛାଡ଼ି ଦେଲେ ଆଇନ କ୍ୱଚିତ ଜଟିଳ ଥିଲା । ଇଂରେଜମାନେ ପ୍ରୃଥିବୀର ଗ୍ରୀକ୍ ସାହିତ୍ୟରୁ ଚିନ୍ତାଧାରା ଆହରଣ କରିଥିଲେ ହେଁ ଗ୍ରୀକ୍‌ମାନଙ୍କଠାରୁ ଇଂରେଜମାନେ ଏହି ବିଷୟରେ ପୃଥକ ଥିଲେ ଯେ ଇଂରେଜମାନେ ଶାସନ କରି ଜାଣିଥିଲେ । ଆଇନଗୁଡ଼ିକ ବେଳେ ବେଳେ କ୍ରୁର ଓ କଠିନ ଥିଲା । ତଥାପି, ମୋଟ ଉପରେ ବିଚାରପତିମାନେ ତାହାକୁ ଉପଯୁକ୍ତ ଭାବରେ କାର୍ଯ୍ୟକାରୀ କରୁଥିଲେ ଏବଂ ହୋଲଟ୍ ଓ ମାନ୍‌ସଫିଲଡଙ୍କ ପରି ବିଶିଷ୍ଟ ବିଚାରପତିମାନେ ତାହାର ଉପଯୁକ୍ତ ବିକାଶ ସାଧନ କରିଥିଲେ । ପ୍ରିଟେଣ୍ଡରମାନଙ୍କ ( ଛଳନାକାରୀ ସମ୍ରାଟମାନଙ୍କ ) ଆକ୍ରମଣ ଓ ନେପୋଲିୟନଙ୍କ ଭୟ ଫଳରେ ଭୌତିକ ବିକାଶରେ ବାଧାବିଘ୍ନ ସୃଷ୍ଟି ହୋଇଥିଲେ ମଧ୍ୟ ବ୍ରିଟେନରେ ଉଚ୍ଚଧରଣର ସଭ୍ୟତା ସୃଷ୍ଟି କରିବା ସମ୍ଭବ ହୋଇଥିଲା ।

ଶିଳ୍ପ ବିପ୍ଳବ ଫଳରେ ଇଂଲଣ୍ଡ ଓ ନିମ୍ନଭୂମି ସ୍କଟଲଣ୍ଡର ରୂପ ପରିବର୍ତ୍ତିତ ହୋଇ-ଯାଇଥିଲା । ବିରାଟ ଅର୍ଥନୈତିକ ବିକାଶ ମଝିରେ ୧୭୮୯ରେ ଫରାସୀ ବିପ୍ଳବ ଦେଖାଦେବା ଫଳରେ କେତେଗୋଟି ଦୁର୍ବୋଧ ଚିନ୍ତାଧାରା କିଛି ସମୟ ପାଇଁ ଦେଖା ଦେଇଥିଲା । ସମ୍ପତ୍ତି ବିପନ୍ନ ହେଲା ପରି ମନେ ହେଉଥିଲା, କାରଣ ବିପ୍ଳବ ଫଳରେ ଅଭିଜାତ ଗୋଷ୍ଠୀର ସ୍ୱେଚ୍ଛା-ଚାରିତନ୍ତ୍ର ପରିବର୍ତ୍ତେ ବିଦ୍ରୋହ-ଉଦ୍ଦୀପକ ନେତୃବୃନ୍ଦଙ୍କ ସ୍ୱେଚ୍ଛାଚାରିତନ୍ତ୍ର ପ୍ରତିଷ୍ଠିତ ହୋଇଥିଲା । ନେପୋଲିୟନ ଆକ୍ରମଣର ଭୟ ଦେଖାଇ ଅଧିକ ବିପଜ୍ଜନକ ହୋଇଥିଲେ । ବିଦ୍ରୋହ ପ୍ରରୋଚକ ନେତାମାନେ ତାଙ୍କର ଉତ୍ତରାଧିକାରୀ ଥିଲେ । ଏହାର ପରିଣାମ ସ୍ୱରୂପ ବିଚଳିତ

ଭୂମ୍ୟଧିକାରୀମାନେ ଅଧିକ କଷ୍ଟକର ଗୋଷ୍ଠୀତନ୍ତ୍ର ( Oligarchy ) ପ୍ରତିଷ୍ଠା କରିପାରି-ଥାନ୍ତେ । ସେ ଯାହା ହେଉନା କାହିଁକି, କାଥାମ ଓ କନିଷ୍ଠ ପିଟ୍‌ଙ୍କ ଉଦାରବାଦୀ ଚକ୍ରା-ଧାରୀଙ୍କୁ ଜେମସ୍ ଫକ୍ସ ଓ ତାଙ୍କ ସ୍ୱଳ୍ପ ସଂଖ୍ୟକ ଅନୁଚରଗଣ ବଜାୟ ରଖିଥିଲେ । ଏହି ଫଳରେ ନୂତନ ଭାବରେ ନନ୍‌କନଫର୍ମିଷ୍ଟମାନଙ୍କ କ୍ଷମତା ବୃଦ୍ଧି ପାଇଥିଲା ଓ ଚର୍ଚ୍ଚଠାରୁ ମେଥଡ଼ିଷ୍ଟମାନେ ଅଲଗା ହୋଇ ସେଥିରେ ଯୋଗ ଦେଇଥିଲେ । ଶାନ୍ତିପୂର୍ଣ୍ଣ ପ୍ରଣାଳୀରେ ଭୂମ୍ୟଧିକାରୀ ଗୋଷ୍ଠୀତନ୍ତ୍ର ଜନପ୍ରିୟ ଗଣତନ୍ତ୍ରରେ ରୂପାନ୍ତରିତ ହୋଇଥିଲା ଓ ଏଥିପାଇଁ ଏକଶତ ବର୍ଷ ଲାଗିଥିଲା । ଏହି ବିରାଟ ପରିବର୍ତ୍ତନ ଅନେକାଂଶରେ ଇଂଲଣ୍ଡର ଦ୍ୱିତୀୟ ରାଣୀ ଭିକ୍ଟୋରିଅଙ୍କ ସମୟରେ ଘଟିଥିଲା । ସେ ଅବଶ୍ୟ ନିଜକୁ "ଗଣତନ୍ତ୍ରବାଦୀ" ବୋଲି ଭାବୁ ନ ଥିଲେ ଓ ସେ ଏହି ଶବ୍ଦକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ରାଣୀ ଭିକ୍ଟୋରିଆ ୧୮୩୭ରେ ସିଂହାସନ ଆରୋହଣ କରିବା ସମୟରେ ଏହି ବିରାଟ ପରିବର୍ତ୍ତନର ଅଭ୍ୟାରମ୍ଭ ହୋଇଥିଲା ଓ ୧୮୯୭ ବେଳକୁ ତାଙ୍କ ସାମ୍ରାଜ୍ୟର ସ୍ୱାଧୀନ ବ୍ୟକ୍ତିମାନେ ଆନନ୍ଦୋଲ୍ଲାସରେ ଥିଲେ । ଏହାର ଚାରିବର୍ଷ ପରେ ତାଙ୍କର ମୃତ୍ୟୁ ଘଟିଥିଲା । ବିଂଶ ଶତାବ୍ଦୀରେ ଯାହାକୁ "ରାଜ୍ୟଗୋଷ୍ଠୀ" ବୋଲି କୁହାଯାଉଛି ସେହି ଦେଶଗୁଡ଼ିକ ସେତେବେଳେ ତାଙ୍କ ସାମ୍ରାଜ୍ୟରେ ଅନ୍ତର୍ଭୁକ୍ତ ଥିଲା ।

## ଗଣତନ୍ତ୍ର ( Democracy ) :

୧୬୮୮ରେ ଉଇଲିୟମ ଓ ମେରୀଙ୍କ ସିଂହାସନାରୋହଣ ପରେ ସଂସଦୀୟ ସାର୍ବଭୌମ କ୍ଷମତା ବିଷୟରେ କୌଣସି ସନ୍ଦେହ ନ ଥିଲା । ତଥାପି ସମ୍ରାଟମାନଙ୍କର ବହୁତ ପ୍ରଭାବ ଥିଲା । କିନ୍ତୁ ଅର୍ଥ ସଂଗ୍ରହ ଓ ଆଇନର କାର୍ଯ୍ୟକାରୀତା ପାଇଁ ସେମାନଙ୍କୁ ସଂସଦ ଉପରେ ନିର୍ଭର କରିବାକୁ ପଡ଼ୁଥିଲା । ସେମାନେ ରାଜସିଂହାସନ ପାଇଁ ମଧ୍ୟ ସଂସଦ ଉପରେ ନିର୍ଭର କରୁଥିଲେ । ସିଂହାସନର ଉତ୍ତରାଧିକାରୀ ହେବା ପାଇଁ ତୃତୀୟ ଉଇଲିୟମଙ୍କର ଖୁବ୍ କମ୍ ଅଧିକାର ଥିଲା ଓ ଏଥିପାଇଁ ମେରୀଙ୍କର ଟିକିଏ ବେଶୀ ଅଧିକାର ଥିଲା । ରାଣୀ ଆନେଙ୍କ ମୃତ୍ୟୁ ପରେ "ଆକ୍ଟ ଅଫ୍ ସେଟ୍‌ଲମେଣ୍ଟ" ( ସିଂହାସନ ଆରୋହଣ ନିର୍ଣ୍ଣୟ ଅଧିନିୟମ ) ଅନୁସାରେ ହାନୋଭରିଆନ-ମାନଙ୍କ ଦାବୀ ସାବ୍ୟସ୍ତ ହୋଇଥିଲା; ଏପରିକି ଏବେ ମଧ୍ୟ ସଂସଦର ଅଧିନିୟମ ଅନୁସାରେ ସିଂହାସନ ତ୍ୟାଗକରିଥିବା ଡିଉକ୍ ଅଫ୍ ଉଇଣ୍ଡସରଙ୍କୁ ବାଦ୍ ଦେଲେ ଦ୍ୱିତୀୟ ଏଲିଜାବେଥଙ୍କ ଅପେକ୍ଷା ପ୍ରଥମ ଜେମସ୍‌ଙ୍କର ଉତ୍ତରାଧିକାରୀ-ମାନଙ୍କର ସିଂହାସନ ପ୍ରତି ଅଧିକ ପ୍ରତ୍ୟକ୍ଷ ଦାବୀ ଥିଲାପରି ମନେହୁଏ । *

---

* ଉତ୍ତରାଧିକାରୀ ନିୟମକୁ ଠିକ ଭାବରେ ପ୍ରୟୋଗ କଲେ ପ୍ରଥମ ଜେମସଙ୍କ ଅପେକ୍ଷା ପ୍ରଥମ ଚାର୍ଲସଙ୍କର ଉତ୍ତରାଧିକାରୀମାନଙ୍କର ବେଶୀ ଦାବୀ ଅଛି । ପ୍ରଥମ ଚାର୍ଲସଙ୍କ କନ୍ୟା ଓର୍ଲିନସ୍‌ର ଡିଚେସ୍ ହେନେରୀଏଟା ରୋମାନ କ୍ୟାଥଲିକ ଥିବାରୁ ସିଂହାସନ ପ୍ରତି ତାଙ୍କର ଦାବୀ ହରାଇଥିଲେ । ଫଳରେ ପ୍ରଥମ ଜେମସ୍‌ଙ୍କ କନ୍ୟା ଏଲିଜାବେଥ ( ଇଲେକ୍‌ଟ୍ରେସ ପାଲାଟିନ )ଙ୍କ ସପକ୍ଷରେ ଉକ୍ତ ଅଧିକାର ସାବ୍ୟସ୍ତ ହୋଇଥିଲା । ଦ୍ୱିତୀୟ ଏଲିଜାବେଥ ଏହି ବଂଶର ଉତ୍ତରାଧିକାରୀ ବୋଲି ଦାବୀ କରନ୍ତି ।

ମଧ୍ୟଯୁଗୀୟ ସଂସଦରେ ବିଶିଷ୍ଟ ଲର୍ଡ଼ ଓ "ସାଧାରଣ ଲୋକମାନଙ୍କର" ପ୍ରତିନିଧିବୃନ୍ଦ ଯୋଗ ଦେଉଥିଲେ । ଶେଷୋକ୍ତ ଶ୍ରେଣୀର ପ୍ରତିନିଧିମାନଙ୍କୁ ସାୟାର୍‌ର ନାଇଟ୍ ଓ ବରୋର ବରଜେସ୍ କୁହାଯାଉଥିଲା । ବିଶିଷ୍ଟ ଲର୍ଡ଼ମାନଙ୍କ ସ୍ଥାନରେ ବିଶିଷ୍ଟ ଭୂସ୍ୱାମୀମାନଙ୍କୁ ସେମାନଙ୍କର ଧନ ଓ ରାଜନୈତିକ ପ୍ରଭାବ ପାଇଁ ଲର୍ଡ଼ ପଦ ପ୍ରଦାନ କରାଯାଉଥିଲା । ସାୟାରର ନାଇଟ୍‌ମାନଙ୍କ ସ୍ଥାନରେ ଜମିମାଲିକମାନଙ୍କ ଦ୍ୱାରା ନିର୍ବାଚିତ ଭୂସ୍ୱାମୀମାନେ ବସୁ ଥାଉଥିଲେ । ନିର୍ବାଚନ ସମୟରେ ଅଧିକାଂଶ ବରୋମାନଙ୍କରେ ପ୍ରତିବେଶୀ ଜମି ମାଲିକମାନେ ଆସି ପ୍ରଭାବ ପକାଉଥିଲେ । ସୁତରାଂ ଅଷ୍ଟାଦଶ ଶତାବ୍ଦୀର ସଂସଦରେ ଭୂସ୍ୱାମୀମାନେ ପ୍ରଭାବଶାଳୀ ଥିଲେ । ସହରାଞ୍ଚଳର ନିର୍ବାଚକମାନେ ନିଜକୁ "ମୁକ୍ତବ୍ୟକ୍ତି" ବୋଲି ଭାବୁଥିଲେ ଏବଂ ଶିଳ୍ପ ବିପ୍ଳବ ଫଳରେ ସହରଗୁଡ଼ିକ ଗଢ଼ି ଉଠିଥିବାରୁ ସେମାନଙ୍କୁ ପ୍ରତିନିଧିତ୍ୱ ଦେବା ବ୍ୟବସ୍ଥା ନ ଥିଲା । ସୁତରାଂ ସହରର ଧନଶାଳୀ ବ୍ୟବସାୟୀ ଓ ଉତ୍ପାଦନକାରୀମାନେ ମତଦାନ ଅଧିକାରରୁ ବଞ୍ଚିତ ହୋଇଥିଲେ ।

୧୮୩୨ ସୁଦ୍ଧା ଅର୍ଥନୈତିକ କ୍ଷମତାର ଭାରସାମ୍ୟରେ ପରିବର୍ତ୍ତନ ଘଟିଥିଲା । ଭୂସ୍ୱାମୀମାନଙ୍କର ସ୍ଥିତି ଗୁରୁତ୍ୱପୂର୍ଣ୍ଣ ଥିଲେ ହେଁ ଉତ୍ପାଦନକାରୀମାନେ ଧନଶାଳୀ ଓ ପ୍ରଭାବଶାଳୀ ହୋଇଯାଇଥିଲେ । ୧୮୩୪ରେ ସାର୍ ରବର୍ଟ ପିଲ୍ ପ୍ରଥମ ଥର ପାଇଁ ପ୍ରଧାନ ମନ୍ତ୍ରୀ ହୋଇଥିଲେ । ସେ ଜଣେ ଉତ୍ପାଦନକାରୀଙ୍କର ସନ୍ତାନ ଥିଲେ । ସାଧାରଣ ଭାବରେ ଉତ୍ପାଦନକାରୀମାନେ ହ୍ୱିଗ୍ ଓ ନନ୍‌କନଫର୍ମିଷ୍ଟ ଥିଲେ । ୧୮୩୦ରେ କେତେକ ନରମପନ୍ଥୀ ଟୋରୀମାନେ ହ୍ୱିଗମାନଙ୍କ ସହିତ ଯୋଗଦାନ କଲା ପରେ ସଂସ୍କାର ବ୍ୟବସ୍ଥା ତ୍ୱରାନ୍ୱିତ ହୋଇଥିଲା । ଏପରିକି ୧୮୩୨ର ସଂସ୍କାର ବିଧେୟକଟିକୁ ଲର୍ଡ଼ ସଭାରେ ପାସ୍ କରାଇଦେବା ଲାଗି ପଚାଶଟି ହ୍ୱିଗ୍ ଲର୍ଡ ପଦ ସୃଷ୍ଟି କରିବା ପାଇଁ ଚତୁର୍ଥ ଉଇଲିୟମ ଧମକ ଦେଇଥିଲେ ।

୧୮୩୨ର ସଂସ୍କାର ଅଧିନିୟମ ( The Reform Act of 1832 ) ଫଳରେ ସହରାଞ୍ଚଳର ମଧ୍ୟବିତ୍ତ ଶ୍ରେଣୀ ନିର୍ବାଚନ ଅଧିକାର ପାଇଥିଲେ । ଏହା ଦ୍ୱାରା ଅର୍ଥନୈତିକ କ୍ଷମତାର ଭାରସାମ୍ୟ ରକ୍ଷା ହେବା ସଙ୍ଗେ ସଙ୍ଗେ ସହର ଓ ଗ୍ରାମାଞ୍ଚଳ ମଧ୍ୟରେ ସମତା ରକ୍ଷା କରାଯାଉଥିଲା । ଏହାର ପରିଣତି ହଠାତ୍ ଜଣା ପଡ଼ି ନ ଥିଲା । ୧୮୪୬ରେ ଶସ୍ୟ ସଂରକ୍ଷଣ ଆଇନ ବାତିଲ ହେଲା ପର୍ଯ୍ୟନ୍ତ ଭୂସ୍ୱାମୀମାନେ ରାଜନୀତି କ୍ଷେତ୍ରରେ ପ୍ରାଧାନ୍ୟ ବିସ୍ତାର କରିଥିଲେ । ଶସ୍ୟ ସଂରକ୍ଷଣ ଆଇନ ବାତିଲ ହେବା ଫଳରେ ଇଂଲଣ୍ଡରେ କୃଷିକୁ ସାହାଯ୍ୟ ମିଳିଥିଲା । ଏହା ଦ୍ୱାରା ଗହମ ଓ ରୁଟିର ଦାମ ଠିକ୍ ରହିଥିଲା ଓ ଉତ୍ପାଦନକାରୀମାନେ ଦେଉଥିବା ବେତନ ମଧ୍ୟ ଠିକ୍ ରହିଥିଲା । ପିଲ୍‌ଙ୍କର ସମର୍ଥକମାନେ କର୍ନ ଲ ( ଶସ୍ୟ ସଂରକ୍ଷଣ ଆଇନ )କୁ ବାତିଲ କରିଥିଲେ । ହ୍ୱିଗ୍ ଓ ପିଲଙ୍କ ସମର୍ଥକମାନଙ୍କ ମଧ୍ୟରେ ବିବାଦ ହେବା ଫଳରେ ଉଦାରବାଦୀ ଦଳ ( The Liberal Party )ର ସୃଷ୍ଟି ହୋଇଥିଲା । ଏହି ଦଳ ଉତ୍ପାଦନକାରୀମାନଙ୍କର ସ୍ୱାର୍ଥ ଓ "ନନ୍‌କନଫର୍ମିଷ୍ଟମାନଙ୍କର ବିବେକକୁ" ଭିତ୍ତିକରି

ଗଠିତ ହୋଇଥିଲା । ଡିସରେଲିଙ୍କ ନେତୃତ୍ୱରେ ପରିଚାଳିତ ବଭକ୍ତ ଟୋରି ଦଳ "ଦେଶର ଭଦ୍ରବ୍ୟକ୍ତି" କମ୍ବା ଭୂମ୍ୟଧିକାରୀମାନଙ୍କ ସ୍ୱାର୍ଥକୁ ସମର୍ଥନ କରୁଥିଲା । ଶସ୍ୟ ସଂରକ୍ଷଣ ଆଇନକୁ ବାତିଲ କରିବା ଫଳରେ ଯେଉଁ କ୍ଷତି ହୋଇଥିଲା, ସହରାଞ୍ଚଳରେ ଖଜଣା ବସାଇ ତାହା ପୂରଣ ହୋଇଯାଇ ଥିବାରୁ ଭୂମି ଓ ଅନ୍ୟାନ୍ୟ ପ୍ରକାର ସମ୍ପତ୍ତି ମଧ୍ୟରେ ଥିବା ପାର୍ଥକ୍ୟ ଦ୍ରୁତଗତିରେ ହ୍ରାସ ପାଇଥିଲା । କୃଷିର ସ୍ୱାର୍ଥ "ସଂରକ୍ଷଣ" କରିବା ପାଇଁ ଟୋରି ଦଳର ନୀତିକୁ ଡିସରେଲି କ୍ରମଶଃ ପରିବର୍ତ୍ତନ କରିପାରିଥିଲେ । ଏହା ଫଳରେ ସହରାଞ୍ଚଳରେ ବୃଦ୍ଧି ପାଉଥିବା ନବୀଚକମାନଙ୍କ ସମର୍ଥନ ମିଳିବ ବୋଲି ଆଶା କରାଯାଉଥିଲା । ୧୮୬୭ରେ ଡିସ୍‌ରେଲି ଆଉ ଟିକିଏ ଆଗକୁ ଯାଇ ସହରରେ ବସବାସ କରୁଥିବା ଶ୍ରମିକ ଶ୍ରେଣୀକୁ ମତଦାନ ଅଧିକାର ଦେଇଥିଲେ । ସହରାଞ୍ଚଳର ଶ୍ରମିକମାନେ ଉଦାର ଦଳକୁ ସମର୍ଥନ କରିବେ ବୋଲି ଉଦାରବାଦୀମାନେ ଭାବୁଥିଲେ । କିନ୍ତୁ ଡିସରେଲି ସେମାନଙ୍କୁ ମତଦାନ ଅଧିକାର ଦେଇଥିବାରୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ଟୋରି ଦଳକୁ ସମର୍ଥନ କରିବେ ବୋଲି ଭାବୁଥିଲେ । ଡିସରେଲିଙ୍କ ଅନୁମାନ ଠିକ୍ ଥିଲେ ମଧ୍ୟ ଏହା ସମ୍ପୂର୍ଣ୍ଣ ଭାବେ ଠିକ୍ ନ ଥିଲା । ୧୮୬୮ରୁ ୧୮୭୪ ଓ ପୁଣି ୧୮୮୦ରୁ ୧୮୮୫ ପର୍ଯ୍ୟନ୍ତ ଉଦାରବାଦୀମାନେ କ୍ଷମତାରେ ଥିଲେ । ଶେଷୋକ୍ତ ସମୟରେ ସେମାନେ ଗ୍ରାମାଞ୍ଚଳରେ ବସବାସ କରୁଥିବା ଶ୍ରମିକ ଶ୍ରେଣୀକୁ ମତଦାନ ଅଧିକାର ଦେଇଥିଲେ । ଏହି ଘଟଣା ଯୋଗୁଁ ଉଦାରବାଦୀ ଦଳ ମଧ୍ୟରେ ବିଭେଦ ସୃଷ୍ଟି ହୋଇଥିଲା । କେବଳ ଖୁବ୍ ଅଳ୍ପ ସମୟ ବ୍ୟତୀତ ୧୮୮୬ରୁ ୧୯୦୯ ପର୍ଯ୍ୟନ୍ତ ଟୋରିମାନେ କ୍ଷମତାରେ ରହିଥିଲେ । ଭୂମ୍ୟଧିକାରୀମାନଙ୍କ ସ୍ୱାର୍ଥ ଉପରେ ସେମାନେ ଆଉ ନିର୍ଭର କରି ନ ଥିଲେ । ଭୂମ୍ୟଧିକାରୀମାନଙ୍କର ପ୍ରଭାବ ମଧ୍ୟ କ୍ରମଶଃ ଲୋପ ପାଇଯାଇ-ଥିଲା । ୧୮୮୫ର ସମାଜ ଅଳ୍ପ ଧନୀ ଓ ଶିକ୍ଷିତ ବ୍ୟକ୍ତିମାନଙ୍କୁ ନେଇ ଗଠିତ ହୋଇଥିଲା ଓ ସେମାନେ ଟୋରି ଦଳର ଦୃଢ଼ ସମର୍ଥକ ଥିଲେ । ଟୋରି ଦଳ ମଧ୍ୟ ଶ୍ରମିକ ଶ୍ରେଣୀର ସମର୍ଥନ ଲାଭ କରିଥିଲା । ଏହା ମଧ୍ୟରେ ଶ୍ରମିକ ସଂଗଠନ ( ଟ୍ରେଡ୍ ୟୁନିୟନ ) ବିକାଶ ଲାଭ କରିଥିଲା ଏବଂ ୧୮୯୯ରେ ସେଗୁଡ଼ିକ ( କେତେକ ସମାଜବାଦୀ ଗୋଷ୍ଠୀ ସହିତ ) ଶ୍ରମିକ ପ୍ରତିନିଧି ସମିତି ଗଠନ କରିଥିଲେ । ଏହି ସମିତିରୁ ହିଁ ଶ୍ରମିକ ଦଳ ସୃଷ୍ଟି ହୋଇଥିଲା । କିଛି ସମୟ ପାଇଁ ଶ୍ରମିକମାନଙ୍କ ପ୍ରଭାବ ଉଦାରବାଦୀମାନଙ୍କ ସପକ୍ଷରେ ଥିବାରୁ ୧୯୦୬ରେ ଉଦାରବାଦୀ ଦଳ ବିପୁଳ ସଂଖ୍ୟା ଗରିଷ୍ଠତା ହାସଲ କରିବା ସମ୍ଭବ ହୋଇଥିଲା ।

୧୯୧୮ ପର୍ଯ୍ୟନ୍ତ ମତାଧିକାର ସମ୍ବନ୍ଧରେ କୌଣସି ପରିବର୍ତ୍ତନ ହୋଇ ନ ଥିଲା । ସେତେବେଳେ ଉଦାରବାଦୀ ଦଳ ମଧ୍ୟରେ ବିଭେଦ ଦେଖାଦେଇଥିଲା । ଗୋଟିଏ ଗୋଷ୍ଠୀ ଲୟଡ୍ ଜର୍ଜଙ୍କ ନେତୃତ୍ୱରେ ଟୋରିମାନଙ୍କ ସହିତ ସହଯୋଗ କରି ( ଶ୍ରମିକମାନଙ୍କ ସମର୍ଥନରେ ) ୧୯୧୬ରେ ମିଳିତ ସରକାର ଗଠନ କରିବାକୁ ଚାହୁଁଥିଲେ । ୧୯୧୮ର ଅଧିନିୟମ ଅନୁଯାୟୀ ମତାଧିକାର କେବଳ ଗୃହମାଲିକମାନଙ୍କୁ ଦିଆ ନ ଯାଇ ଦେଶରେ ବସବାସ କରୁଥିବା ଗୃହହୀନ ଅନ୍ୟମାନଙ୍କୁ ବି ଦିଆଯାଇଥିଲା । ଏହା ଫଳରେ ଏକ ନିର୍ଦ୍ଦିଷ୍ଟ

ତାହାଖ ମଧ୍ୟରେ ନିର୍ବାଚନ ମଣ୍ଡଳୀରେ ବସବାସ କରୁଥିବା ସମସ୍ତ ବ୍ୟକ୍ତିମାନଙ୍କୁ ମତାଧିକାର ମିଳିଥିଲା । ଏଥିପାଇଁ ପୁରୁଷମାନଙ୍କର ସର୍ବନିମ୍ନ ବୟସ ୨୧ ଓ ନାରୀମାନଙ୍କର ସର୍ବନିମ୍ନ ବୟସ ୩୦ ରଖାଯାଇଥିଲା ( ନାରୀମାନେ ଏଥିରେ ପ୍ରଥମ ଥର ପାଇଁ ମତାଧିକାର ପାଇଥିଲେ ) । ୧୯୨୮ରେ ଟୋରି ସରକାର ନାରୀମାନଙ୍କ ସର୍ବନିମ୍ନ ବୟସ ୨୧ ବର୍ଷକୁ କମାଇ ଦେଇଥିଲେ । ୧୯୪୮ ରେ ଶ୍ରମିକ ସରକାର ଜଣକର ଦୋହରା ମତଦାନ ବ୍ୟବସ୍ଥାକୁ ଉଠାଇ ଦେଇଥିଲେ ।

ମତଦାନ ବ୍ୟବସ୍ଥା ଆଜିକାଲି "ଗୋଟିଏ ବ୍ୟକ୍ତି, ଗୋଟିଏ ଭୋଟ ଓ ଗୋଟିଏ ମୂଲ୍ୟ" ଉପରେ ପର୍ଯ୍ୟବସିତ । ଜଣେ ବ୍ୟକ୍ତି ସାବାଳକ ହୋଇଥିଲେ ଓ ତାହାର ଅନ୍ୟାନ୍ୟ ଆଇନଗତ ଅଯୋଗ୍ୟତା ନ ଥିଲେ ଏବଂ ସେ ସେହି ନିର୍ବାଚନମଣ୍ଡଳୀରେ କିଛିସମୟ ପାଇଁ ବସବାସ କରୁଥିଲେ, କେବଳ ସେହି ନିର୍ବାଚନମଣ୍ଡଳୀରେ ହିଁ ଭୋଟ ଦେଇ ପାରିବ । ମତଦାନ ଏବେ ଆଉ "ଗୋଷ୍ଠୀ", କାଉଣ୍ଟି ଓ ବୁରୋ ମଧ୍ୟରେ ସୀମିତ ନୁହେଁ; କାରଣ କାଉଣ୍ଟି ଓ ବୁରୋଗୁଡ଼ିକୁ ପ୍ରାୟ ସମାନ ଆକାର ବିଶିଷ୍ଟ ନିର୍ବାଚନମଣ୍ଡଳୀରେ ବିଭକ୍ତ କରି ଦିଆଯାଇଛି । ଏହି ବିଭାଜନ ବେଳେ ନିର୍ବାଚନମଣ୍ଡଳୀର ଆୟତନ ଓ ଲୋକସଂଖ୍ୟା ପ୍ରତି ଦୃଷ୍ଟି ଦିଆ ଯାଇଥାଏ । ଅବଶ୍ୟ ୱେଲସ୍ ଓ ସ୍କଟଲଣ୍ଡ ପରି ସ୍ୱଳ୍ପ ଜନବହୁଳ ଅଞ୍ଚଳମାନଙ୍କରେ ଜନସଂଖ୍ୟା କମ୍ ଥାଏ । ୧୯୪୮ ରେ ନିର୍ବାଚନମଣ୍ଡଳୀମାନଙ୍କରେ ଜନସଂଖ୍ୟା ସମାନ ନଥିଲା । ତଥାପି ନୀତି ଦୃଷ୍ଟିରୁ "ଆଇନ" କିମ୍ବା "ମିଡ଼ଲୋଥିଆନ" ଯେଉଁ ନିର୍ବାଚନମଣ୍ଡଳୀରେ ଭୋଟ ଦିଆଯାଉ ପଛକେ, ପ୍ରତ୍ୟେକ ଭୋଟର ମୂଲ୍ୟ ସମାନ ଅଟେ ।

ନିଶ୍ଚିତ ଭାବରେ ବ୍ୟାପକ ଓ ସମାନ ମତଦାନ ଉପରେ ଗଣତନ୍ତ୍ର ନିର୍ଭର କରେ ବୋଲି ଭାବିବା ଠିକ୍ ନୁହେଁ । ଭୋଟ ବାକ୍ସ ଦ୍ୱାରା ଜନମତ ଯେପରି ପ୍ରତିଫଳିତ ହୁଏ ତଦନୁସାରେ ସରକାରୀ କଳ ଦକ୍ଷଭାବରେ କାର୍ଯ୍ୟ କଲେ ଗଣତନ୍ତ୍ର ସଫଳ ହୁଏ । ଏପରିକି ରାଣୀ ଭିକ୍ଟୋରିଆ ତାଙ୍କ ଶାସନ କାଳର ପ୍ରଥମାର୍ଦ୍ଧରେ ଭାବୁଥିଲେ ଯେ ସରକାରଙ୍କର ସ୍ଥାୟିତ୍ୱ ତାଙ୍କ ନିଜ ସମର୍ଥନ ଉପରେ ନିର୍ଭର କରୁଥିଲା । ୧୮୪୦ ରେ ସେ ବିବାହ କଲା ପରେ ଅନୁଭବ କଲେ ଯେ ସରକାରଙ୍କ ସ୍ଥାୟିତ୍ୱ ତାଙ୍କ ଉପରେ ନିର୍ଭର ନ କରି ସମ୍ପୂର୍ଣ୍ଣ ଭାବରେ କମନ୍ସ ସଭାର ସଂଖ୍ୟାଗରିଷ୍ଠତା ଉପରେ ନିର୍ଭର କରୁଥିଲା । ଏହା ସତ୍ତ୍ୱେ ତାଙ୍କ ଶାସନକାଳର ଶେଷ ଆଡ଼କୁ ସେ ଟୋରିମାନଙ୍କ ସପକ୍ଷରେ ନିଜ ପ୍ରଭାବ ପକାଇଥିଲେ । କିନ୍ତୁ ଗ୍ଲାଡ୍‌ଷ୍ଟୋନଙ୍କୁ ସେ ଘୃଣା ଓ ଅବିଶ୍ୱାସ କରୁଥିଲେ ବି ଗ୍ଲାଡ଼ଷ୍ଟୋନଙ୍କ ନେତୃତ୍ୱରେ ଉଦାରବାଦୀମାନଙ୍କର ସଂଖ୍ୟାଗରିଷ୍ଠତା ଥିବାରୁ ସେ ଗ୍ଲାଡ଼ଷ୍ଟୋନଙ୍କୁ ପ୍ରଧାନମନ୍ତ୍ରୀ ନିଯୁକ୍ତ କରିଥିଲେ । ଏ କଥା ଏଠାରେ ସ୍ମରଣ ରଖିବାକୁ ପଡ଼ିବ ଯେ ଲର୍ଡ଼ ସଭା ସଂସଦର ଏକ ଅଙ୍ଗ ଥିଲା ଓ ଏବେ ମଧ୍ୟ ଅଛି । ରାଣୀ ଭିକ୍ଟୋରିଆଙ୍କ ଶାସନ କାଳ ଆରମ୍ଭରେ ଲର୍ଡ଼ ସଭା ସରକାର ପରିବର୍ତ୍ତନ କରିବାର କ୍ଷମତା ହରାଇଥିଲା । ବର୍ତ୍ତମାନର ବ୍ୟବସ୍ଥା ଅନୁସାରେ କୌଣସି ସାଧାରଣ

ବିଧେୟକକୁ ଏହା ଏକ ବର୍ଷରୁ ଅଧିକ କାଳ ଅଟକାଇ ପାରିବ ନାହିଁ । ଏହାର ପରିଣତି ସ୍ୱରୂପ କୌଣସି ସରକାର କମନ୍ସ ସଭାରେ ସଂଖ୍ୟାଗରିଷ୍ଠତା ହରାଇଲେ ଏହା କ୍ଷମତାରୁ ଓହରି ଯାଇଥାଏ । ୧୯୫୧ରେ ଅଟଲୀ ଓ ୧୯୬୪ରେ ସାର୍ ଆଲେକ୍ ଡଗ୍ଲାସ ହ୍ୟୁମ୍ ଏଥିପାଇଁ କ୍ଷମତାରୁ ଓହରି ଯାଇଥିଲେ ।

କେବଳ ଏହି ବୈଶିଷ୍ଟ୍ୟଗୁଡ଼ିକ ଯୋଗୁ ବ୍ରିଟେନରେ ପ୍ରକୃତ ଗଣତନ୍ତ୍ର ପ୍ରତିଷ୍ଠା ହୋଇ ନାହିଁ । ବ୍ୟାଖ୍ୟା କରିବା ଅପେକ୍ଷା ଏଗୁଡ଼ିକର ଗୁରୁତ୍ୱ ସହଜରେ ଉପଲବ୍ଧି କରି-ହୋଇଥାଏ । କିନ୍ତୁ ସ୍ୱାଧୀନ ଚିନ୍ତାଧାରା ସହିତ ଏଗୁଡ଼ିକର ସମ୍ବନ୍ଧ ଅଛି । ନିଶ୍ଚିତଭାବରେ ଏଗୁଡ଼ିକର ଗୁରୁତ୍ୱ ମଧ୍ୟ ଅଛି । ସବୁ ବ୍ୟବସ୍ଥାରେ ମଧ୍ୟ ସଚ୍ଚୋଟତା ପରିଦୃଷ୍ଟ ହୋଇଥାଏ । ଯେଉଁ ବ୍ୟକ୍ତି ମତଦାନ କରିବାକୁ ଉପଯୁକ୍ତ, ତା'ର ନାମ ନିର୍ବାଚକ ତାଲିକାରେ ଉଠିଥାଏ । ଯଦି ଭୁଲବଶତଃ ତା'ର ନାମ ତାଲିକାରେ ନ ଥାଏ, ତେବେ ସେ ନିଜ ନାମକୁ ତାଲିକାରେ ଅନ୍ତର୍ଭୁକ୍ତ କରାଇପାରିବ । ତା'ର ନାମ ତାଲିକାରେ ଥିଲେ, ସେ ଗୁପ୍ତଭାବରେ ନିଜ ମତ ବ୍ୟକ୍ତ କରେ । କେବଳ ଆନୁଷ୍ଠାନିକ ଭାବରେ ମକଦ୍ଦମା ହେଲେ ନ୍ୟାୟାଧୀଶଙ୍କ ବ୍ୟତୀତ ଅନ୍ୟ କେହି ତାହାର ମତଦାନ ବିଷୟ ଜାଣିପାରେ ନାହିଁ । ସେ ଯେଉଁ ପକ୍ଷକୁ ସମର୍ଥନ କରିଥିବ, ତାହା ମତ ନିଶ୍ଚିତ ଭାବରେ ତଦନୁସାରେ ଗଣନା କରାଯାଇଥାଏ । ପୁନଶ୍ଚ ବିଶ୍ୱାସଯୋଗ୍ୟ ପ୍ରଣାଳୀରେ ତାର ମତକୁ ଗ୍ରହଣ କରାଯାଉଛି ବୋଲି ତାର ନିଶ୍ଚିତ ଧାରଣା ଥାଏ । ଏହି ବ୍ୟବସ୍ଥାଗୁଡ଼ିକ ସବୁ ଦେଶରେ ସମାନ ଭାବରେ କାର୍ଯ୍ୟକାରୀ ହୁଏ ବୋଲି କୁହାଯାଇ ପାରିବ ନାହିଁ ।

ନିର୍ବାଚକର ମଧ୍ୟ ବାଛିବାର ଅଧିକାର ଥାଏ । ବାସ୍ତବ କ୍ଷେତ୍ରରେ, ଶ୍ରମିକ ଦଳ ଓ ଜାତି ଦଳ ମଧ୍ୟରୁ ଗୋଟିଏ ଦଳକୁ ସେ ସମର୍ଥନ କରେ । ବେଳେବେଳେ ଉଦାରବାଦୀ, କମ୍ୟୁନିଷ୍ଟ ବା ସ୍କଟିଶ ଜାତୀୟତାବାଦୀ ଦଳ କିମ୍ବା ସ୍ୱାଧୀନ ପ୍ରାର୍ଥୀମାନଙ୍କ ମଧ୍ୟରୁ ଜଣକୁ ବାଛିବାକୁ ପଡ଼ିଥାଏ । ଯେ କୌଣସି ଲୋକ ଯେ କୌଣସି ଦଳ ଗଠନ କରିପାରେ ଓ ଯେ କୌଣସି ବ୍ୟକ୍ତି ସ୍ୱାଧୀନ ପ୍ରାର୍ଥୀ ହୋଇପାରେ । ପ୍ରକୃତ କ୍ଷେତ୍ରରେ ଯେଉଁ ଦଳର ସରକାର ଗଠନ କରିବାର ବେଶୀ ସମ୍ଭାବନା ଥିବ, ନିର୍ବାଚକମାନେ ସେହି ଦଳକୁ ସମର୍ଥନ କରିଥାନ୍ତି ଓ ଏହା ଫଳରେ କ୍ଷୁଦ୍ର ଦଳ ଓ ସ୍ୱାଧୀନ ପ୍ରାର୍ଥୀମାନେ ପଛରେ ପଡ଼ି ଯାଇଥାନ୍ତି । ପୁନଶ୍ଚ, କେତେକ ନିର୍ବାଚନମଣ୍ଡଳୀକୁ "ନିରାପଦ ସ୍ଥାନ" ରୂପେ ଗଣନା କରାଯାଇଥାଏ । ସେହି ନିର୍ବାଚନ-ମଣ୍ଡଳୀମାନଙ୍କରୁ ସର୍ବଦା ଜାତି ପ୍ରତିନିଧି କିମ୍ବା ଶ୍ରମିକ ପ୍ରତିନିଧି ନିର୍ବାଚିତ ହୋଇଥାନ୍ତି । ଗୋଟିଏ ଦଳ ପକ୍ଷରେ ନିରାପଦ ଥିବା ନିର୍ବାଚନମଣ୍ଡଳୀରେ ଅନ୍ୟ ଦଳର ପ୍ରାର୍ଥୀ ସଂଖ୍ୟାଲଘିଷ୍ଠ ଲୋକମାନଙ୍କ ସମର୍ଥନ ପାଇଁ ବୃଥାରେ ପ୍ରତିଯୋଗିତା କରିଥାଏ । ସେପରିସ୍ଥଳେ ଅନ୍ୟ ନିର୍ବାଚନମଣ୍ଡଳୀମାନଙ୍କରେ ତା'ର ରାଜନୈତିକ ବନ୍ଧୁମାନେ ସଂଖ୍ୟାଗରିଷ୍ଠ ସମର୍ଥନ ପାଇଁ ନିର୍ବାଚିତ ହୋଇ ଆସିବେ ବୋଲି ଭାବି ସେ ସାନ୍ତ୍ୱନା ପାଇଥାଏ । ଏହି ଅସୁବିଧା ସତ୍ତ୍ୱେ

ନିର୍ବାଚକ ସ୍ୱାଧୀନ ଭାବରେ ନିଜ ମତ ବ୍ୟକ୍ତ କରିଥାଏ । ଦଣ୍ଡିତ ହେବାର କୌଣସି ଭୟ ବା ପ୍ରଲୋଭନର ଆଶା ନ ରଖି ସେ ସରକାରଙ୍କ ସପକ୍ଷରେ କିମ୍ବା ବିପକ୍ଷରେ ମତଦାନ କରିଥାଏ । ବ୍ରିଟେନ ଇଚ୍ଛା କଲେ କମ୍ୟୁନିଷ୍ଟ କିମ୍ବା ଫାସିଷ୍ଟ ରାଷ୍ଟ୍ରରେ ପରିଣତ ହୋଇପାରେ; କିନ୍ତୁ କମ୍ୟୁନିଷ୍ଟ କିମ୍ବା ଫାସିଷ୍ଟ ଦେଶଗୁଡ଼ିକ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ ହୋଇପାରିବେ ନାହିଁ । ସେହିପରି ରାଷ୍ଟ୍ରରେ ଜଣେ ଉଦାର ଗଣତନ୍ତ୍ରବାଦୀ ବ୍ୟକ୍ତି ନିର୍ବାଚନରେ ପ୍ରାର୍ଥୀ ହୋଇପାରିବ ନାହିଁ, ଅଥବା ଜଣେ ପ୍ରାର୍ଥୀ ପ୍ରଚଳିତ ଚିନ୍ତାଧାରାର ବିରୋଧ କଲେ, ତାଙ୍କୁ କେହି ସାହସକରି ସମର୍ଥନ କରି ପାରନ୍ତି ନାହିଁ ।

କେବଳ ଏତିକି ନୁହେଁ । ନିର୍ବାଚନରେ ପ୍ରାର୍ଥୀ ବାଛିବାରେ ସ୍ୱାଧୀନତା ନ ଥିଲେ, ନିର୍ବାଚନର କୌଣସି ମୂଲ୍ୟ ନ ଥାଏ । ବ୍ରିଟେନରେ ଜଣେ ବ୍ୟକ୍ତି ନିଜ ଇଚ୍ଛାନୁସାରେ ଯେ କୌଣସି ବିଷୟ ଶୁଣିପାରେ ବା ପ୍ରକାଶ କରିପାରେ । ନିଜ ଇଚ୍ଛାନୁସାରେ ସେ ଯେ କୌଣସି ପୁସ୍ତକ ପଢ଼ିପାରେ କିମ୍ବା ଯେ କୌଣସି ବିଷୟରେ ଲେଖିପାରେ । ସେ ଯେ କୌଣସି ଲେଖା ପ୍ରକାଶ କରିପାରେ କିମ୍ବା ଯେ କୌଣସି ଖବରକାଗଜ କିମ୍ବା ପତ୍ରପତ୍ରିକା ମଗାଇପାରେ । ସେ ବିଭିନ୍ନ ଧ୍ୱନି ଥିବା ପ୍ରଚାରପତ୍ର ବାଣ୍ଟି ପାରେ କିମ୍ବା ସେହି ପ୍ରଚାରପତ୍ରକୁ ଝରକାଗୁଡ଼ିକରେ ଲଟକାଇ ଦେଇପାରେ । ନିଜ ମତାମତକୁ ପ୍ରକାଶ କରିବା ପାଇଁ ସେ ସର୍ବସାଧାରଣ ସଭା କରିପାରେ କିମ୍ବା ସେପରି ସଭାମାନଙ୍କରେ ଯୋଗ ଦେଇପାରେ । ଗଣ୍ଡଗୋଳ ହେବାର ଆଶଙ୍କା ଥିଲେ ସେଥିରୁ ରକ୍ଷା ପାଇବା ପାଇଁ ସେ ପୁଲିସ ସାହାଯ୍ୟ ନେଇପାରେ । ବିଭିନ୍ନ ମତାମତ ପ୍ରକାଶ ପାଉଥିବା ସଭାଗୁଡ଼ିକରେ ସେ ଯୋଗ ଦେଇପାରେ ଓ ବକ୍ତାମାନଙ୍କୁ ବିଭିନ୍ନ ପ୍ରଶ୍ନ ପଚାରି ହଇରାଣ କରିପାରେ । କ୍ଲବ, ବସ୍, ଟ୍ରାମ, ରେଳ, ଚା' ଦୋକାନ, ରାସ୍ତା କିମ୍ବା ପାର୍କ ଏପରି ସର୍ବସାଧାରଣ ସ୍ଥାନରେ ବିଭିନ୍ନ ବିଷୟରେ ମୁକ୍ତତର୍କ କରିପାରେ । ସଂକ୍ଷେପରେ କହିଲେ ସେ ଜଣେ ସ୍ୱାଧୀନ ବ୍ୟକ୍ତି । ମହାସନନ୍ଦରେ ବର୍ଣ୍ଣିତ ହୋଇଥିବା ବ୍ୟକ୍ତିଗତ ସ୍ୱାଧୀନତା ସଙ୍ଗେ ସଙ୍ଗେ ସେ ରାଜନୈତିକ ସ୍ୱାଧୀନତା ମଧ୍ୟ ଉପଭୋଗ କରିଥାଏ । ଏପରି ପରିସ୍ଥିତିରେ ହୁଏତ କମ୍ୟୁନିଷ୍ଟ ମତବାଦୀ ବା ଫାସିଷ୍ଟ ମତବାଦୀ ସମ୍ବାଦପତ୍ର ଥାଇ-ପାରେ, କମ୍ୟୁନିଷ୍ଟ ପୁସ୍ତକ ଓ ଫାସିଷ୍ଟ ପୁସ୍ତକ ଥାଇପାରେ, କମ୍ୟୁନିଷ୍ଟ ସଭା ଓ ଫାସିଷ୍ଟ ସଭା ମଧ୍ୟ କରାଯାଇପାରେ, କମ୍ୟୁନିଷ୍ଟ ସଂଗଠନ ଓ ଫାସିଷ୍ଟ ସଂଗଠନ ଥାଇପାରେ ଏବଂ କମ୍ୟୁନିଷ୍ଟ ଶୋଭାଯାତ୍ରା ଓ ଫାସିଷ୍ଟ ଶୋଭାଯାତ୍ରା ମଧ୍ୟ କରାଯାଇପାରେ । କିନ୍ତୁ କମ୍ୟୁନିଷ୍ଟ ଓ ଫାସିଷ୍ଟ ଦେଶମାନଙ୍କରେ ଉଦାରବାଦୀ ଗଣତନ୍ତ୍ରକୁ ସମର୍ଥନ କରି କୌଣସି ଖବରକାଗଜ, ପୁସ୍ତକ, ସଭା, ସଂଗଠନ କିମ୍ବା ଶୋଭାଯାତ୍ରା ପ୍ରଭୃତି ଦେଖାଯାଇ ନ ଥାଏ ।

ଉପରୋକ୍ତ ବର୍ଣ୍ଣନା ଦ୍ୱାରା ସମସ୍ତ ବିଷୟ ପ୍ରକାଶ କରାଯାଇପାରୁ ନାହିଁ । ଇଂଲଣ୍ଡ ଅଧିବାସୀ କେବଳ ସ୍ୱାଧୀନ ନୁହେଁ; ସେ ତାର ସ୍ୱାଧୀନତାକୁ ବହୁ ଭାବରେ ଉପଭୋଗ କରି-ଥାଏ ବୋଲି କୁହାଯାଇପାରେ । ରାଜନୀତି କ୍ଷେତ୍ରରେ ମଧ୍ୟ ଏହାର ସତ୍ୟତା ପରିଲକ୍ଷିତ

ହୋଇଥାଏ । ଏଠାରେ ସ୍ୱାଧୀନତାର ଚେର ଅତି ସୁଦୃଢ଼ । ଏହା ଫଳରେ ସ୍ୱାଧୀନ ଭାବରେ କୌଣସି ବିଷୟ ଅନୁସନ୍ଧାନ କରିବାର ପରମ୍ପରା ସୃଷ୍ଟି ହୋଇଛି ଏବଂ ଯେ କୌଣସି ଚିନ୍ତାଧାରାର ବିକାଶ ଓ ପ୍ରସାର ମଧ୍ୟ ସମ୍ଭବପର ହୋଇଛି । ଇଂଲଣ୍ଡରେ ଲୋକମାନଙ୍କ ମଧ୍ୟରେ ଖୁବ୍ କମ୍ ଲୋକଙ୍କର ମୌଳିକ ଚିନ୍ତାଧାରା ଥାଏ । ଲୋକମାନେ ଗୋଟିଏ ଭାଷା କହନ୍ତି, ଗୋଟିଏ ଧର୍ମ ଅନୁସରଣ କରନ୍ତି; ସେମାନେ ସମାନ ପୋଷାକ ପରିଧାନ କରନ୍ତି, ଓ ସମାନ ସାମାଜିକ ପରମ୍ପରା ଅନୁସରଣ କରିଥାନ୍ତି, ସମାନ ଖବରକାଗଜ ଓ ପୁସ୍ତକ ପାଠ କରନ୍ତି ଏବଂ ସାଧାରଣତଃ ସେମାନଙ୍କର ପ୍ରତିବେଶୀମାନଙ୍କ ପରି ସମାନ ପନ୍ଥା ଅନୁସରଣ କରିଥାନ୍ତି । ବାସ୍ତବିକ, ଇଂରେଜମାନେ ତାଙ୍କ ପୂର୍ବପୁରୁଷମାନଙ୍କଠାରୁ ଅନୁକରଣ କରିଥିବା ସାମାଜିକ ପରମ୍ପରାରେ କୌଣସି ବିଶେଷ ପରିବର୍ତ୍ତନ ବା ବିକାଶ ନ କରି ତାଙ୍କ ସନ୍ତାନ-ସନ୍ତତିମାନଙ୍କୁ ତାହା ହସ୍ତାନ୍ତର କରିଥାନ୍ତି । ଆର୍ଥନୀତିକ ସ୍ଥିତିରୁ ଶ୍ରେଣୀଗତ ଚିନ୍ତାଧାରା ଆସିବା କଥା ସତ୍ୟ । ସଂପତ୍ତି ରଖିଥିବା ବ୍ୟକ୍ତି ସଂପତ୍ତିର ସୁରକ୍ଷା ବ୍ୟବସ୍ଥାକୁ ଏକ ମୌଳିକ ରାଜନୈତିକ ଆବଶ୍ୟକତା ବୋଲି ଭାବିଥାଏ । ରପ୍ତାନି ପାଇଁ ଜିନିଷପତ୍ର ଉତ୍ପାଦନ ହେଲେ ଅବାଧ ବାଣିଜ୍ୟର ଉପକାରିତା ହୃଦୟଙ୍ଗମ ହୋଇଥାଏ; ଘରୋଇ ବ୍ୟବହାର ପାଇଁ ଜିନିଷ-ପତ୍ର ଉତ୍ପାଦନ କରାଗଲେ ଘରୋଇ ଶିଳ୍ପଗୁଡ଼ିକର "ସଂରକ୍ଷଣ" ସପକ୍ଷରେ ଯୁକ୍ତି କରାଯାଇ-ଥାଏ । ଯେଉଁମାନେ ବିଶ୍ୱବିଦ୍ୟାଳୟ ଅଧ୍ୟାପକ କିମ୍ବା ସ୍କୁଲ ଶିକ୍ଷକ ହୋଇଥିବେ, ସେମାନେ ଶିକ୍ଷାର ଗୁରୁତ୍ୱ ବିଷୟ ଅନୁଭବ କରିଥାନ୍ତି । ତାଲିମପ୍ରାପ୍ତ ଶ୍ରମିକମାନେ ସଂପୂର୍ଣ୍ଣ ନିଯୁକ୍ତି ନୀତିକୁ ସମର୍ଥନ କରନ୍ତି ଓ ବେଳେବେଳେ ଶିଳ୍ପଗୁଡ଼ିକର ଜାତୀୟକରଣ ସପକ୍ଷରେ ମତବ୍ୟକ୍ତ କରିଥାନ୍ତି । ସ୍ୱଳ୍ପ-ବେତନଭୋଗୀ ତାଲିମ ପାଇ ନ ଥିବା କିମ୍ବା ଅର୍ଦ୍ଧ-ତାଲିମପ୍ରାପ୍ତ ଶ୍ରମିକମାନେ ତାଲିମପ୍ରାପ୍ତ ଶ୍ରମିକମାନଙ୍କୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ର ନିଶ୍ଚିତଭାବରେ ସାମାଜିକ ନିରାପତ୍ତା ବ୍ୟବସ୍ଥା କରୁ ବୋଲି ମତ ଦେଇଥାନ୍ତି । ଅପର ପକ୍ଷରେ କେବଳ ଆର୍ଥନୀତିକ ସ୍ୱାର୍ଥକୁ ହିଁ ବିଚାରକୁ ନେବା ଠିକ୍ ନୁହେଁ; କାରଣ ବ୍ରିଟିଶ ଶ୍ରମିକ, ଏପରିକି ବ୍ରିଟିଶ ମାଲିକ କେବଳ ସଂପୂର୍ଣ୍ଣରୂପେ ଅର୍ଥନୈତିକ ସମସ୍ୟାକୁ ବିଚାରକରି କାର୍ଯ୍ୟ କରି ନଥାଏ । ଏ କଥା ସର୍ବବାଦୀସମ୍ମତ ଯେ ତା'ର ଧର୍ମନୀତି ଏବଂ ପାରଂପାରିକ ଚିନ୍ତାଧାରା, ବନ୍ଧୁମାନଙ୍କ ସହିତ ହୋଇଥିବା ଆଲୋଚନା ଓ ପୁସ୍ତକପଠନରୁ ଲବ୍ଧ ଚିନ୍ତାଧାରା ଏବଂ ନିଜ କାର୍ଯ୍ୟକାରୀ ଚିନ୍ତାଧାରାଗୁଡ଼ିକ ବି ଅଧିକାଂଶ ସ୍ଥଳରେ ତା'ର ଅର୍ଥନୈତିକ ସ୍ୱାର୍ଥର ବିରୁଦ୍ଧାଚରଣ କରି-ଥାଏ । ଏଠାରେ ଗୋଟିଏ ଉଦାହରଣ ଦିଆଯାଇପାରେ । ଯେଉଁମାନେ କ୍ରୀତଦାସ ବ୍ୟବସାୟ ବିରୁଦ୍ଧରେ ଆନ୍ଦୋଳନ କରି ଶେଷରେ ତାହାକୁ ଉଠାଇ ଦେଇଥିଲେ, ସେମାନେ ଏହା ଦ୍ୱାରା ବ୍ୟକ୍ତିଗତ ଭାବରେ କିଛି ଲାଭ ପାଇ ନ ଥିଲେ; ସେମାନେ କେବଳ ଏହାକୁ ଏକ ସାମାଜିକ କର୍ତ୍ତବ୍ୟ ବୋଲି ମନେକରି ଆନନ୍ଦଲାଭ କରିଥିଲେ । ଖ୍ରୀଷ୍ଟଧର୍ମରେ ବିବାହ ଅର୍ଥନୈତିକ ସ୍ୱାର୍ଥସିଦ୍ଧିରୁ ଉଦ୍ଭୂତ ବୋଲି କହିବା ଅର୍ଥହୀନ ଅଟେ; ଏପରିକି କମ୍ୟୁନିଷ୍ଟମାନେ ମଧ୍ୟ ଏହାକୁ ମିଥ୍ୟା ବୋଲି କହିଥାନ୍ତି; କାରଣ ସାମ୍ୟବାଦ ଆସିଲେ ମଧ୍ୟବିତ୍ତ ଶ୍ରେଣୀ "ଧ୍ୱଂସ" ପାଇଥାନ୍ତି ।

ଅବଶ୍ୟ ଏଠାରେ ଅନ୍ୟାନ୍ୟ କେତେକ ବିଷୟ ବିଚାର କରିବା କଥା । ମନୁଷ୍ୟର ଜୀବନ-ଧାରଣର ମାନ ଅତି ନିମ୍ନ ସ୍ତରରେ ଥିଲେ ଓ କେବଳ ଧନିକ ଗୋଷ୍ଠୀ ଶିକ୍ଷା ପାଇବାର ସୁଯୋଗ ପାଉଥିଲେ, ଚିନ୍ତା କ୍ଷେତ୍ରରେ ସ୍ୱାଧୀନତାର କିଛି ମୂଲ୍ୟ ନ ଥାଏ । ଏପରି ସ୍ଥଳେ ଚିନ୍ତାର ବିକାଶ ପାଇଁ କୌଣସି ସୁଯୋଗ ମିଳେ ନାହିଁ । ସବୁବିଧ ସ୍ୱାଧୀନତା ମଧ୍ୟରେ ଚିନ୍ତାଗତ ସ୍ୱାଧୀନତା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଶହେ ବର୍ଷ ତଳେ ବ୍ରିଟେନର ସାଧାରଣ ଲୋକମାନେ ଯେଉଁ ଅବସ୍ଥାରେ ଥିଲେ, ଆଜିକାଲି ମଧ୍ୟ ପୃଥିବୀର ବହୁ ଅଞ୍ଚଳରେ ଲୋକମାନେ ସେହି ଅବସ୍ଥାରେ ଅଛନ୍ତି । ଏବେ ମଧ୍ୟ ଇଂଲଣ୍ଡରେ ଜନସାଧାରଣଙ୍କୁ ଯେଉଁ ଶିକ୍ଷା ଦିଆଯାଉଛି ତାହା ଏତେ ନିକୃଷ୍ଟ ଧରଣର ଯେ ଏହା ଫଳରେ ସେମାନଙ୍କ ଜ୍ଞାନ ଯଥେଷ୍ଟ ମାତ୍ରାରେ ବୃଦ୍ଧି ପାଉ ନାହିଁ । ଅପରାଧ ପ୍ରବୃତ୍ତି, ନାରୀମାନଙ୍କ ଲେଖା, ଉପନ୍ୟାସ, ଫୁଟବଲ୍ ଖେଳ କିମ୍ବା ହଲିଉଡ୍ ସିନେମା ସମ୍ବନ୍ଧରେ ସେମାନଙ୍କର ଜ୍ଞାନ ଥାଇପାରେ । କିନ୍ତୁ ସେମାନେ ଚିନ୍ତା କରିବାକୁ ଶିକ୍ଷା ପାଇ ନ ଥିବାରୁ, ସେମାନଙ୍କ ପାଇଁ ଚିନ୍ତା କ୍ଷେତ୍ରରେ ସ୍ୱାଧୀନତାର ବିଶେଷ ମୂଲ୍ୟ ନାହିଁ ।

ଏହି ସମସ୍ତ ପ୍ରତିବନ୍ଧକ ସତ୍ତ୍ୱେ ଆମ୍ଭମାନଙ୍କ ପରମ୍ପରାରେ ନିହିତ ଥିବା ଚିନ୍ତା କ୍ଷେତ୍ରରେ ସ୍ୱାଧୀନତା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଅଟେ । ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଅନେକ ସମୟରେ ପାରମ୍ପରିକ ଚିନ୍ତାଧାରା ଗ୍ରହଣ କରିଥାଉଁ ଓ ଯେ କୌଣସି ସମୟରେ ତାହାକୁ ପରିତ୍ୟାଗ କରିପାରୁ । ବେଳେବେଳେ ସଂଖ୍ୟା ଲଘିଷ୍ଠ ଗୋଷ୍ଠୀ ଏହା କରିଥାନ୍ତି । ବିଦ୍ୟାଳୟମାନଙ୍କରେ ପଢ଼ାଯାଉଥିବା ଓ ପ୍ରତ୍ୟାଖ୍ୟାନ କରାଯାଇ ନଥିବା କେତେକ ଚିନ୍ତାଧାରାକୁ ସହଜରେ ଗ୍ରହଣ କରାଯାଇପାରେ ନାହିଁ । ଏହାର କାରଣ ହେଉଛି ଯେ ସମସ୍ତ ଚିନ୍ତାଧାରା-ଗୁଡ଼ିକୁ କଷଟିପଥର ମଧ୍ୟ ଦେଇ ଯିବାକୁ ହୋଇଥାଏ । ଗ୍ରୀକ୍‌ମାନେ ସ୍ୱାଧୀନ ଥିବାରୁ ଗ୍ରୀସ୍ ଦେଶର ସୁଖ୍ୟାତି ଥିଲା । ଗ୍ରୀକ୍ ଚିନ୍ତାଧାରାର ପ୍ରଭାବ ଏକ କ୍ଷୁଦ୍ର ଶିକ୍ଷିତ ସାଧାରଣ ଗୋଷ୍ଠୀଙ୍କ ଉପରେ ପଡ଼ିବା ଫଳରେ ଓ ଏହି ଗୋଷ୍ଠୀଙ୍କ ସ୍ୱାଧୀନ ଚିନ୍ତା ଫଳରେ ମଧ୍ୟ ଯୁଗରେ ଜ୍ଞାନର ପୁନରୁତ୍‌ଥାନ ହୋଇଥିଲା । ଚିନ୍ତା କରିବାକୁ ଶିକ୍ଷା ଲାଭ କରିଥିବା ଏକ କ୍ଷୁଦ୍ର ମଧ୍ୟବିତ୍ତ ଶ୍ରେଣୀର ସୃଷ୍ଟି ଫଳରେ ଏଲିଜାବେଥ ଯୁଗର ସୁଖ୍ୟାତି ବୃଦ୍ଧି ପାଇଥିଲା । ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡ ଗୋଟିଏ ସ୍ୱାଧୀନ ଦେଶ ଥିଲା ବୋଲି ଖ୍ୟାତିସମ୍ପନ୍ନ ଯଶସ୍ୱୀ ପୁରୁଷ ଓ ସ୍ତ୍ରୀ ସୃଷ୍ଟି କରିପାରିଥିଲା । ଆଧୁନିକ ଅସୁବିଧାଜନକ ପରିସ୍ଥିତିରେ ଯେ କୌଣସି ବ୍ରିଟିଶ ନାଗରିକ ହତୋତ୍ସାହ ହେବା ଉଚିତ ନୁହେଁ । ଇଂଲଣ୍ଡରେ ବାସ କରୁଥିବା ନାଗରିକମାନଙ୍କ ତୁଳନାରେ ସମୁଦ୍ରପାରି ଦେଶମାନଙ୍କରେ ବାସ କରୁଥିବା ବ୍ରିଟିଶ ନାଗରିକମାନେ ଏହି ହତୋତ୍ସାହ ଭାବକୁ ବେଶୀ ଲକ୍ଷ୍ୟ କରିଛନ୍ତି । ବିଶ୍ୱରେ ଥିବା ବିଭିନ୍ନ ଭାଷାମାନଙ୍କ ମଧ୍ୟରୁ ଇଂରାଜୀ ଗୋଟିଏ ଭାଷା, ତଥାପି ଅଧିକାଂଶ ନୂତନ ଚିନ୍ତାଧାରା ଇଂରାଜୀ ଭାଷା ମାଧ୍ୟମରେ ବିକାଶ ଲାଭ କରିଥାଏ । ବ୍ରିଟେନରେ ବସବାସ କରୁଥିବା ଲୋକମାନେ ଇଂରାଜୀ ଭାଷା କହୁଥିବା ଲୋକମାନଙ୍କ ମଧ୍ୟରୁ ଗୋଟିଏ ଗୋଷ୍ଠୀ, ତଥାପି ଇଂରାଜୀ ଭାଷାରେ ପ୍ରକାଶିତ ଅଧିକାଂଶ ଚିନ୍ତାଧାରା ବ୍ରିଟେନରୁ ଆସିଥାଏ ।

ଅବଶ୍ୟ ବିଶ୍ୱର ଅନ୍ୟାନ୍ୟ ସ୍ୱାଧୀନ ଦେଶମାନଙ୍କର ମଧ୍ୟ ଏଥିରେ ଅବଦାନ ରହିଛି । କିନ୍ତୁ "ବ୍ରିଟେନରେ ପ୍ରସ୍ତୁତ" ଚିନ୍ତାଧାରାର ଗୁଣାତ୍ମକ ଉତ୍କର୍ଷ ଥାଏ ଓ ଏହା ସୁଦୀର୍ଘ ସ୍ୱାଧୀନ ପରମ୍ପରାର ପ୍ରତିଫଳନ ଅଟେ ।

ବ୍ରିଟେନର ଶକ୍ତି ବୃଦ୍ଧିରେ ଗଣତନ୍ତ୍ର ସାହାଯ୍ୟ କରିଛି । ତଥାପି ଆମକୁ ଚିନ୍ତାରାଜ୍ୟରେ ସ୍ୱାଧୀନତାର ସମ୍ପୂର୍ଣ୍ଣ ବିନିଯୋଗ କରିବାକୁ ପଡ଼ିବ, କାରଣ ଏହି ପୁସ୍ତକର ଲେଖକଙ୍କ ସହିତ ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ସାକ୍ଷରତାର ତୃତୀୟ କିମ୍ବା ଚତୁର୍ଥ ପୁରୁଷରେ ମାତ୍ର ପହଞ୍ଚିଅଛୁ । କେବଳ ରାଜନୈତିକ ବିବାଦୀୟ ବିଷୟଗୁଡ଼ିକ ଏହି ସ୍ୱାଧୀନତା ଦ୍ୱାରା ପ୍ରଭାବିତ ହୋଇଛି ବୋଲି କୁହାଯାଇ ପାରିବ ନାହିଁ । ପଦ୍ୟ ଓ ଗଦ୍ୟ, ସାହିତ୍ୟ, କଳା ଓ ସ୍ଥାପତ୍ୟ, ସଙ୍ଗୀତ ଓ ନାଟକ ଆଦି ସୂକ୍ଷ୍ମ କଳାଗୁଡ଼ିକ ବିଶେଷ ଭାବରେ ଏହି ସ୍ୱାଧୀନଚିନ୍ତା ଦ୍ୱାରା ପ୍ରଭାବିତ ।

**ସଂଖ୍ୟାଗରିଷ୍ଠତାର ସ୍ୱେଚ୍ଛାଚାର ( The Tyranny of the Majority ) :—**

ମତାଧିକାର ପ୍ରାପ୍ତ ନିର୍ବାଚକମାନଙ୍କ ସଂଖ୍ୟାର ସମ୍ପ୍ରସାରଣ ଫଳରେ ଅଧିକ ପରିମାଣରେ ସାମାଜିକ ଓ ଅର୍ଥନୈତିକ ସମାନତା ପ୍ରତିଷ୍ଠା କରିବା ଆବଶ୍ୟକ ଓ ଅପରିହାର୍ଯ୍ୟ ହୋଇଗଲା । ପୁରୁଣା ନିର୍ବାଚକମାନଙ୍କ ପରି ନୂତନ ନିର୍ବାଚକମାନେ ମଧ୍ୟ ନିଜର ସାମାଜିକ ସ୍ଥିତିକୁ ସୁରକ୍ଷା କରିଥିଲେ । ସାଧାରଣ ଲୋକମାନେ ନିଜ ବନ୍ଧନ ବିନା ଅନ୍ୟ କିଛି ହରାଇ ନ ଥିବା କଥା ସତ୍ୟ ନୁହେଁ ; ବରଂ ସେମାନଙ୍କର କ୍ଷତି ତୁଳନାରେ ଅଧିକ ଲାଭ ହୋଇଅଛି । ସର୍ବପ୍ରଥମେ ଉଦାର ଦଳ ଓ ଏହି ଶତାବ୍ଦୀରେ ଶ୍ରମିକ ଦଳ ଉଗ୍ର ସଂସ୍କାର ପାଇଁ ଦାବୀ କରିଥିଲେ । ଜନ ସମର୍ଥନ ଲାଭ କରିବା ପାଇଁ ଟୋରି ଦଳ ମଧ୍ୟ ଏହି ନୀତି ଅନୁସରଣ କରିଥିଲା । ଗ୍ଲାଡ଼ଷ୍ଟୋନଙ୍କ ଅପେକ୍ଷା ଡିସରେଲିଙ୍କ ସୂକ୍ଷ୍ମ ରାଜନୈତିକ ଦୃଷ୍ଟିକୋଣ ଥିବାରୁ ସେ ଏହାର ଆବଶ୍ୟକତା ସ୍ପଷ୍ଟଭାବେ ଅନୁଭବ କରିଥିଲେ ।

ବିଗତ ଦୁଇ ଶତାବ୍ଦୀ ମଧ୍ୟରେ ସାମାଜିକ ଓ ଅର୍ଥନୈତିକ ପରିବର୍ତ୍ତନ ଦ୍ରୁତ ଭାବେ ଘଟିଥିବା କଥା ସତ୍ୟ ଅଟେ । ଏହା ମୁଖ୍ୟତଃ ବାଷ୍ପୀୟ କଳ, ଅନ୍ତର୍ଦହନ କଳ ଓ ସଂରକ୍ଷିତ ଥିବା କୋଇଲା ଓ ତୈଳର ଉପଯୋଗ ଫଳରେ ସମ୍ଭବପର ହୋଇଥିଲା । ବୈଜ୍ଞାନିକମାନେ ଆଣବିକ ଶକ୍ତିକୁ ନିୟନ୍ତ୍ରଣ କରିବାକୁ ଜାଣିଲେ ଓ ବିଶ୍ୱର ଜନସାଧାରଣ ନିଜକୁ ତଥା ନିଜର ରାଜନୀତିଜ୍ଞମାନଙ୍କୁ ନିୟନ୍ତ୍ରଣ କରିପାରିଲେ ଭବିଷ୍ୟତରେ ଏହି ପରିବର୍ତ୍ତନ ଆହୁରି ଦ୍ରୁତତର ହୋଇପାରେ । ଯେଉଁ ପରିବର୍ତ୍ତନମାନ ଘଟିଯାଇଛି, ତାହା ଫଳରେ ଇଂଲଣ୍ଡର ରୂପ ବଦଳି ଯାଇଛି । ଜନ ସଂଖ୍ୟା ଦ୍ରୁତଗତିରେ ବୃଦ୍ଧିପାଇଛି ଏବଂ ଲୋକମାନେ ବଡ଼ ବଡ଼ ସହରମାନଙ୍କରେ ବସତି ସ୍ଥାପନ କରିଛନ୍ତି । ଗ୍ରାମାଞ୍ଚଳ ଅପେକ୍ଷା ସହରାଞ୍ଚଳରେ ଜୀବନକୁ ଅଧିକ ନିୟନ୍ତ୍ରଣ କରିବାକୁ ହୋଇଛି ଏବଂ ସହରରେ ପରିବହନ, ଗ୍ୟାସ୍, ଜଳ, ବିଦ୍ୟୁତ ଓ ନିର୍ଦ୍ଦମା ପରି ଜନସେବା ସଂସ୍ଥାମାନ ବ୍ୟବସ୍ଥା ବିଶେଷ ଭାବରେ କରିବାକୁ ପଡ଼ୁଅଛି ।

ଆଇନକୁ କାର୍ଯ୍ୟକାରୀ କରିବା, ନିର୍ବାଚକମାନଙ୍କ ଦାବୀ ପୂରଣ କରିବା ଓ ଅର୍ଥନୈତିକ ବିକାଶ ଫଳରେ ଯେଉଁ ପରିବର୍ତ୍ତନ ଆସିଛି ତାହାର ସମ୍ମୁଖୀନ ହେବାର ଦାୟିତ୍ୱ ସଂସଦ ଠାରେ ନ୍ୟସ୍ତ ହୋଇଅଛି । ଅଷ୍ଟାଦଶ ଶତାବ୍ଦୀରେ ଗୋଟିଏ ସଂସଦର ଅବଧି ମଧ୍ୟରେ ଯେତେ ସଂଖ୍ୟାରେ ଆଇନ ପ୍ରଣୀତ ହେଉଥିଲା, ଆଜିକାଲି ସଂସଦର ଗୋଟିଏ ଅଧିବେଶନରେ ତାହାଠାରୁ ଅଧିକ ସଂଖ୍ୟକ ଆଇନ ପ୍ରଣୀତ ହେଉଅଛି । ପୂର୍ବର ମନ୍ତ୍ରଣାଳୟଗୁଡ଼ିକ ସହିତ ସ୍ୱାସ୍ଥ୍ୟ, ସ୍ୱାୟତ୍ତ ଶାସନ, ବାୟୁ, କୃଷି, ଶିକ୍ଷା, ଶ୍ରମ, ଖାଦ୍ୟ, ଯୋଗାଣ ପ୍ରଭୃତି ନୂତନ ମନ୍ତ୍ରଣାଳୟଗୁଡ଼ିକ ଯୋଗ କରାଯାଇଅଛି ।

ଆଇନର ପରିସର ବୃଦ୍ଧି ପାଇଥିବାରୁ ଆଇନ ଓ ସ୍ୱାଧୀନତା ମଧ୍ୟରେ ଥିବା ସମ୍ବନ୍ଧ ଏକ ନୂତନ ସମସ୍ୟା ରୂପେ ଦେଖାଦେଇଛି । ଆଇନ ବିନା ସ୍ୱାଧୀନତା ଅସମ୍ଭବ; କାରଣ ପ୍ରତ୍ୟେକ ନିଜ ଇଚ୍ଛାନୁସାରେ କାର୍ଯ୍ୟକରିବାର ସ୍ୱାଧୀନତା ପାଇବା ଫଳରେ ଜଣେ ନିଜର ଇଚ୍ଛାନୁସାରେ କିଛି କାର୍ଯ୍ୟ କରିପାରେ ନାହିଁ । ଉଦାହରଣସ୍ୱରୂପ, ଆଇନର ବ୍ୟବସ୍ଥା-ଅନୁସାରେ ରାଜପଥରେ ଯିବାରେ କୌଣସି ଅସୁବିଧା ନ ଥିବାରୁ, କୌଣସି ଆକ୍ରମଣର ଭୟ ନ ଥିବାରୁ, ପଇସାପତ୍ର ଦେବାନେବା ଓ ବିକିର ବ୍ୟବସ୍ଥା କରାଯାଇଥିବାରୁ ଓ ଶେଷରେ ଆଇସ୍‌କ୍ରିମର ବିଶୁଦ୍ଧତା ବିଷୟରେ ବିଶ୍ୱାସ କରାଯାଉଥିବାରୁ ଜନ୍ ସ୍ମିଥ ନାମକ ବ୍ୟକ୍ତିଙ୍କର ରାଜପଥରେ ହାଇଷ୍ଟ୍ରୀଟରୁ ଅର୍ଦ୍ଧିକ କାଫେ ପର୍ଯ୍ୟନ୍ତ ପାଦରେ ଯାଇ ଆଇସ୍‌କ୍ରିମ କିଣିବାର ସ୍ୱାଧୀନତା ଅଛି । ମତଦାନ, ସଙ୍ଘ ଗଠନ ଓ ମତପ୍ରକାଶ ସ୍ୱାଧୀତନା ଗଣତନ୍ତ୍ରକୁ କାର୍ଯ୍ୟକାରୀ କରିବାପାଇଁ ଆବଶ୍ୟକ ହୋଇଥାଏ । ଏହି ସବୁବିଧ ସ୍ୱାଧୀନତା ଆଇନ ଦ୍ୱାରା ସୁରକ୍ଷିତ । ଅପର ପକ୍ଷରେ ପ୍ରତ୍ୟେକ ଆଇନ ଦ୍ୱାରା ସ୍ୱାଧୀନତା ସୀମିତ ହୋଇଥାଏ । ସୁତରାଂ ଆଇନ ଓ ସ୍ୱାଧୀନତା ମଧ୍ୟରେ ଭାରସାମ୍ୟ ରହିବା ଆବଶ୍ୟକ । ଅଧିକାଂଶ ଆଧୁନିକ ଆଇନ କଟକଣା ଜାରି କରିବା ପରିବର୍ତ୍ତେ ରାଷ୍ଟ୍ରମାଧ୍ୟମରେ ବିଭିନ୍ନ ସେବା ବ୍ୟବସ୍ଥା କରିଥାଏ । କେବଳ ବିଶେଷ ପରିସ୍ଥିତିରେ ସ୍ୱାଧୀନତା ଉପରେ କଟକଣା ଜାରି କରିବାକୁ ହୋଇଥାଏ । କେଉଁଠାରେ ଆଇନ ଶେଷ ହୋଇ ସ୍ୱାଧୀନତା ଆରମ୍ଭ ହୁଏ ଏହାହିଁ ଏକ ସମସ୍ୟା ରୂପେ ଦେଖାଦେଇଥାଏ ।

ଶିକ୍ଷା ଆଇନକୁ ଏଠାରେ ଉଦାହରଣ ସ୍ୱରୂପ ନିଆଯାଇପାରେ । ପ୍ରତ୍ୟେକ ବାଳକକୁ ଶିକ୍ଷିତ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ । ୧୮୬୭ରେ ସହରର ଶ୍ରମଜୀବୀ ଶ୍ରେଣୀକୁ ମତାଧିକାର ଦିଆଯିବା ବେଳେ ବିଶିଷ୍ଟ ଉଦାରବାଦୀ ରାଜନୀତିଜ୍ଞ କହିଥିଲେ ଯେ "ଆମ୍ଭେମାନେ ଆମ୍ଭମାନଙ୍କ ପ୍ରଭୁମାନଙ୍କୁ ନିଶ୍ଚିତଭାବରେ ଶିକ୍ଷିତ କରାଇବା କଥା" ( **We must educate our masters** ) । ଗଣତନ୍ତ୍ର କହିଲେ ଶିକ୍ଷିତ ନିର୍ବାଚକମାନଙ୍କୁ ବୁଝାଇଥାଏ । କିନ୍ତୁ ଜଣେ ସାଧାରଣ ନିର୍ବାଚକ କିପରି ମତବ୍ୟକ୍ତ କରିବ ତାହା ତାଙ୍କୁ ଜଣାଇବା ଶିକ୍ଷା ଆଇନର ଉଦ୍ଦେଶ୍ୟ ନୁହେଁ; ବରଂ ନିଜ ପୁତ୍ର ଓ କନ୍ୟାମାନେ କିପରି

ଉପଯୁକ୍ତ ବୃତ୍ତିଗତ ପାଇବେ—ଏହାହିଁ ତାଙ୍କ ପାଇଁ ଶିକ୍ଷା ଆଇନର ପ୍ରକୃତ ଉଦ୍ଦେଶ୍ୟ ଅଟେ । ବାସ୍ତବିକ ସେ ଆଉ ଟିକିଏ ଆଗକୁ ଯାଇ କହିପାରନ୍ତି ଯେ ତାଙ୍କ ପୁତ୍ର ଓ କନ୍ୟାମାନଙ୍କ ଜ୍ଞାନ ଓ ବୁଝାମଣାରୁ ଉତ୍ପନ୍ନ ଭାବପ୍ରବଣତାକୁ ଶାନ୍ତ କରିବା ଶିକ୍ଷା ଆଇନର ଲକ୍ଷ୍ୟ ହେବା ଉଚିତ ।

ରାଷ୍ଟ୍ର ଶିକ୍ଷା ବ୍ୟବସ୍ଥା କରୁଥିଲେ ସୁଦ୍ଧା ଏହା କ'ଣ ପ୍ରତ୍ୟେକ ପିଲାକୁ ନିଶ୍ଚିତ ଭାବରେ ବିଦ୍ୟାଳୟକୁ ଯିବାପାଇଁ ବାଧ୍ୟ କରିପାରିବ ? ପୁନଶ୍ଚ ଜଣେ ପିଲା ସରକାରୀ ବିଦ୍ୟାଳୟରେ ପଢ଼ିବ ? ନା ଧର୍ମ ଶିକ୍ଷା, ଉତ୍ତମ ଶିକ୍ଷା, ଖେଳ ସୁବିଧା କିମ୍ବା ଅନ୍ୟାନ୍ୟ କାରଣରୁ ତା'ର ପିତାମାତାଙ୍କ ଦ୍ୱାରା ବଛାଯାଇଥିବା ବିଦ୍ୟାଳୟରେ ପଢ଼ି ପାରିବ ? ଧନଶାଳୀ ପିତାମାତାଙ୍କର ଅର୍ଥ ଯୋଗାଇ ଦେବା କ୍ଷମତା ଥିବାରୁ ସେମାନଙ୍କ ପିଲାମାନେ ଗରିବ ପିଲାମାନଙ୍କ ଅପେକ୍ଷା କ'ଣ ଭଲ ଶିକ୍ଷା ଲାଭ କରିପାରିବେ ?

ଉପରୋକ୍ତ ପ୍ରଶ୍ନଗୁଡ଼ିକର ଉତ୍ତର ଦେବା ସହଜ ନୁହେଁ ଏବଂ ବିଭିନ୍ନ ଲୋକ ଏହି ପ୍ରଶ୍ନଗୁଡ଼ିକର ଉତ୍ତର ଭିନ୍ନ ଭିନ୍ନ ଭାବରେ ଦେଇଥାନ୍ତି । ଆଇନ-ପ୍ରଣୟନ କରିବାବେଳେ ପ୍ରତ୍ୟେକ କ୍ଷେତ୍ରରେ ଏହିପରି ସମସ୍ୟା ଦେଖାଦେଇଥାଏ । ଏହିପରି ସମସ୍ୟାଗୁଡ଼ିକ ସର୍ବଦା ଦଳୀୟ ବିବାଦ ମଧ୍ୟରେ ସୀମାବଦ୍ଧ ନ ଥାଏ । ବେତାର ଓ ଦୂର ଦର୍ଶନକୁ ଏକଗୁଚ୍ଛିଆ ସଂସ୍ଥା ଦ୍ୱାରା ନିୟନ୍ତ୍ରଣ କରାଯିବା ଉଚିତ ନା ଏଥିରେ ପ୍ରତ୍ୟେକଙ୍କୁ ହସ୍ତକ୍ଷେପ କରିବାକୁ ଛାଡ଼ି ଦିଆଯିବା ଉଚିତ, ଏହା ମଧ୍ୟ ଗୋଟିଏ ବିବାଦୀୟ ପ୍ରଶ୍ନ । ଏହି କ୍ଷେତ୍ରରେ ସ୍ୱାଧୀନତାର ଅର୍ଥ ବିପୁଳ ଅର୍ଥ ଥିବା ବ୍ୟକ୍ତିମାନଙ୍କ ସ୍ୱାଧୀନତାକୁ ବୁଝାଇଥାଏ ଓ କୌଣସି ଜିନିଷକୁ ଯେଉଁମାନେ ଲାଭ ରଖି ବିକ୍ରୟ କରିଥାନ୍ତି ସେମାନଙ୍କ ପାଖରେ ବିପୁଳ ଅର୍ଥ ଥାଏ । ସୁତରାଂ ଆମ୍ଭମାନଙ୍କର ସ୍ୱାଧୀନତା ଜଣେ ବିଜ୍ଞାପନଦାତାର ସ୍ୱାଧୀନତା ରୂପେ ପରିଗଣିତ ହୋଇପାରେ ( **Our liberty, therefore, may have to be an advertiser's liberty.** ) ।

# ଦ୍ୱିତୀୟ ଅଧ୍ୟାୟ

## ରାଣୀ

## ( The Queen )

**ରାଣୀ ( The Queen ) :**

ସରକାର କେବଳ ଯୁକ୍ତିତର୍କ ଉପରେ ପର୍ଯ୍ୟବସିତ ନୁହେଁ । ଆମ୍ଭମାନଙ୍କ ମଧ୍ୟରେ କେତେକ ସଚ୍ଚା ବାସ୍ତବବାଦୀ ଅଛନ୍ତି । ଏହି ବାସ୍ତବବାଦୀମାନେ ଭାବପ୍ରବଣ ହୋଇ କୌଣସି କାର୍ଯ୍ୟ ସମ୍ପାଦନ କରନ୍ତି ନାହିଁ । ଆମ୍ଭେମାନେ ମତଦାନ କଲାବେଳେ "ସଂଯୁକ୍ତ ରାଜ୍ୟ ପରିସଂଖ୍ୟାନ ପରିଶିଷ୍ଟ" ( Statistical Abstract of the United Kingdom ) ପୁସ୍ତକ ଆଣି ତଦନୁସାରେ ମାନଚିତ୍ର ପ୍ରସ୍ତୁତ କରିବା ପାଇଁ ଚେଷ୍ଟା କରୁନାହିଁ । ସେକ୍‌ସପିୟର ଜେକୋସ୍ଲୋଭାକିଆ କିମ୍ବା ପୋଲାଣ୍ଡର ଅଧିବାସୀ ନ ହୋଇ ଇଂଲଣ୍ଡର ଅଧିବାସୀ ହୋଇଥିବା କମ୍ ଗୁରୁତ୍ୱପୂର୍ଣ୍ଣ ବିଷୟ ନୁହେଁ । ସେ ( ସେକ୍‌ସପିୟର ) ଷ୍ଟ୍ରାଟଫୋର୍ଡ ଅନ୍-ଆଭନ ( Stratford—on—Avon ) ନାମକ ଇଂଲଣ୍ଡର ଗୋଟିଏ ସହରରେ ଜନ୍ମଗ୍ରହଣ କରିଥିବାରୁ ଆମ୍ଭେମାନେ ସେଥିପାଇଁ ବିଶେଷ ଆନନ୍ଦିତ । ପ୍ରତ୍ୟେକ ଇଂରେଜ ଲୋକ, ସୌନ୍ଦର୍ଯ୍ୟ ଦେଖିବାକୁ ରୁଚିକର ମଣୁଥିଲେ, ରାଣୀଙ୍କୁ ଦର୍ଶନ କରିବା ପାଇଁ ଚାହିଁଥାଏ । ଏପରି କି ରାଣୀ "ଏଲିଜାବେଥ"ଙ୍କ ନାମରେ ମଧ୍ୟ ଆକର୍ଷଣ ଅଛି । ଏହି ନାମ ଉଚ୍ଚାରଣ କଲାମାତ୍ରକେ ଇଂରେଜମାନେ ଭାବ-ବିହ୍ୱଳ ହୋଇ "ରାଣୀ ଜଣେ ଉତ୍ତମ ବ୍ୟକ୍ତି" ବୋଲି କହି ସମ୍ମାନ ପ୍ରଦର୍ଶନ କରିଥାନ୍ତି । ଆମ୍ଭମାନଙ୍କ ମଧ୍ୟରେ ଯେଉଁମାନଙ୍କର ଇତିହାସ ସମ୍ବନ୍ଧରେ ସ୍ୱଳ୍ପଜ୍ଞାନ ଥିବ, ରାଣୀ "ଏଲିଜାବେଥଙ୍କ" ନାମ ଉଚ୍ଚାରଣ କଲାମାତ୍ରେ ସେମାନେ ସେକ୍‌ସ-ପିୟର ଓ ସାର୍ ଫ୍ରାନସିସ୍ ଡ୍ରେକ୍ ଏବଂ ସ୍ପାନିସ ଆର୍ମଡ଼ା ( Spanish Armada )ର ପରାଜୟ ବିଷୟ ସ୍ମରଣ କରିଥାନ୍ତି ।

ଏପରିକି ସାଂବିଧାନିକ ଆଇନଜ୍ଞମାନେ ଏହି ଭାବପ୍ରବଣତାରୁ ଛାନ୍ତ ହୋଇ ନ ଥାନ୍ତି । ଶାନ୍ତ ଭାବରେ ବିଶ୍ଳେଷଣ କଲେ ରାଜତନ୍ତ୍ରର ଚାରିଗୋଟି କାର୍ଯ୍ୟ ପରିଲକ୍ଷିତ ହୋଇଥାଏ । ପ୍ରଥମତଃ, ସମ୍ବିଧାନ ମଧ୍ୟରେ ଏକତା ରକ୍ଷା କରିବା ପାଇଁ ରାଣୀଙ୍କର ନାମ ସିମେଣ୍ଟ ପରି କାର୍ଯ୍ୟ କରିଥାଏ ଓ କୌଣସି ବ୍ୟକ୍ତିଗତ ଚାପ ନ ଦେଇ ସାମ୍ରାଜ୍ଞୀ ରୂପେ ରାଣୀ ନିଜ କାର୍ଯ୍ୟ ସମ୍ପାଦନ କରିଥାନ୍ତି । ଦ୍ୱିତୀୟତଃ, ରାଜ୍ୟଗୋଷ୍ଠୀ ଦେଶମାନଙ୍କରେ ଐକ୍ୟ ସ୍ଥାପନ କରିବା ପାଇଁ ସାମ୍ରାଜ୍ଞୀଙ୍କର ନାମ ବିଶେଷ ସାହାଯ୍ୟ କରିଥାଏ । ତୃତୀୟତଃ, କେତେଗୁଡ଼ିଏ ବିଶେଷ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ କାର୍ଯ୍ୟ ସାମ୍ରାଜ୍ଞୀଙ୍କୁ ବ୍ୟକ୍ତିଗତ ଭାବରେ ସମ୍ପାଦନ କରିବାକୁ ହୋଇଥାଏ । ଚତୁର୍ଥତଃ, ରାଣୀଙ୍କର ସାମାଜିକ କାର୍ଯ୍ୟ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ରାଜନୈତିକ କାର୍ଯ୍ୟାବଳୀକୁ ବାଦ୍ ଦେଇ ସାମାଜିକ କ୍ଷେତ୍ରରେ ରାଣୀଙ୍କୁ କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦନ କରିବାକୁ ପଡ଼ିଥାଏ ।

**ମୁକୁଟ ବା ରାଜପଦ ( The Crown ) :**

କଥା ଅଛି ଯେ "ପ୍ୟାଡ଼ୀ ନାମକ ଜଣେ ବ୍ୟକ୍ତି ଆୟରଲଣ୍ଡର ମୋଲେ ନାମକ ଆଉ ଜଣେ ବ୍ୟକ୍ତିଙ୍କୁ ଏକ ପତ୍ର ଲେଖିଥିଲେ । ତାଙ୍କର ପତ୍ର ନ ପାଇଲେ ତାହା ଲେଖି ଜଣାଇବାକୁ ସେ କହିଥିଲେ ।".

"Paddy wrote a letter to his Irish Molly O ! Saying 'if you don't receive it write and let me know'."

ଉପରୋକ୍ତ କଥାର ତାତ୍ପର୍ଯ୍ୟ କ'ଣ ? ଏହା ବହୁଦିନ ତଳେ କୁହାଯାଇଥିଲା । ସେତେବେଳେ "ମୁଦ୍ରାସ୍ଫୀତିର ଘୂର୍ଣ୍ଣନ" ( "Inflationary Spirals" ) ବିଷୟରେ କିଛି ଜଣା ନଥିଲା । ପ୍ୟାଡ଼ୀ ଗୋଟିଏ ପେନି ଦାମର ଟିକଟ ଆଣି ତାହାକୁ ଲଫାପାରେ ଲଗାଇ ଓ ଲଫାପା ମଧ୍ୟରେ ନିଜ ଚିଠିକୁ ରଖି ଲଫାପାକୁ ବନ୍ଦ କରି ଗୋଟିଏ ଚିଠି-ବାକ୍ସରେ ପକାଇ ଦେଇଥିଲେ । ଏହି କାର୍ଯ୍ୟ ଯେଉଁ ପ୍ରଣାଳୀରେ ସମ୍ପାଦିତ ହୋଇଥିଲା, ତାହା ନିମ୍ନରେ ଆଲୋଚନା କରାଗଲା ।

ସମ୍ରାଟଙ୍କ ଦ୍ୱାରା ବ୍ୟବସ୍ଥା କରାଯାଇଥିବା ଓ ତାଙ୍କ ପୋଷ୍ଟମାଷ୍ଟର ଜେନେରାଲଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିବା କୌଣସି ଏକ ଡାକଘରକୁ ପ୍ୟାଡ଼ୀ ଯାଇଥିଲେ । ସମ୍ରାଟଙ୍କ ମୁଣ୍ଡ ଚିହ୍ନ ଥିବା ରାଜକୀୟ ଟାଙ୍କଶାଳା ( The Royal Mint ) ଦ୍ୱାରା ପ୍ରଚଳିତ ଏକ ତମ୍ବା ମୁଦ୍ରା ପ୍ୟାଡ଼ୀ ତାଙ୍କ ପକେଟରୁ ବାହାର କରିଥିଲେ । ସମ୍ରାଟଙ୍କ ପରିଷଦର ନିର୍ଦ୍ଦେଶାନୁସାରେ ଉକ୍ତ ମୁଦ୍ରାର ମୂଲ୍ୟ ନିରୂପିତ ହୋଇଥିଲା । ତଦନୁସାରେ ୧୨ ଗୋଟି ତମ୍ବା ପେନିର ଦାମ ଗୋଟିଏ ସିଲିଂ ସହିତ ସମାନ । ପୁନଶ୍ଚ ୧୨ ଗୋଟି ସିଲିଂ ( Shillings )ର ଦାମ ସମ୍ରାଟଙ୍କର

ଗୋଟିଏ ସୁନା ମୋହର ସହିତ ସମାନ ଥିଲା । ପ୍ୟାଡ୍ରୀ ନିଜର ପେନ୍‌ଟିକୁ ଏକ ମୂଦ୍ରାକୁ ଦେଇ ସେହି ଅନୁପାତରେ ଟିକଟ ପାଇଁ ଅନୁରୋଧ କରିଥିଲେ । ମୂଦ୍ରା ଜଣେ ନିଜକୁ ସମ୍ରାଟଙ୍କର ସେବକ ବୋଲି ଜାଣିଥିଲେ । ନିଜର ମୁଦ୍ରା ପରିବର୍ତ୍ତେ ପ୍ୟାଡ୍ରୀ ସମ୍ରାଟଙ୍କ ମସ୍ତକ ଚିହ୍ନିଥିବା ଖଣ୍ଡେ ଷ୍ଟେଟ କାଗଜ ପାଇଥିଲା । ଏହି କାଗଜ ଖଣ୍ଡକ ଏକ ଟିକଟ ଥିଲା ଓ ସେହି ଟିକଟକୁ ଲଫାପାରେ ମାରି ପ୍ୟାଡ୍ରୀ ତାହାକୁ ଏକ ଚିଠି ବାକ୍‌ସରେ ପକାଇ ଦେଇଥିଲେ । ଏହା ପରେ ପ୍ୟାଡ୍ରୀଙ୍କ ଅଜ୍ଞାତରେ ତାଙ୍କ ଚିଠିଟି ରାଜାଙ୍କର ସମ୍ପତ୍ତି ହୋଇଯାଇଥିଲା । ରାଜାଙ୍କର ସେବକ ଥିବା ଜଣେ ଡାକପିଅନ ଉକ୍ତ ଲଫାପାକୁ ଚିଠିବାକ୍‌ସ ମଧ୍ୟରୁ କାଢ଼ି ନେଇଥିଲା । ଉକ୍ତ ଚିଠିଟି ରାଜାଙ୍କର ଜଣେ ସେବକଙ୍କ ଠାରୁ ଆଉ ଜଣେ ସେବକଙ୍କ ପାଖକୁ ପଠାଯାଇ ଶେଷରେ ଟିପେରାରିର ଡାକପିଅନ ( Postman in Tipperary ) ପାଖରେ ପହଞ୍ଚିଥିଲା । ସେହି ସମୟରେ ଟିପେରାରିର ଡାକପିଅନ ଗଣରାଜ୍ୟ ଆୟରଲଣ୍ଡର ସେବକ ନ ଥାଇ ସମ୍ରାଟଙ୍କର ସେବକ ଥିଲା । ସମ୍ପୃକ୍ତ ଡାକପିଅନଟି ଉକ୍ତ ଚିଠିକୁ ମୋଲେଙ୍କ ଚିଠି ବାକ୍‌ସରେ ପକାଇ ଦେଇଥିଲା । ଏହି ପ୍ରଣାଳୀରେ ପ୍ୟାଡ୍ରୀଙ୍କ ଚିଠିକୁ ସମ୍ରାଟ୍ ଲକ୍ଷ୍ୟ ସ୍ଥଳରେ ପହଞ୍ଚାଇ ଦେଇଥିଲେ । ଏହା ପରେ ଚିଠିଟି ସମ୍ରାଟଙ୍କର ସମ୍ପତ୍ତି ନ ହୋଇ ମୋଲେଙ୍କର ସମ୍ପତ୍ତି ହୋଇଥିଲା । ଅବଶ୍ୟ ସଂସଦରେ ସମ୍ରାଟଙ୍କ ଦ୍ୱାରା ପ୍ରଣୀତ ହୋଇଥିବା ଆଇନ ଅନୁସାରେ ଉକ୍ତ ଚିଠିର ବିଷୟବସ୍ତୁ ପ୍ୟାଡ୍ରୀଙ୍କର ସଂପତ୍ତି ରୂପେ ବିବେଚିତ ହେଉଥିଲା ।

ରାଜା ପଞ୍ଚମ ଜର୍ଜ ( King George V ) ପ୍ୟାଡ୍ରୀର ଚିଠି ବିଷୟରେ କିଛି ଜାଣି ନ ଥିଲେ; କିନ୍ତୁ ତାଙ୍କ ନାମରେ ସମସ୍ତକାର୍ଯ୍ୟ ସମ୍ପାଦିତ ହୋଇଥିଲା । ଇଂଲଣ୍ଡରେ ସାମନ୍ତମାନଙ୍କର ଆଧିପତ୍ୟ ଥିଲା; ବିଶେଷତଃ ବିଜୟୀ ଉଇଲିୟମ ସାମନ୍ତମାନଙ୍କର ଜଣେ ସମର୍ଥକ ଥିଲେ । ନର୍ମାନ ସମ୍ରାଟଗଣ ଓ ସେମାନଙ୍କ ଉତ୍ତରାଧିକାରୀମାନେ ( Norman Kings and their successors ) ଦେଶକୁ ନିଜ ନିୟନ୍ତ୍ରଣାଧୀନକୁ ଆଣିଥିଲେ । ଫଳରେ ସାମନ୍ତବାଦୀ ଆଇନ ଓ ସ୍ଥାନୀୟ ପ୍ରଥା ପରିବର୍ତ୍ତେ "ରାଜାଙ୍କ ଆଇନ" ( The King's law ) କାର୍ଯ୍ୟକାରୀ ହୋଇଥିଲା । ସଂସଦର ସ୍ୱୀକୃତି ନେଇ ରାଜା ଆଇନ ପ୍ରଣୟନ କରୁଥିଲେ ଓ ରାଜାଙ୍କର ନ୍ୟାୟାଳୟ ସେହି ଆଇନକୁ କାର୍ଯ୍ୟକାରୀ କରୁଥିଲା । ସଂସଦର ସ୍ୱୀକୃତି ନେଇ ନିଜର ବିଶ୍ୱସ୍ତ ଅଫିସରମାନଙ୍କ ସାହାଯ୍ୟରେ ରାଜା କର ବସାଉଥିଲେ ଓ ସମ୍ପତ୍ତି କ୍ରୟ ବିକ୍ରୟ କରୁଥିଲେ । ରାଜାଙ୍କର କର୍ମଚାରୀବୃନ୍ଦ ରାଜପଥର ତତ୍ତ୍ୱାବଧାନ କରୁଥିଲେ । ସେହି ରାଜପଥରେ ଯାନବାହନଗୁଡ଼ିକ "ରୟାଲ ମେଲ" ( Royal Mail ) ନାମ ଧାରଣ କରି ଦ୍ରୁତ ଗତିରେ ଯାତାୟାତ କରୁଥିଲା । ଆଜିକାଲି ରାଜକର୍ମଚାରୀମାନଙ୍କ ସଂଖ୍ୟା କ୍ଷିପ୍ର ଗତିରେ ବୃଦ୍ଧି ପାଇବା ଫଳରେ ଆଜି ଜଣେ ରାଜକର୍ମଚାରୀ ରାଣୀଙ୍କଠାରୁ ଦୂରରେ ଥିଲା ପରି ଲାଗୁଛନ୍ତି । ଅଧୁନା ରାଜକର୍ମଚାରୀମାନେ ହିଁ ରାଜକର୍ମଚାରୀ-

ମାନଙ୍କୁ ନିଯୁକ୍ତ କରୁଛନ୍ତି । ଏହି ନିଯୁକ୍ତି ପ୍ରଣାଳୀ ଏତେ ଦୀର୍ଘ ଯେ ପରିଶେଷରେ କେବଳ ପୋଷ୍ଟମାଷ୍ଟର ଜେନେରାଲଙ୍କୁ ରାଣୀ କିମ୍ବା ତାଙ୍କର ପୂର୍ବାଧିକାରୀ ନିଯୁକ୍ତି ଦେଇଥାନ୍ତି ।

ବହୁ ଉଦାହରଣ ମଧ୍ୟରୁ ଉପରୋକ୍ତ ଉଦାହରଣ ଏକତମ । ଅନ୍ୟ ଦେଶରେ ଯାହାକୁ ରାଷ୍ଟ୍ରର ସମ୍ପତ୍ତି ବୋଲି ବିବେଚନା କରାଯାଇଥାଏ, ବାସ୍ତବରେ ଇଂଲଣ୍ଡରେ ତାହା ରାଣୀଙ୍କ ସମ୍ପତ୍ତି କିମ୍ବା ସମ୍ରାଟ୍ଙ୍କ ସମ୍ପତ୍ତି ବୋଲି ବିବେଚିତ ହୋଇଥାଏ । ସର୍ବସାଧାରଣଙ୍କ ସେବା କାର୍ଯ୍ୟ ରାଣୀଙ୍କ ସେବା ଅର୍ଥାତ୍ ସମ୍ରାଟ୍ଙ୍କ ସେବା ରୂପେ ପରିଗଣିତ ହୋଇଥାଏ । ଏପରି କି ଆସ୍ଥକର ଦାବୀଗୁଡ଼ିକ ମଧ୍ୟ "ମହାମାନ୍ୟା ରାଣୀଙ୍କ ସେବା" ( On Her Majesty's Service ) ରୂପେ ବିବେଚିତ ହୋଇଥାଏ । ସରକାରୀ ବିଭାଗମାନଙ୍କ ସହିତ କରାଯାଇଥିବା ଚୁକ୍ତିଗୁଡ଼ିକ ଯଥାର୍ଥରେ ସମ୍ରାଟ୍ଙ୍କ ସହିତ କରାଯାଇଥିବା ଚୁକ୍ତି ରୂପେ ବିବେଚିତ ହୋଇଥାଏ । ଅପରାଧୀମାନଙ୍କୁ ଦଣ୍ଡ ଦେବା ପାଇଁ ମୋକଦ୍ଦମା ରାଷ୍ଟ୍ର ତରଫରୁ ଆଗତ କରା ନ ଯାଇ ରାଣୀଙ୍କ ତରଫରୁ ଆଗତ କରାଯାଇଥାଏ । ଉଦାହରଣସ୍ୱରୂପ କୌଣସି ଏକ ମୋକଦ୍ଦମାକୁ "ରାଣୀ ବନାମ ଜନ୍ ଡୋ" (The Queen against John Doe) ବୋଲି କୁହାଯାଇଥାଏ । ଅବଶ୍ୟ ଏହି ବିଷୟରେ ବିଶେଷ କିଛି ଗୁରୁତ୍ୱ ଆରୋପ କରାଯିବା ଉଚିତ ନୁହେଁ । "ରାଣୀ" କିମ୍ବା "ସମ୍ରାଟ୍" ପରିବର୍ତ୍ତେ "ରାଷ୍ଟ୍ର" ବ୍ୟବହାର କରାଯାଇପାରେ । କିନ୍ତୁ ରାଷ୍ଟ୍ରକୁ ଜଣେ ବ୍ୟକ୍ତିବିଶେଷ ଦ୍ୱାରା ପ୍ରକାଶ କରାଯିବା ଫଳରେ ଏହାର ମନସ୍ତାତ୍ତ୍ୱିକ ପ୍ରଭାବ ଥାଏ । ଏହାର କାରଣ ସ୍ୱରୂପ କୁହାଯାଇଥାଏ ଯେ ସର୍ବଦା ବ୍ୟକ୍ତିବିଶେଷ ଓ ଅନୁଷ୍ଠାନ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୋଇପାରେ ନାହିଁ । ପ୍ରଶାସନର ଶୀର୍ଷସ୍ଥର ସହିତ ରାଣୀ ବ୍ୟକ୍ତିଗତ ଭାବରେ ସମ୍ପୃକ୍ତ ଥାଆନ୍ତି । ସହରାଞ୍ଚଳର ପୋଲିସବାହିନୀକୁ ନିଜର ଅଯୋଗ୍ୟତା ଓ ଦୁର୍ନୀତି ପାଇଁ ସମାଲୋଚନା କରାଗଲେ, ଅବସର ଗ୍ରହଣ କରିଥିବା ଜଣେ ଅଫିସରଙ୍କୁ ସହରାଞ୍ଚଳ ପୋଲିସବାହିନୀର କମିଶନର ହେବା ପାଇଁ କୁହାଯାଇଥିଲା । ଉକ୍ତ ଅଫିସର ଜଣକେ ଆଉ ଏକ ଲାଭ-ଜନକ ପଦରେ ଥିବାରୁ କମିଶନର ପଦ ଗ୍ରହଣ କରିବା ପାଇଁ ଇଚ୍ଛା ପ୍ରକାଶ କରୁ ନ ଥିଲେ । କିନ୍ତୁ ଉକ୍ତ ପଦ ଗ୍ରହଣ କରିବାକୁ ରାଜା ଚାହୁଁଛନ୍ତି ବୋଲି ତାଙ୍କୁ ଜଣାଇ ଦିଆଗଲା ପରେ ସେ ତାହା ଗ୍ରହଣ କରିଥିଲେ । "ରାଜାଙ୍କ ନିର୍ଦ୍ଦେଶ" (The King's Command) ଅବଜ୍ଞା କରିବା କର୍ତ୍ତବ୍ୟ ନୁହେଁ ଭାବି ସେ ତାହା ଗ୍ରହଣ କରିଥିଲେ ।

ସରକାରୀ କର୍ମଚାରୀମାନଙ୍କର କାର୍ଯ୍ୟ ରାଣୀଙ୍କୁ ଜଣାଥାଏ ବୋଲି ସେମାନେ ବିଶ୍ୱାସ କରିଥାନ୍ତି । ରାଷ୍ଟ୍ରର ସେବା କରିବା ଅପେକ୍ଷା ବ୍ୟକ୍ତିଗତଭାବେ ରାଣୀଙ୍କର ସେବା କରିବାକୁ ସେମାନେ ପସନ୍ଦ କରିଥାନ୍ତି । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ସୈନ୍ୟ ନିଯୁକ୍ତି ପାଇଁ ଲଗାଯାଇଥିବା ପ୍ରାଚୀର ପତ୍ରରେ "ଆପଣଙ୍କର ରାଜା ଓ ଆପଣଙ୍କର ଦେଶ ଆପଣଙ୍କୁ ଚାହୁଁଛି" ବୋଲି ( Your King and Country need you ) ଲେଖାଥିବା

କଥା ବୃଦ୍ଧ ଲୋକମାନେ ଏବେ ମଧ୍ୟ ମନେ ରଖିଛନ୍ତି । ରାଷ୍ଟ୍ର ଏକ ଅବାସ୍ତବ କଳ୍ପନା, କିନ୍ତୁ ରାଣୀ ଜଣେ ବାସ୍ତବ ବ୍ୟକ୍ତି ବିଶେଷ । "ରାଣୀଙ୍କ" ମଙ୍ଗଳ ପାଇଁ ପ୍ରାର୍ଥନା କଲାବେଳେ ଆମ୍ଭେମାନେ ବ୍ୟକ୍ତିବିଶେଷ ଓ ଅନୁଷ୍ଠାନ ମଧ୍ୟରେ କୌଣସି ପାର୍ଥକ୍ୟ ରଖି ନ ଥାଉ । ଦୁଃଖ ସମୟରେ ବେଳେବେଳେ ରାଣୀଙ୍କୁ ଦେଖିବାକୁ ଆମ୍ଭେମାନେ ଇଚ୍ଛାପ୍ରକାଶ କରିଥାଉ । ରାଷ୍ଟ୍ରୀୟ ଘୋଡ଼ାଗାଡ଼ିରେ ସେ ସଂସଦକୁ ଯାଆନ୍ତି ଓ ସେଠାରେ "ରାଣୀଙ୍କର ଭାଷଣ" ( The Queen's Speech ) ପାଠ କରିଥାନ୍ତି । ଏ କଥା ସମସ୍ତେ ଜାଣନ୍ତି ଯେ ରାଣୀ ତାଙ୍କର ଭାଷଣ ନିଜେ ପ୍ରସ୍ତୁତ କରି ନ ଥାନ୍ତି । ରାଣୀଙ୍କ ସେବାପାଇଁ ସହଜରେ ନିଜର ବ୍ୟକ୍ତିଗତ ସ୍ୱାର୍ଥକୁ ତ୍ୟାଗ କରାଯାଇପାରେ । କିନ୍ତୁ ରାଷ୍ଟ୍ରର ସେବା ପାଇଁ ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରିବା ସହଜ ହୋଇ ନ ଥାଏ ।

ସର୍ବୋପରି "ରାଷ୍ଟ୍ର ଓ ସରକାର" ( The State and the Government ) ମଧ୍ୟରେ ପାର୍ଥକ୍ୟ ଦେଖାଇବା ସହଜ ନୁହେଁ । ଏହି ପାର୍ଥକ୍ୟ ଦର୍ଶାଇବା ଏତେ କଷ୍ଟକର ବ୍ୟାପାର ଯେ କେତେକ ଦେଶରେ ସରକାରଙ୍କୁ ବିରୋଧ କରିବା ଅର୍ଥ ରାଜଦ୍ରୋହ ବୁଝାଇ ଥାଏ । ଗୋଟିଏ ଗଣତାନ୍ତ୍ରିକ ରାଷ୍ଟ୍ରରେ ଆମ୍ଭେମାନେ ସରକାରଙ୍କୁ ସମାଲୋଚନା, ଏପରି କି ବିରୋଧ କରିପାରୁ । ଅବଶ୍ୟ ଏହା ଦେଶର ସ୍ୱାର୍ଥ ତଥା ସରକାରଙ୍କ ଭୁଲ ଭ୍ରାନ୍ତିକୁ ସୁଧାରିବା ପାଇଁ କରାଯାଇଥାଏ । ସାଧାରଣ ଭାବରେ ଜଣେ ରାଜନୀତିଜ୍ଞ, ନିଜ ସରକାର ତଥା ଦଳ ପାଇଁ ପ୍ରଚାର କରିଥାଏ । କିନ୍ତୁ ବେଳେବେଳେ ଏପରି ସମୟ ଆସେ ଯେତେବେଳେ ସେ ସମଗ୍ର ଦେଶ ପାଇଁ ପ୍ରଚାର କରିଥାଏ । ଆମେରିକାର ରାଷ୍ଟ୍ରପତି ଜଣେ ଦଳୀୟ ବ୍ୟକ୍ତି; ସେ ଧ୍ରୁବ ଏତ "ଡିମୋକ୍ରାଟିକ୍ କିମ୍ବା ରିପବ୍ଲିକାନ୍" ( Democratic or Republican ) ଦଳର ସଭ୍ୟ ଅଟନ୍ତି । ଉଦାହରଣ ସ୍ୱରୂପ, ରାଷ୍ଟ୍ରପତି ଏଲ. ବି, ଜନସନ୍ ( L. B. Johnson ) ଜଣେ ଦଳୀୟ ବ୍ୟକ୍ତି ବୋଲି କୌଣସି ଲୋକ ଭୁଲି ଯାଇ ପାରିବ ନାହିଁ । କିନ୍ତୁ ଅପର ପକ୍ଷରେ ଦେଶ ଓ ଦଳ ପ୍ରତି ଆନୁଗତ୍ୟ ପ୍ରଦର୍ଶନ ମଧ୍ୟରେ ପାର୍ଥକ୍ୟ ଦର୍ଶାଇବା କଷ୍ଟକର ହୋଇ ନ ଥାଏ । ପ୍ରଥମ ଆନୁଗତ୍ୟ ରାଣୀଙ୍କ ପ୍ରତି ପ୍ରଦର୍ଶନ କରାଯାଇଥାଏ ଓ ଶେଷ ଆନୁଗତ୍ୟଟି ଦଳ ପ୍ରତି ପ୍ରଦର୍ଶନ କରାଯାଇପାରେ । ବ୍ରିଟେନରେ ଆମ୍ଭେମାନେ "ରାଣୀଙ୍କ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ସରକାରଙ୍କୁ ବିରୋଧ କରିପାରୁ ।"

ଉପର୍ଯ୍ୟୁକ୍ତ ଆଲୋଚନା ବ୍ୟାପକ ନୁହେଁ । ସମ୍ମିଳିତ ରାଜ୍ୟ ( The United Kingdom ) ତିନଗୋଟି ରାଜ୍ୟକୁ ନେଇ ଗଠିତ । ଏହି ତିନଗୋଟି ରାଜ୍ୟ ହେଲା— ଇଂଲଣ୍ଡ ( ଓ ୱେଲସ୍ ), ସ୍କଟଲଣ୍ଡ ଓ ଉତ୍ତର ଆୟାର୍ଲଣ୍ଡ ( Northern Ireland ) ଆଇନ ଦୃଷ୍ଟିକୋଣରୁ ଠିକ୍ ନ ହେଲେ ସୁଦ୍ଧା ବାସ୍ତବ ଦୃଷ୍ଟିକୋଣରୁ ଏହାକୁ ଚାରିଗୋଟି ଦେଶ, ଯଥା—ଇଂଲଣ୍ଡ, ୱେଲସ୍, ସ୍କଟ୍ଲଣ୍ଡ ଓ ଅଲଷ୍ଟରର ସମ୍ମିଶ୍ରଣ ବୋଲି କୁହାଯାଇ

ଥାଏ । ଆଞ୍ଚଳିକ ଆନୁଗତ୍ୟକୁ ପାଶୋରି ଦେବା ସହଜ ନୁହେଁ ବୋଲି ସଂଯୁକ୍ତ ରାଜ୍ୟର ଜନସାଧାରଣ ଜାଣିପାରିଛନ୍ତି । ବହୁଦିନ ପୂର୍ବେ ଓ୍ୱେଲସ୍ ଅଧିବାସୀମାନଙ୍କର ଦେଶପ୍ରେମକୁ ସନ୍ତୁଷ୍ଟ କରିବା ପାଇଁ ପ୍ରଥମ ଏଡ୍‌ଓ୍ୱାର୍ଡ୍ ରାଜାର ଶିଶୁପୁତ୍ରକୁ ସେମାନଙ୍କର ଯୁବରାଜ ବୋଲି ଘୋଷଣା କରିଥିଲେ । ୧୭୪୬ରେ କୁଲୋଡ଼ନଠାରେ ବୋନୀ ପ୍ରିନ୍‌ସ ଚାର୍ଲେ ଓ ତାଙ୍କର ଉଚ୍ଚଭୂମି (ହାଇଲଣ୍ଡ) ସମର୍ଥକମାନେ ପରାସ୍ତ ହେବା ପରେ ସ୍କଟ୍‌ମାନେ ଦୁଃଖିତ ଓ ବ୍ୟତିବ୍ୟସ୍ତ ହୋଇଥିଲେ । ଚାଥାମ୍‌ର ଅର୍ଲ୍ ଏହାର ଉପଯୁକ୍ତ ସମାଧାନ ବାହାର କରିଥିଲେ । ସେ ବ୍ରିଟିଶ ସୈନ୍ୟବାହିନୀରେ ଉଚ୍ଚ ଅଧିବାସୀ ସୈନ୍ୟମାନଙ୍କର ଏକ ଶାଖା ଗଠନ କରିଥିଲେ ଓ ସେମାନଙ୍କୁ ତୃତୀୟ ଜର୍ଜଙ୍କ ପାଇଁ ଯୁଦ୍ଧ କରିବା ଲାଗି ପଠାଇ ଦେଇଥିଲେ । ଓ୍ୱେଲସ୍‌ମାନେ ସେମାନଙ୍କ ଭାଷା ଓ ସ୍କଟମାନେ ସେମାନଙ୍କ ଆଇନ ବ୍ୟବସ୍ଥା ସଂରକ୍ଷିତ କରି ରଖିଛନ୍ତି । ବାସ୍ତବିକ, ସଂଯୁକ୍ତ ରାଜ୍ୟ ଏକ ବିଚିତ୍ର ରାଜ୍ୟ । ଏହାର କୌଣସି ଜାତୀୟ ଭାଷା ନାହିଁ; କାରଣ କୌଣସି ବ୍ୟକ୍ତିକୁ ଇଂରେଜୀ କହିବାକୁ ପଡ଼ି ନ ଥାଏ । ଏହାର କୌଣସି ଜାତୀୟ ପତାକା ନାହିଁ । ଘଟଣାଚକ୍ରରେ ସେଣ୍ଟ ଜର୍ଜଙ୍କ କ୍ରସ୍ ( ଇଂଲଣ୍ଡ ପାଇଁ ), ସେଣ୍ଟ ଆନଡ୍ରିଭ କ୍ରସ୍ ( ସ୍କଟ୍‌ଲଣ୍ଡ ପାଇଁ ) ଓ ସେଣ୍ଟ ପାଟ୍ରିକ କ୍ରସ୍ ( ଆୟର୍ଲାଣ୍ଡ ପାଇଁ )କୁ ନେଇ ମିଳିତ ପତାକା ପ୍ରସ୍ତୁତ ହୋଇଅଛି । ମହାମାନ୍ୟା ରାଣୀଙ୍କ ଜାହାଜଗୁଡ଼ିକ ବ୍ୟତୀତ ଅନ୍ୟ କେହି ଏହି ପତାକାକୁ ଉଡ଼ାଇବା ପାଇଁ ବାଧ୍ୟ ନୁହଁନ୍ତି । ଜାହାଜଗୁଡ଼ିକ ମାସ୍ତୁଲରେ ଏହି ପତାକାକୁ ଉଡ଼ାଇ ଥାନ୍ତି । ତେଣୁ ଏହାକୁ 'ୟୁନିୟନ ଜ୍ୟାକ୍' କୁହାଯାଏ । ଏହି ପତାକା ମଧ୍ୟ ଜାହାଜର ଧଳା ଇଞ୍ଜିନରେ ଉଡ଼ା ଯାଇଥାଏ । ଇଂଲଣ୍ଡ, ସ୍କଟଲଣ୍ଡ ଓ ଆୟର୍ଲାଣ୍ଡର ସୈନ୍ୟ-ବାହିନୀମାନଙ୍କ ମଧ୍ୟରେ ରାଣୀଙ୍କ ଉପସ୍ଥିତ ସମୟରେ ଏହି ପତାକା ଉଡ଼ା ଯାଇଥାଏ । ରାଣୀଙ୍କ ଅନୁପସ୍ଥିତ ସମୟରେ ଉଇଣ୍ଡସର ଦୁର୍ଗରେ ସେଣ୍ଟ ଜର୍ଜ କ୍ରସ୍, ହୋଲୀରୁଡ୍ ପ୍ରାସାଦରେ ସେଣ୍ଟ ଆନଡ୍ରିଭ କ୍ରସ୍ ଓ କାର୍ଣ୍ଣାର୍ଭନ ଦୁର୍ଗରେ ଓ୍ୱେଲସ୍ ଡ୍ରାଗନ ଉଡ଼ା ଯାଇଥାଏ ।

ସଂଯୁକ୍ତ ରାଜ୍ୟର ଲୋକମାନଙ୍କର ମଧ୍ୟ କୌଣସି ସାଧାରଣ ନାମ ନାହିଁ । ସେମାନେ ହେଉଛନ୍ତି ଇଂରେଜ, ସ୍କଟ, ଓ୍ୱେଲସ୍ ଓ ଅଲଷ୍ଟର ଅଧିବାସୀ ଏବଂ ସେମାନଙ୍କ ମଧ୍ୟରେ ଘନିଷ୍ଠ ବୈବାହିକ ସମ୍ବନ୍ଧ ପ୍ରତିଷ୍ଠିତ ହୋଇ ଥିବାରୁ ସେମାନଙ୍କ ମଧ୍ୟରୁ ଅଧିକାଂଶ କିଏ କେଉଁ ଲୋକ ଜାଣିବା କଷ୍ଟକର ହୋଇଥାଏ । ସେମାନେ ସମସ୍ତେ ବ୍ରିଟେନର ନାଗରିକ । ସେହିପରି କାନାଡ଼ା, ଅଷ୍ଟ୍ରେଲିଆ, ନିଉଜିଲଣ୍ଡ, ଦକ୍ଷିଣ ଅଫ୍ରିକା, ଭାରତ, ପାକିସ୍ଥାନ, ସିଂହଳ, ଚୀନ, ଫିଜି ଓ ଆଫ୍ରିକାର ଅନ୍ୟାନ୍ୟ ଦେଶମାନଙ୍କରେ ବାସ କରୁଥିବା ଲୋକମାନେ ସେହି ଦେଶର ନାଗରିକ ଅଟନ୍ତି । ବ୍ରିଟିଶ ନାଗରିକମାନଙ୍କର କୌଣସି ଜାତୀୟ ସଙ୍ଗୀତ ନାହିଁ । କିନ୍ତୁ ସେମାନେ ଭାବନ୍ତି ଯେ ସେମାନଙ୍କର ଜାତୀୟ ସଙ୍ଗୀତ ଅଛି । କିନ୍ତୁ "ଈଶ୍ୱର ରାଣୀଙ୍କୁ ରକ୍ଷା କରନ୍ତୁ" ( God save the Queen ) ବୋଲି ଯେଉଁ ରାଜକୀୟ ସଙ୍ଗୀତ ବୋଲାଯାଇଥାଏ, ସେଥିରେ ସଂଯୁକ୍ତ ରାଜ୍ୟର ନାମଗନ୍ଧ ନାହିଁ । ରାଣୀଙ୍କ ନାମରେ ଶାସିତ ହେଉଥିବା ସମସ୍ତ ଅଞ୍ଚଳରେ ଉକ୍ତ ସଙ୍ଗୀତ ବୋଲାଯାଇପାରେ । କୌଣସି ଜାତୀୟ ସଙ୍ଗୀତ

ଶୁଣିବାକୁ ହେଲେ ଜଣେ ଇଂରେଜଲୋକକୁ ଟ୍ୱିକେନହାମ କିମ୍ବା ଉଇବଲ୍‌କୁ ଯାଇ ସେଠାରେ ୱେଲସ୍ ଫୁଟବଲ ଖେଳର ଦର୍ଶକମାନେ ( ତାଳଲହରୀ ଦେଇ ) ଗାଉଥିବା "ଏହି ଜନ୍ମଭୂମି ଆମ୍ଭମାନଙ୍କର ପୂର୍ବପୁରୁଷଙ୍କର" ( **Land of our Fathers** ) ଗୀତ ଶୁଣିବାକୁ ପଡ଼ିଥାଏ । ଇଂରେଜ ଲୋକମାନେ ମଧ୍ୟ ଏହି ଗୀତ ଲହରୀରେ ଯୋଗ ଦେଇଥାନ୍ତି । ଅବଶ୍ୟ ଇଂରେଜ ଲୋକମାନେ "ଆପଣ କ'ଣ ଆଉ ଫେରିବେ ନାହିଁ" ( **Will you no, come back again** ) ଏହି ରାଜଦ୍ରୋହମୂଳକ ସଙ୍ଗୀତ ସହି ଅଧିକ ସୁପରିଚିତ । ଏହି ଗୀତରେ ସ୍କଟ୍‌ମାନେ ବୋନୀ ପ୍ରିନ୍ସ ଚାର୍ଲିଙ୍କ ଫେରିବାକୁ ସ୍ୱାଗତ କରି ଦ୍ୱିତୀୟ ଜର୍ଜଙ୍କର ବଂଶଧରମାନଙ୍କୁ ସିଂହାସନରୁ ବିଚ୍ୟୁତ କରିବା ପାଇଁ ଇଚ୍ଛା-ପ୍ରକାଶ କରିଥିଲେ ।

ସଂଯୁକ୍ତ ରାଜ୍ୟର ଲୋକମାନେ ଏକ ମସ୍ତବଡ଼ ଭୁଲ କରିଥିଲେ । ସେମାନେ ଦକ୍ଷିଣ ଆୟର୍ଲାଣ୍ଡର ଅଧିବାସୀମାନଙ୍କୁ ସେମାନଙ୍କ ଆନୁଗତ୍ୟ ଉଭୟ ଆୟର୍ଲାଣ୍ଡ ଓ ତୃତୀୟ ଜର୍ଜଙ୍କ ଉତ୍ତରାଧିକାରୀମାନଙ୍କ ପ୍ରତି ରଖିବା ପାଇଁ ପ୍ରବର୍ତ୍ତାଇ ନ ଥିଲେ । ବୋଧହୁଏ ଦୋଷ ଉଭୟ ପକ୍ଷରେ ରହିଯାଇ ଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀରେ ସହନଶୀଳତାର ଅଭାବ ଥିଲା, ପ୍ରକୃତ ଦୋଷ । ଏହି ଶତାବ୍ଦୀରେ ରୋମାନ୍ କ୍ୟାଥଲିକମାନଙ୍କ ପ୍ରତି କେହି ସହନଶୀଳ ନ ଥିଲେ । ଦକ୍ଷିଣ ଆୟର୍ଲାଣ୍ଡର ଅଧିବାସୀମାନେ ରୋମାନ୍ କ୍ୟାଥଲିକ ଥିଲେ । ଆୟର୍ଲାଣ୍ଡ ପ୍ରତି ସ୍ୱତନ୍ତ୍ର ନୀତି ଅନୁସରଣ କରିବାର ଯଥାର୍ଥତା ଅନୁଭବ କରିବା ଉଇଲିୟମ ପିଟ୍‌ଙ୍କର ବିଶେଷତ୍ୱ ଥିଲା । କିନ୍ତୁ ତୃତୀୟ ଜର୍ଜ ଏହା ଅନୁଭବ କରି ପାରି ନ ଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଦୁର୍ନୀତି ପୂରି ରହି ଥିଲେ ମଧ୍ୟ ଦୁର୍ନୀତି ଅଭିଯୋଗରେ ତତ୍କାଳୀନ ଆଇରିସ୍ ସଂସଦକୁ ଚପାଇ ରଖା-ଯାଇଥିଲା । ଏହି ଶତାବ୍ଦୀର ଚତୁର୍ଥ ଦଶନ୍ଧିରେ ବିଖ୍ୟାତ ଆଳୁ ଦୁର୍ଭିକ୍ଷ ( **Patato famine** ) ଫଳରେ ଅବସ୍ଥା ଆହୁରି ଜଟିଳ ହୋଇଥିଲା । ଆୟର୍ଲାଣ୍ଡର ଅଧିକାଂଶ ଅଧିବାସୀ ଯୁକ୍ତରାଷ୍ଟ୍ର ଆମେରିକାରେ ପୁଲିସ କର୍ମଚାରୀ ଓ ରାଜନୀତିଜ୍ଞ ହେବାପାଇଁ ପଳାଇ ଯାଇଥିଲେ । ଗ୍ଲାଡ଼ଷ୍ଟୋନଙ୍କର ସ୍ୱଶାସନ ନୀତି ( **Gladstone's Home Rule** ) ବୋଧହୁଏ ଏହି ସମସ୍ୟାର ସମାଧାନ କରି ପାରିଥାନ୍ତା; କିନ୍ତୁ ସେ ୧୮୮୬ରେ ସଂଖ୍ୟାଗରିଷ୍ଠତା ହରାଇ ଥିଲେ । ୧୯୨୧ ପର୍ଯ୍ୟନ୍ତ "ୟୁନିୟନିଷ୍ଟମାନେ" କୌଣସି ସୁବିଧା ଦେବାକୁ ପ୍ରସ୍ତୁତ ନ ଥିଲେ । କିନ୍ତୁ ୧୯୨୧ ବେଳକୁ ବହୁତ ବିଳମ୍ବ ହୋଇଯାଇ ଥିଲା । ସେତେବେଳକୁ ଆଇରିସ୍ ଲୋକମାନେ ସମ୍ରାଟଙ୍କ ପ୍ରତି ଆନୁଗତ୍ୟ ପ୍ରକାଶ ନକରି ଆୟର୍ଲାଣ୍ଡ ପ୍ରତି ଆନୁଗତ୍ୟ ପ୍ରକାଶ କରିବାକୁ ଶିକ୍ଷାଲାଭ କରିଥିଲେ । ଘଟଣାକ୍ରମେ ୧୯୪୯ ରେ ଆୟର୍ଲାଣ୍ଡ ଏକ ଗଣରାଜ୍ୟରେ ପରିଣତ ହେଲା । କିନ୍ତୁ ଅଲଷ୍ଟର ରାଣୀଙ୍କ ପ୍ରତି ଅତ୍ୟଧିକ ଆନୁଗତ୍ୟ ପ୍ରକାଶ କରି ସଂଯୁକ୍ତ ରାଜ୍ୟ ସହିତ ମିଶି ରହିଥିଲା ।

ଏହି ମସ୍ତବଡ଼ ଭୂଲ ବ୍ୟତୀତ ସଂଯୁକ୍ତ ରାଜ୍ୟର ଲୋକମାନେ ବହୁ ସୁନାମ ଅର୍ଜନ କରିଛନ୍ତି । ବିଭିନ୍ନତା ମଧ୍ୟରେ ସେମାନେ ଏକତା ବଜାୟ ରଖି ପାରିଛନ୍ତି । ଆମ୍ଭେମାନେ ଆମ୍ଭମାନଙ୍କ ନିଜ ଲୋକମାନଙ୍କୁ ବିଶ୍ୱାସ କରିବା କଥା ୧୯୪୦ରେ ପ୍ରମାଣିତ ହୋଇଥିଲା; କିନ୍ତୁ ପ୍ରକୃତରେ ସେମାନେ ସମସ୍ତେ ଆମ ନିଜ ଲୋକ ନୁହନ୍ତି । ସେମାନେ ଇଂରେଜ, ଉଏଲସ୍, ସ୍କଟ୍ ଓ ଅଲଷ୍ଟର ଲୋକ ଅଟନ୍ତି । ବାସ୍ତବିକ, ସେମାନଙ୍କ ମଧ୍ୟରୁ କେତେକ ସଂଯୁକ୍ତ ରାଜ୍ୟର ଲୋକ ନ ଥିବା କଥା ଏଠାରେ ସ୍ମରଣ କରାଯାଇପାରେ । ସେମାନେ ମାନକ୍ସ, ଜର୍ସି, ଗୁର୍ନେସେ ଓ ସାର୍କର ଲୋକ ଅଟନ୍ତି । ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶ ଇଂରାଜୀ କହିଥାଉ, କିନ୍ତୁ କେତେକ ଗ୍ୟାଲିକ୍ କିମ୍ବା ଉଏଲସ୍ କିମ୍ବା ନର୍ମାନ-ଫ୍ରେଞ୍ଚ କହିବାକୁ ପସନ୍ଦ କରିଥାନ୍ତି । ବର୍ତ୍ତମାନ ଦେଖିବା କଥା ଯେ କେବଳ ଗୋଟିଏ ଗଣରାଜ୍ୟରେ ଏହା ସମ୍ଭବ ହୋଇପାରେ । ଜନସାଧାରଣ କୌଣସି ସମାଧାନ ଗ୍ରହଣ କରିବାକୁ ପ୍ରସ୍ତୁତ ଥିଲେ ଜଣେ ସାଂବିଧାନିକ ଆଇନଜୀବୀ ଉପଯୁକ୍ତ ଚଠା ପ୍ରସ୍ତୁତ କରି ଯେ କୌଣସି ସାଂବିଧାନିକ ସମସ୍ୟା ସମାଧାନ କରି-ପାରନ୍ତି । କିନ୍ତୁ "ଆଦର୍ଶବାଦ" ସମ୍ବନ୍ଧରେ ଜନ-ସାଧାରଣଙ୍କ ମଧ୍ୟରେ ମତଭେଦ ଦେଖା-ଦେଲେ, କୌଣସି ସମସ୍ୟା ସମାଧାନ ହୋଇ ପାରିବ ନାହିଁ । ମୌଳିକ ସମସ୍ୟାଗୁଡ଼ିକର ସମାଧାନ କରିବାର ସୁଯୋଗ ପ୍ରଦାନ କରିବା ହେଉଛି ବ୍ରିଟିଶ ସାମ୍ବିଧାନିକ ପଦ୍ଧତିର ବିଶେଷତ୍ୱ । ରାଜତନ୍ତ୍ରର ଅବସ୍ଥିତି ଫଳରେ ଏହା ସମ୍ଭବ ହୋଇ ପାରିଛି । ରାଣୀ ସଂଯୁକ୍ତ ରାଜ୍ୟର ସାମ୍ରାଜ୍ଞୀ ହୋଇଥିବାରୁ ଯେଉଁ ବ୍ୟକ୍ତି ମୁଖ୍ୟତଃ ସଂଯୁକ୍ତ ରାଜ୍ୟ ବିଷୟରେ ଚିନ୍ତା କରିଥାଏ, ସେହି କେବଳ ରାଣୀଙ୍କର ସେବା କରିପାରେ । ରାଣୀ ସ୍କଟ୍‌ଲଣ୍ଡର ସାମ୍ରାଜ୍ଞୀ ମଧ୍ୟ ହୋଇଥିବାରୁ ସ୍କଟ୍‌ଲଣ୍ଡ ସମ୍ବନ୍ଧରେ ଚିନ୍ତା କରୁଥିବା ସ୍କଟ୍‌ଲଣ୍ଡର ଜାତୀୟତାବାଦୀ ମଧ୍ୟ ରାଣୀଙ୍କର ସେବା କରିପାରେ । ରାଣୀ ନିଜେ ସେଣ୍ଟ ଆନଡ୍ରିଉ କ୍ରସ୍ ଉଡ଼ାଉ ଥିବାରୁ ସେ (ସ୍କଟ୍‌ଲଣ୍ଡର ଜାତୀୟତାବାଦୀ) ମଧ୍ୟ ଉକ୍ତ କ୍ରସ୍ ଉଡ଼ାଇ ପାରନ୍ତି । ୟୁନିୟନ ପତାକା ଉଡ଼ାଇବା ପାଇଁ କେହି ତାଙ୍କୁ ବାଧ କରି ପାରିବେ ନାହିଁ । "ରାଣୀଙ୍କ ଇଂରାଜୀ ଭାଷା" କହିବାକୁ ତାଙ୍କୁ ବାଧ କରା-ଯାଇ ପାରିବ ନାହିଁ । ଶୁଣିବା ପାଇଁ ପ୍ରସ୍ତୁତ ଥିବା ଲୋକ ସହିତ ସେ "ଗ୍ୟାଲିକ" ଭାଷାରେ କଥାବାର୍ତ୍ତା କରି ପାରନ୍ତି, କାରଣ ଇଂରାଜୀ ପରି ଗ୍ୟାଲିକ ମଧ୍ୟ "ଏକ ଜାତୀୟଭାଷା" ରୂପେ ସ୍ୱୀକୃତି ପାଇଛି । ରାଣୀ ସ୍କଟ୍‌ଲଣ୍ଡର ମଧ୍ୟ ରାଣୀ ଥିବାରୁ ସେ ଖୁବ୍ ଜୋର୍ ସହିତ "ଈଶ୍ୱର ରାଣୀଙ୍କୁ ରକ୍ଷା କରନ୍ତୁ" ବୋଲି ସଙ୍ଗୀତ ଗାଇ ପାରେ । ସର୍ବୋପରି ପର୍ବଦିନ ସେଣ୍ଟ୍ ଆନଡ୍ରିଉ ରାତିରେ ଇଂରେଜ ଲୋକ ଯାଇ ରାଣୀଙ୍କର ଓ "ପର୍ବତାଚ୍ଛାଦିତ ଦେଶ"ର ମଙ୍ଗଳ ପାଇଁ ଶୁଭ କାମନା କରିପାରେ; ଥରେ କିମ୍ବା ଦୁଇଥର ନାଚ ପାରେ ଓ "ସମସ୍ତେ ସୁଖରେ ରୁହନ୍ତୁ" ବୋଲି କହି ଏହି ପର୍ବଦିନ କାର୍ଯ୍ୟର ପରିସମାପ୍ତି ଘୋଷଣା କରିପାରେ । ରାଜତନ୍ତ୍ର ବ୍ୟକ୍ତିଗତ ଓ ପରିବର୍ତ୍ତନଶୀଳ, ବାସ୍ତବ ଓ ସ୍ପଷ୍ଟ ହୋଇଥିବାରୁ ଏହା ଏକ ଅତ୍ୟନ୍ତ ଦରକାରୀ ସଂସ୍ଥା ଅଟେ ।

## ରାଣୀ ଓ ରାଜ୍ୟଗୋଷ୍ଠୀ ( The Queen and The Commonwealth):

ଏକ ସାମ୍ରାଜ୍ୟକୁ ସ୍ୱାଧୀନ ଦେଶ ବିଶିଷ୍ଟ ଏକ ରାଜ୍ୟଗୋଷ୍ଠୀରେ ପରିଣତ କରିବାରେ ବ୍ରିଟିଶ "ରାଜତନ୍ତ୍ର"ର ବହୁ ଅବଦାନ ଅଛି । ପୂର୍ବରୁ ଘଟଣାକ୍ରମେ "ମ୍ୟାନ୍" ଓ "ଚ୍ୟାନେଲ୍" ଦ୍ୱୀପପୁଞ୍ଜ ବିଷୟରେ ସୂଚନା ଦିଆଯାଇଛି । ସେଗୁଡ଼ିକ ସମ୍ରାଟଙ୍କ ଅଧୀନରେ ଥିଲେ ସୁଦ୍ଧା ନିଜ ନିଜର ବିଧାନମଣ୍ଡଳ ଗଠନ କରିଛନ୍ତି । ଇଂରେଜମାନେ ( ଏବଂ ସ୍କଟ୍‌ମାନେ ମଧ୍ୟ ) ଆଟଲାଣ୍ଟିକ ମହାସାଗରରେ ବିପଜ୍ଜନକ ଜଳଯାତ୍ରା ପରେ ନିଜ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ସେଠାରେ ବିଧାନମଣ୍ଡଳ ମଧ୍ୟ ପ୍ରତିଷ୍ଠା କରିଥିଲେ । ଏହା ସତ୍ତ୍ୱେ ସେମାନେ ସମ୍ରାଟଙ୍କ ପ୍ରତି ଅନୁରକ୍ତ ରହିଥିଲେ । ଏକଜିଦିଆ ସମ୍ରାଟ୍ ତୃତୀୟ ଜର୍ଜ ଆମେରିକାର ପ୍ରଜାମାନଙ୍କ ସହିତ ଦ୍ୱନ୍ଦ୍ୱ ସୃଷ୍ଟି କରିବା ଦୁର୍ଭାଗ୍ୟର ବିଷୟ ଥିଲା । ସେମାନଙ୍କ ଉପରେ କର ବସାଇବା ପାଇଁ ଗ୍ରେଟ୍ ବ୍ରିଟେନ ସଂସଦର ଅଧିକାର ସମ୍ବନ୍ଧରେ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା । ଏହାର ବିଶଦ୍ ବିବରଣୀ ଇତିହାସରୁ ମିଳେ । ଏହାର ପରିଣାମ ସ୍ୱରୂପ "ସ୍ୱାଧୀନତାର ଘୋଷଣାପତ୍ର" ( The Declaration of Independence ) ସ୍ୱାକ୍ଷରିତ ହୋଇଥିଲା । "ଘୋଷଣାପତ୍ର" ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ଥିଲେ ସୁଦ୍ଧା ପ୍ରସ୍ତୁର ପାଇଁ ଏହା ଏକ ଚିତ୍ତାକର୍ଷକ ରଚନା ଥିଲା । ଏକ ଗଣତାନ୍ତ୍ରିକ ସଂବିଧାନ ପ୍ରଣୟନ କରି ଆମେରିକାର ତେର-ଗୋଟି ଉପନିବେଶ ଯୁକ୍ତରାଷ୍ଟ୍ର ନାମକ ଆମେରିକା ରାଷ୍ଟ୍ର ଗଠନ କରିଥିଲେ । ଏହା ପରେ ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ, ଦକ୍ଷିଣ ଆଫ୍ରିକା, ସିଂହଳ, ପୂର୍ବ ଓ ପଶ୍ଚିମ ଆଫ୍ରିକା, ମାଲୟ ଓ ପ୍ରଶାନ୍ତ ମହାସାଗରୀୟ ଦ୍ୱୀପପୁଞ୍ଜରେ ଉପନିବେଶ ସ୍ଥାପିତ ହୋଇଥିଲା । ଭାରତ କେବେହେଲେ ଏକ ଉପନିବେଶ ନ ଥିଲା । ଅନ୍ୟାନ୍ୟ ଉପନିବେଶ ଅପେକ୍ଷା ଭାରତ ଉପରେ ବେଶୀ ଦୃଷ୍ଟି ଦିଆଯାଉଥିଲା । ସେ ଯାହା ହେଉ ନା କାହିଁକି, ତୃତୀୟ ଜର୍ଜଙ୍କ ଭୁଲର ଆଉ ପୁନରାବୃତ୍ତି ହୋଇ ନ ଥିଲା । ୧୮୩୯ ରେ କାନାଡ଼ାର ସାଂବିଧାନିକ ସମସ୍ୟା ଅନୁଧ୍ୟାନ କରିବାପାଇଁ ଲର୍ଡ଼ ଡରହାମଙ୍କୁ ପଠାଯାଇଥିଲା । କୌଣସି ଉପନିବେଶର ବିଧାନମଣ୍ଡଳ ଥିଲେ ସାମ୍ରାଜ୍ୟର ସ୍ୱାର୍ଥ ବ୍ୟତୀତ ଅନ୍ୟାନ୍ୟ ବିଷୟରେ ଏହା ଆଇନ ପ୍ରଣୟନ କରିପାରିବେ ବୋଲି ତାଙ୍କର ମତ ଥିଲା । ବ୍ରିଟେନରେ କେତେକ ଲୋକ ଏହାକୁ କିପରି କାର୍ଯ୍ୟକାରୀ କରିବାକୁ ହେବ ବୁଝିପାରି ନ ଥିଲେ କିନ୍ତୁ ଏହା ଏକ ସହଜ ବ୍ୟାପାର ଥିଲା । ରାଣୀ ସଂଯୁକ୍ତ ରାଜ୍ୟ ପାଇଁ ମନ୍ତ୍ରୀମାନଙ୍କୁ ନିଯୁକ୍ତ କଲାପରି ସେ କାନାଡ଼ା ପାଇଁ ମନ୍ତ୍ରୀମାନଙ୍କୁ ମଧ୍ୟ ନିଯୁକ୍ତ କରିପାରୁଥିଲେ । ସଂଯୁକ୍ତ ରାଜ୍ୟରେ ରାଣୀଙ୍କର ମନ୍ତ୍ରୀମାନେ ସାମ୍ରାଜ୍ୟର ସ୍ୱାର୍ଥ ପାଇଁ ଦାୟିତ୍ୱ ବହନ କରିବା ସ୍ଥଳେ କାନାଡ଼ାରେ ରାଣୀଙ୍କ ମନ୍ତ୍ରୀମାନେ କାନାଡ଼ା ଶାସନର ଦାୟିତ୍ୱ ବହନ କରୁଥିଲେ । ସମୟାନୁ-କ୍ରମେ ସାମ୍ରାଜ୍ୟର ସ୍ୱାର୍ଥରକ୍ଷା ଦାୟିତ୍ୱ କ୍ରମଶଃ ହ୍ରାସ ପାଇଥିଲା । ସଂଯୁକ୍ତ ରାଜ୍ୟର ସମ୍ରାଟଙ୍କ ମନ୍ତ୍ରୀମାନେ ନିଜ ଦେଶର ଶାସନ ନୀତି ପାଇଁ ଦାୟୀ ରହିଲେ । ପ୍ରଶାନ୍ତରୁ ଆଟଲାଣ୍ଟିକ ମହାସାଗର ପର୍ଯ୍ୟନ୍ତ ଭୂଖଣ୍ଡରେ ଥିବା କାନାଡ଼ାରେ ସମ୍ରାଟ୍‌ଙ୍କ ମନ୍ତ୍ରୀମାନେ କେବଳ କାନାଡ଼ାର ଶାସନ ନୀତି ପାଇଁ ଦାୟୀ ରହିଥିଲେ ।

ଅଳ୍ପ ପର୍ଯ୍ୟନ୍ତ ରାଜତନ୍ତ୍ର ଆବଶ୍ୟକୀୟ ଯୋଗସୂତ୍ର ରୂପେ କାର୍ଯ୍ୟକରି ଆସିଥିଲା । ରାଣୀଙ୍କୁ କେବଳ କାନାଡ଼ାର ରାଣୀ ବୋଲି କହିବା ସମ୍ପୂର୍ଣ୍ଣ ଠିକ୍ ନୁହେଁ । ତାଙ୍କଠାରେ ଆନୁଗତ୍ୟ ପ୍ରକାଶ କରୁଥିବା ସବୁ ରାଜ୍ୟ ପାଇଁ ସେ ରାଣୀ, କିନ୍ତୁ ସେ ଏକାଧିକ ବ୍ୟକ୍ତି ନ ହୋଇ ଜଣେ ମାତ୍ର ରାଣୀ । ଏହା ତତ୍ତ୍ୱଜ୍ଞାନ ସମ୍ବଳିତ ଶାସ୍ତ୍ରପରି ଜଣାପଡ଼ିବ; ମାତ୍ର ବାସ୍ତବ କ୍ଷେତ୍ରରେ ଏହି ତତ୍ତ୍ୱଜ୍ଞାନ ସମ୍ବଳିତ ଶାସ୍ତ୍ରକୁ ପରିତ୍ୟାଗ କରାଯାଇଥାଏ । ରାଣୀ ଏକ ଅନୁଷ୍ଠାନ ନ ହୋଇ ଜଣେ ବ୍ୟକ୍ତି ବିଶେଷ ମାତ୍ର; ସୁତରାଂ ସେ ଏକମାତ୍ର ରାଣୀ । ରାଣୀଙ୍କର ଏକାଧିକ କିମ୍ବା ବହୁ ସରକାର ଅଛନ୍ତି ଓ ସେମାନେ ତାଙ୍କ ନାମରେ ଶାସନ କରିଥାନ୍ତି । ସେମାନଙ୍କ ମଧ୍ୟରୁ ନଅଟି ସରକାର ପରସ୍ପର ଠାରୁ ସ୍ୱାଧୀନ ଅଟନ୍ତି । ଏହି ନଅଟି ସରକାର ହେଉଛନ୍ତି—ସଂଯୁକ୍ତ ରାଜ୍ୟ, କାନାଡ଼ା, ଅଷ୍ଟ୍ରେଲିଆ, ନିଉଜିଲଣ୍ଡ, ଶ୍ରୀ ଲଙ୍କା, ସିଏରାଲିଓନ୍, ଗାମ୍ବିଆ, ଜାମାଇକା, ତ୍ରିନିଦାଦ ଓ ମାଲଟାର ସରକାର । ଅନ୍ୟାନ୍ୟ ସରକାରମାନଙ୍କୁ ରାଣୀଙ୍କର ସଂଯୁକ୍ତ ରାଜ୍ୟ ସରକାର ବେଶୀ କିମ୍ବା କମ୍ ମାତ୍ରାରେ ନିୟନ୍ତ୍ରଣ କରିଥାନ୍ତି ।

ରାଣୀଙ୍କ ସହିତ ସମ୍ପର୍କକୁ "ଆନୁଗତ୍ୟ" କୁହାଯାଇଥାଏ । ବାସ୍ତବ କ୍ଷେତ୍ରରେ "ଆନୁଗତ୍ୟ"ର ଅର୍ଥ ନିର୍ଣ୍ଣୟ କରିବା ସହଜ ନୁହେଁ । ରାଜ୍ୟ ଗୋଷ୍ଠୀର ବିଭିନ୍ନ ଅଞ୍ଚଳରେ ଏହାର ଭିନ୍ନ ଭିନ୍ନ ଅର୍ଥ କରାଯାଇଥାଏ । ସାଧାରଣ ଭାବରେ କହିବାକୁ ଗଲେ ରାଜ୍ୟଗୋଷ୍ଠୀ ଦେଶର ଜଣେ ନାଗରିକକୁ ଜଣେ "ବ୍ରିଟିଶ ପ୍ରଜା" କିମ୍ବା "ରାଜ୍ୟଗୋଷ୍ଠୀ ନାଗରିକ" ବୋଲି କୁହାଯାଇଥାଏ । ଏହି ଉଭୟ ସଂଜ୍ଞା ପରସ୍ପର ପରିବର୍ତ୍ତନୀୟ, କିନ୍ତୁ ଏହାର ଅର୍ଥ ସ୍ଥାନୀୟ ଆଇନ ଉପରେ ନିର୍ଭର କରିଥାଏ । ବ୍ରିଟେନରେ ସଂଯୁକ୍ତ ରାଜ୍ୟ ଓ ଉପନିବେଶ ନାଗରିକର ବ୍ରିଟିଶ ପ୍ରଜାଠାରୁ ବେଶୀ ଅଧିକାର ନ ଥାଏ । ଅନ୍ୟାନ୍ୟ ରାଜ୍ୟଗୋଷ୍ଠୀ ଦେଶ ଗୁଡ଼ିକରେ ସେ ବାସ୍ତବରେ ବିଦେଶୀ ରୂପେ ପରିଗଣିତ ହୋଇଥାଏ ।

୧୯୪୯ ପର୍ଯ୍ୟନ୍ତ ରାଣୀଙ୍କ ସହିତ ଥିବା ସମ୍ପର୍କ ଅନୁସାରେ ରାଜ୍ୟଗୋଷ୍ଠୀର ସଭ୍ୟ ପଦ ନିର୍ଣ୍ଣୟ କରାଯାଉଥିଲା । ସଂଯୁକ୍ତ ରାଜ୍ୟ ମଧ୍ୟରେ ଓ ବାହାରେ "ସମ୍ରାଟ୍ ପଦ" ସରଳ ଭାବେ ସ୍ୱୀକୃତ ହୋଇଥାଏ । ଯେଉଁ ରାଜ୍ୟଗୋଷ୍ଠୀ ଦେଶର ସମ୍ବିଧାନରେ ରାଣୀଙ୍କୁ ଏକ ଅଂଶ ରୂପେ ଗ୍ରହଣ କରାଯାଇଛି, ସେଠାରେ ଏହି ସରଳତା ବିଶେଷଭାବେ ପରିଲକ୍ଷିତ ହୋଇଥାଏ । ସଂଯୁକ୍ତରାଜ୍ୟ ବାହାରେ ରାଣୀ ସାଧାରଣତଃ ଗଭର୍ଣ୍ଣର-ଜେନେରାଲଙ୍କ ମାଧ୍ୟମରେ କାର୍ଯ୍ୟ କରିଥାନ୍ତି । ସମ୍ପୃକ୍ତ ସରକାରଙ୍କ ସୁପାରିଶ ଅନୁସାରେ ରାଣୀ ଗଭର୍ଣ୍ଣର-ଜେନେରାଲଙ୍କୁ ନିଯୁକ୍ତ କରନ୍ତି । ସେ ସାଧାରଣତଃ ଜଣେ ବିଶିଷ୍ଟ ଇଂରେଜ ନାଗରିକ; ବେଳେବେଳେ ସ୍ଥାନୀୟ ଲୋକ ବି ନିଯୁକ୍ତ ହୁଅନ୍ତି । କାନାଡ଼ାର ଗଭର୍ଣ୍ଣର-ଜେନେରାଲ କାନାଡ଼ାର ଜଣେ ଅଧିବାସୀ କିମ୍ବା ସିଂହଳର ଗଭର୍ଣ୍ଣର-ଜେନେରାଲ ଜଣେ ସିଂହଳବାସୀ । ସେମାନେ ପାଞ୍ଚବର୍ଷ କିମ୍ବା ତାହାଠାରୁ ବେଶୀ ସମୟ ପର୍ଯ୍ୟନ୍ତ ସାଂବିଧାନିକ ସମ୍ରାଟ୍ ରୂପେ କାର୍ଯ୍ୟ କରିଥାନ୍ତି । ରାଣୀଙ୍କୁ ପରାମର୍ଶ ନ କରି ସେମାନେ ଦୈନନ୍ଦିନ କାର୍ଯ୍ୟ କରୁଥିଲେ ମଧ୍ୟ ସେମାନେ ନିୟମିତ ଭାବରେ ରାଣୀଙ୍କ ପାଖକୁ

ଚିଠିପତ୍ର ପଠାଉଥାନ୍ତି । ସୁତରାଂ ରାଣୀ ସମ୍ପୃକ୍ତ ଦେଶର ରାଜନୈତିକ ସମସ୍ୟା ଓ ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ସୁପରିଚିତ ଥାଆନ୍ତି । ବକିଙ୍ଗ୍‌ହାମ୍ ପ୍ରାସାଦରେ ପରିଦର୍ଶକମାନେ ରାଣୀଙ୍କ ସହ ସାକ୍ଷାତବେଳେ କିମ୍ବା ରାଣୀ ସମ୍ପୃକ୍ତ ଦେଶ ପରିଭ୍ରମଣରେ ଗଲାବେଳେ, ସେହି ଦେଶ ସମ୍ବନ୍ଧରେ ରାଣୀ ଚିତ୍ତାକର୍ଷକ ଭାଷଣ ଦେଇଥାନ୍ତି । ରାଣୀ କୌଣସି ଦେଶ ଭ୍ରମଣ କରି ଗିବା ସମୟରେ ସେ ଦେଶର ଗଭର୍ଣ୍ଣର-ଜେନେରାଲଙ୍କ କାର୍ଯ୍ୟକୁ ଅସ୍ଥାୟୀ ଭାବରେ ବାତିଲ କରି ଦିଆଯାଇଥାଏ । ଲଣ୍ଡନ କିମ୍ବା ଏଡ଼ିନ୍‌ବରାରେ ଥିବା ସମୟରେ ରାଣୀ ନିଜ ଘରେ ରହିଲା ପରି ଅଟୋଓ୍ୱା କିମ୍ବା କାନ୍‌ବେରାରେ ଥିବା ସମୟରେ ସେ ନିଜ ଘରେ ରହିଲା ପରି ଅନୁଭବ କରିଥାନ୍ତି । ଅନ୍ୟାନ୍ୟ ବିଷୟଗୁଡ଼ିକରେ ମଧ୍ୟ ଆନୁଷ୍ଠାନିକ କାର୍ଯ୍ୟ ସମ୍ପାଦନ କରାଯାଇଥାଏ । "ଈଶ୍ୱର ରାଣୀଙ୍କୁ ରକ୍ଷା କରନ୍ତୁ"—ଏହା ଏକ ଜାତୀୟ ସଙ୍ଗୀତ ନ ହୋଇ ଏକ ରାଜକୀୟ ସଂଗୀତ ଅଟେ । ଏହି ସଙ୍ଗୀତ ରାଣୀଙ୍କ ଅଧୀନସ୍ଥ ଅଞ୍ଚଳଗୁଡ଼ିକରେ ବୋଲାଯାଏ । କାନାଡ଼ାର ନୌବାହିନୀ ଓ ଅଷ୍ଟ୍ରେଲିଆର ବିମାନ ବାହିନୀଙ୍କୁ ମଧ୍ୟ ରାଜକୀୟ ନୌବାହିନୀ ବା ରାଜକୀୟ ବିମାନ ବାହିନୀ କୁହାଯାଏ । କେତେକ ଦେଶରେ ଡାକ ବ୍ୟବସ୍ଥା ( ମେଲ )କୁ ରାଜକୀୟ ଡାକ ବ୍ୟବସ୍ଥା କୁହାଯାଏ ଓ ରାସ୍ତାକୁ ବି ରାଣୀଙ୍କ ରାଜପଥ ବୋଲି କୁହାଯାଇଥାଏ । ସେହି ଦେଶମାନଙ୍କରେ ସରକାରୀ ଚିଠିପତ୍ର ସବୁ "ମହାମାନ୍ୟା ରାଣୀଙ୍କର ସେବା"ରେ ପଠାଯାଇଥାଏ । ମନ୍ତ୍ରୀ ଓ ସରକାରୀ କର୍ମଚାରୀବୃନ୍ଦ ସମ୍ରାଟଙ୍କ ସେବକ ରୂପେ ବିବେଚିତ ହୁଅନ୍ତି । ରାଣୀଙ୍କ ନାମରେ ହୁକୁମ ନାମା ଜାରି ହୁଏ । ରାଣୀ ଦୋଷୀମାନଙ୍କ ପ୍ରତି ଦଣ୍ଡ-ବିଧାନ କରିଥାନ୍ତି; ସାକ୍ଷୀମାନେ ତାଙ୍କ ନାମରେ ସାକ୍ଷ୍ୟ ପ୍ରଦାନ କରନ୍ତି ଓ ବିଚାରପତିମାନେ ମଧ୍ୟ ତାଙ୍କ ନାମରେ ରାୟ ଦିଅନ୍ତି ।

ରାଜ୍ୟଗୋଷ୍ଠୀର ଗୋଟିଏ ଅସୁବିଧା ହେଲା ଯେ ଏଠାରେ ପ୍ରତ୍ୟେକ ଦେଶରେ ରାଜତନ୍ତ୍ର ରହିବା ଆବଶ୍ୟକ । ବ୍ରିଟେନରେ ରାଜତନ୍ତ୍ର ଗୋଟିଏ ଗଣତନ୍ତ୍ରରେ ପରିଣତ ହେବା ପୂର୍ବରୁ ଏହା ଗୋଟିଏ ଅଗଣତାନ୍ତ୍ରିକ ବ୍ୟବସ୍ଥା ବୋଲି ବିବେଚିତ ହେଉଥିଲା । ବେଲଜିୟମ, ନେଦରଲାଣ୍ଡ, ଡେନମାର୍କ, ନରଓ୍ୱେ ଓ ସୁଇଡ଼େନରେ ମଧ୍ୟ ରାଜତନ୍ତ୍ର କ୍ରମଶଃ ଗଣତନ୍ତ୍ରରେ ପରିଣତ ହେଉଥିବାର ପ୍ରମାଣ ମିଳୁଛି । ମୁନିସ୍ପିନିଷ୍ଟ ହେବା ପୂର୍ବରୁ ଜୋସେଫ୍ ଚେମ୍ବରଲେନ ଗଣରାଜ୍ୟରେ ବିଶ୍ୱାସ କରୁଥିଲେ । ଆଉ ମଧ୍ୟ, ଭାରତୀୟ ଜାତୀୟ କଂଗ୍ରେସର ନେତାମାନେ ଭିକ୍ଟୋରିଆଙ୍କ ଯୁଗର ରାଜନୈତିକ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇଥିଲେ ଓ ସେଥିପାଇଁ ଭାରତୀୟ ଶାସନ ବିଧାୟକ ଗୋଟିଏ ସର୍ବ ସାଧାରଣତନ୍ତ୍ରୀୟ ସମ୍ବିଧାନ ପ୍ରଣୟନ କରିଥିଲେ । ଏହି ସମ୍ବିଧାନ ରାଜକୀୟ ଗ୍ରନ୍ଥରେ ପ୍ରଣୀତ ହୋଇଥିବାରୁ ଏହା ଅଧିକ ମୂଲ୍ୟସମ୍ପନ୍ନ ନୁହେଁ । ଭାରତର ପ୍ରଧାନମନ୍ତ୍ରୀଙ୍କ ସୁପାରିଶ ଅନୁସାରେ ରାଣୀଙ୍କ ଦ୍ୱାରା ନିଯୁକ୍ତ ଜଣେ ଗଭର୍ଣ୍ଣର-ଜେନେରାଲଙ୍କ ପରିବର୍ତ୍ତେ ଗୋଟିଏ ନିର୍ବାଚକ ଗୋଷ୍ଠୀ ଦ୍ୱାରା ନିର୍ବାଚିତ ଜଣେ ରାଷ୍ଟ୍ରପତି ନିଯୁକ୍ତ ହେବାର ବ୍ୟବସ୍ଥା ହୋଇଛି । ରାଜତାନ୍ତ୍ରିକ ଦୃଷ୍ଟି-କୋଣରୁ ପର୍ଯ୍ୟବେକ୍ଷଣ କଲେ ପରିଣତି ସମାନ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ପାଞ୍ଚ ବର୍ଷ ପାଇଁ

ଗଭର୍ଣ୍ଣର-ଜେନେରାଲ ପଦରେ ନିଯୁକ୍ତ ନ ହୋଇ ପ୍ରକୃତରେ ପାଞ୍ଚବର୍ଷ ପାଇଁ ରାଷ୍ଟ୍ରପତି ନିର୍ବାଚିତ ହୋଇଥିଲେ । ଏଠାରେ ଦୁଇ ପଦବୀ ମଧ୍ୟରେ ଥିବା ପାର୍ଥକ୍ୟ ଗୁରୁତ୍ୱପୂର୍ଣ୍ଣ ନୁହେଁ । ଭାରତ "ସଙ୍ଘ" ବା "ରାଷ୍ଟ୍ର" ଶବ୍ଦ ବ୍ୟବହାର କରିଥିବା ସ୍ଥଳେ ଅନ୍ୟ ଏକ ରାଜ୍ୟଗୋଷ୍ଠୀ ଦେଶ "ରାଣୀ" କିମ୍ବା "ସମ୍ରାଟ୍" ଶବ୍ଦ ବ୍ୟବହାର କରିଥାଏ । ଭାରତକୁ ସେପରି ବର୍ଣ୍ଣନା କରିବାରେ ବୋଧ ହୁଏ କିଛି ଉପକାରିତା ଅଛି । ଏସିଆର ଇତିହାସର ସୁଦୀର୍ଘ ବିକାଶ ପଥରେ ଭୌଗୋଳିକ ଏକତା କେବଳ ଆଜିକାଲି ପରିଦୃଷ୍ଟ ହୁଏ । ବିରାଟ ଓ ଜନାକୀର୍ଣ୍ଣ ଭୂଭାଗ ମଧ୍ୟରେ ଅନୈକ୍ୟକୁ ରୋକିବା ପାଇଁ ବୋଧହୁଏ "ସଙ୍ଘ" ଶବ୍ଦ ଉପରେ ଗୁରୁତ୍ୱ ଆରୋପ କରାଯାଇଛି । ଅପର ପକ୍ଷରେ ରାଜତାନ୍ତ୍ରିକ ଚିନ୍ତାଧାରା ଭାରତରୁ ସୃଷ୍ଟି । ଭାରତର ପ୍ରତିବେଶୀ ସିଂହଳ ଦ୍ୱୀପରେ ମଧ୍ୟ ଏହା ବିକାଶ-ଲାଭ କରିଥିଲା । ଇଂଲଣ୍ଡ ଜନ୍ମଲାଭ କରିବାର ଏକ ହଜାର ବର୍ଷ ପୂର୍ବରୁ ସେଠାରେ ରାଜତନ୍ତ୍ର ଥିଲା । ସୁତରାଂ ବର୍ତ୍ତମାନର ଅସ୍ପଷ୍ଟ, ଛଳନାପୂର୍ଣ୍ଣ ଓ ଅସ୍ଥାୟୀ ଭାରତୀୟ ଚିନ୍ତାଧାରା ତୁଳନାରେ ରାଜତନ୍ତ୍ର ଗୋଟିଏ ସରଳତର ଚିନ୍ତାଧାରା ଅଟେ । ରାଣୀ ଖବରକାଗଜରେ ନିଜର ଚିତ୍ର ପ୍ରକାଶ କରିପାରନ୍ତି, କିନ୍ତୁ କେହି କେବେହେଲେ ଭାରତୀୟ ସଂଘକୁ ଦେଖିନାହିଁ କିମ୍ବା ଦେଖି ପାରିବ ନାହିଁ ।

ଅଧିକାଂଶ ରାଜନୈତିକ ସମସ୍ୟା ପରି ଏହି ସମସ୍ୟାର ନିଷ୍ପତ୍ତି ଯୁକ୍ତିତର୍କ ଓ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ନ ହୋଇ ଭାବପ୍ରବଣତା ଦ୍ୱାରା ହୋଇଛି । ରାଣୀ ଭିକ୍ଟୋରିଆ ନିଜକୁ ଭାରତ ସାମ୍ରାଜ୍ୟର ସାମ୍ରାଜ୍ଞୀ ବୋଲି ଘୋଷଣା କରିଥିଲେ ଓ ଏଥିରେ ଡିସରେଲିଙ୍କ ଅନୁମୋଦନ ଥିଲେ ମଧ୍ୟ ସୂକ୍ଷ୍ମ ଦୃଷ୍ଟିରେ ଦେଖିଲେ ସେ ଏହାର ବିରୋଧ କରୁଥିଲେ । ପାରମ୍ପରିକ ପ୍ରଥାନୁସାରେ ଶ୍ୱାନକୁ ଖରାପ ନାମ ଦେଲାପରେ ଏହା ମଧ୍ୟ ଖରାପ ବୋଲି ପ୍ରମାଣିତ ହୋଇଥିଲା । ଏସିଆ ମହାଦେଶରେ ଜଣେ ଖରାପ ଲୋକକୁ ମୂର୍ଖ, ଖଳ କିମ୍ବା ଅବିବେକୀ ନ କହି "ସାମ୍ରାଜ୍ୟବାଦୀ" ବୋଲି କୁହାଯାଇଥାଏ । ସର୍ବୋପରି, କଂଗ୍ରେସ ରାଜନୀତିଜ୍ଞମାନେ ଦେଶର ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ ଓ ସେମାନେ ବର୍ତ୍ତମାନ ଦେଶକୁ ଶାସନ କରୁଛନ୍ତି । ସେମାନେ ସମ୍ରାଟଙ୍କୁ ବିରୋଧ କରୁଥିଲେ । ଭାରତର ବ୍ରିଟିଶ ଶାସନ ସମ୍ରାଟଙ୍କ ଶାସନ ଥିଲା । ସୁତରାଂ, ବିରୋଧ କରିବା ଅର୍ଥ କେବଳ ରାଜାଙ୍କୁ ବିରୋଧ ନ କରି ସମ୍ରାଟଙ୍କୁ ମଧ୍ୟ ବିରୋଧ କରାଯାଉ ଥିଲା । ଅନ୍ୟଦିଗରୁ ଦେଖିଲେ, କଂଗ୍ରେସ ରାଜ-ନୀତିଜ୍ଞମାନେ ବିଚକ୍ଷଣ ଓ ବାସ୍ତବବାଦୀ ଥିଲେ । ରାଜ୍ୟଗୋଷ୍ଠୀରେ ରହିବା ଫଳରେ କୌଣସି ଅସୁବିଧା ନ ଥାଇ କେତେକ ସୁବିଧା ରହିଛି ବୋଲି ସେମାନେ ଉପଲବ୍ଧି କରି-ଥିଲେ । ସୁତରାଂ, ଭାରତର ମଧ୍ୟବର୍ତ୍ତୀ ସରକାର ସଂଯୁକ୍ତ ରାଜ୍ୟ ସରକାରଙ୍କୁ ଜଣାଇ ଥିଲେ ଯେ ଭାରତ ସାଧାରଣତନ୍ତ୍ର ରାଷ୍ଟ୍ର ହେବା ପରେ ମଧ୍ୟ ରାଜ୍ୟଗୋଷ୍ଠୀରେ ରହିବାକୁ ଚାହେଁ । ଏହା ଦ୍ୱାରା ସମ୍ରାଟ ରାଜ୍ୟଗୋଷ୍ଠୀର ସଂଯୋଜକ ବୋଲି ଯେଉଁ ପଣ୍ଡିତମାନେ କହୁଥିଲେ ସେମାନଙ୍କ ବୁଦ୍ଧି ବଣା ହୋଇ ଯାଇଥିଲା । ଭାରତର ପ୍ରଧାନମନ୍ତ୍ରୀଙ୍କ ସହିତ ରାଜ୍ୟଗୋଷ୍ଠୀର ଅନ୍ୟାନ୍ୟ ପ୍ରଧାନ ମନ୍ତ୍ରୀମାନେ ହ୍ୱାଇଟହଲକୁ ନିମନ୍ତ୍ରିତ ହୋଇଥିଲେ ଓ ସେମାନେ କେତେ ଜଣ ପଣ୍ଡିତଙ୍କୁ

ସାଙ୍ଗରେ ନେଇଥିଲେ । ଭାରତ ସମ୍ରାଟଙ୍କ ସହିତ ସଂଯୋଗ ଛିନ୍ନ କରି ନୂତନଭାବେ ସମ୍ପର୍କ ପ୍ରତିଷ୍ଠା କରିପାରେ ବୋଲି ପ୍ରଧାନମନ୍ତ୍ରୀମାନେ ରାଜି ହୋଇଥିଲେ । ଏହାର ଏକ ସୂତ୍ର ବାହାର କରିବା ପାଇଁ ପଣ୍ଡିତମାନଙ୍କୁ କୁହାଯାଇଥିଲା । ବାସ୍ତବିକ, ସମ୍ମୁକ୍ତ ରାଜ୍ୟ ସରକାରଙ୍କ ସହିତ ନିଶ୍ଚିତଭାବରେ ପରାମର୍ଶ କରି ଭାରତ ସରକାର ଏକ ସୂତ୍ର ମଧ୍ୟ ବାହାର କରିଥିଲେ । ଭାରତ ସହିତ ସମ୍ପର୍କ ବିଷୟ ବିଚାର ହେବାବେଳେ ସମ୍ରାଟ "ରାଜ୍ୟ ଗୋଷ୍ଠୀର ମୁଖ୍ୟ" ( **Head of the Commonwealth** ) ରୂପେ ରହିବେ ବୋଲି ସ୍ଥିର ହେଲା । ମହାମାନ୍ୟା ରାଣୀଙ୍କର ସବୁ ରାଜ୍ୟଗୋଷ୍ଠୀ ସରକାର ଏହି ସଙ୍କ ସହିତ ଏକମତ ହୋଇଥିଲେ । ରାଜ୍ୟଗୋଷ୍ଠୀର ମୁଖ୍ୟ ସେମାନଙ୍କ ପାଇଁ ସମ୍ରାଟ୍ ରୂପେ ରହନ୍ତୁ ବୋଲି ସେମାନେ ଚାହୁଁ ଥିବାରୁ ଅସୁବିଧା ଦେଖାଦେଇଥିଲା । ଯେଉଁମାନେ "ସମ୍ରାଟଙ୍କ" ପରିବର୍ତ୍ତେ "ରାଜ୍ୟ ଗୋଷ୍ଠୀର ମୁଖ୍ୟ" ପଦ ରଖିବାକୁ ଚାହୁଁ ଥିଲେ ଓ ଅନ୍ୟ ଯେଉଁମାନେ "ରାଜ୍ୟଗୋଷ୍ଠୀର ମୁଖ୍ୟ" ପରିବର୍ତ୍ତେ "ସମ୍ରାଟ୍" ପଦ ରଖିବାକୁ ଚାହୁଁ ଥିଲେ, ସେମାନଙ୍କ ମଧ୍ୟରେ ଆପୋଷ ସମାଧାନ କରିବା ଏକ ସମସ୍ୟା ରୂପେ ଦେଖାଦେଇଥିଲା । ବହୁ ପଣ୍ଡିତ ଏହି ସମାଧାନ ସୂତ୍ର ବାହାର କରିବା ପାଇଁ ପରବର୍ତ୍ତୀ ଛତିଶ ଘଣ୍ଟାକାଳ ବ୍ୟସ୍ତ ରହିଥିଲେ । ପରିଶେଷରେ ସେମାନେ ଗୋଟିଏ ମିଳିତ ରାଜନାମାରେ ଉପନୀତ ହୋଇଥିଲେ ।

ଉପରୋକ୍ତ ବିଷୟକୁ ଅତି ରଞ୍ଜିତ କରିବା ଉଚିତ ନୁହେଁ । ସମ୍ରାଟଙ୍କ ନାମରେ ଥିବା କାଳ୍ପନିକ ଯୋଗସୂତ୍ରକୁ ବାଦ୍ ଦେଲେ ରାଜ୍ୟଗୋଷ୍ଠୀର ସଦସ୍ୟମାନଙ୍କ ମଧ୍ୟରେ ନାନା କ୍ଷେତ୍ରରେ ଦୃଢ଼ ସମ୍ପର୍କ ରହିଥିବା କଥା ଭାରତ ରାଜ୍ୟଗୋଷ୍ଠୀରେ ରହିବାକୁ ଇଚ୍ଛା ପ୍ରକାଶ କରିଥିବାରୁ ପ୍ରମାଣିତ ହୋଇଥିଲା । ଇଂଲଣ୍ଡର ( ଏହା ସମ୍ମୁକ୍ତ ରାଜ୍ୟ ନ ଥାଇ ପ୍ରଥମେ ଇଂଲଣ୍ଡ ଥିଲା ) ରାଜନୀତିଜ୍ଞ ଓ ସାଂବିଧାନିକ ଆଇନଜ୍ଞମାନେ ଯେଉଁ ଚମତ୍କାରିକ ସରଳ ସୂତ୍ର ବାହାର କରିଥିଲେ ତାହା ପ୍ରଶଂସନୀୟ ଥିଲା । ଭାରତବର୍ଷର ଉଦାହରଣକୁ ପାକିସ୍ଥାନ ଓ ଆଫ୍ରିକାର ଅନ୍ୟାନ୍ୟ ଦେଶଗୁଡ଼ିକ ଅନୁସରଣ କରିଥିଲେ ।

## ରାଣୀଙ୍କ ବ୍ୟକ୍ତିଗତ ପରିପ୍ରକାଶ ( The Queen in Person ) :

ରାଣୀଙ୍କ ନାମରେ ଯେଉଁ କାର୍ଯ୍ୟ ସମ୍ପାଦନ କରାଯାଉଛି, ରାଣୀ ନିଜେ ସେହି କାର୍ଯ୍ୟର ପ୍ରତ୍ୟେକ ବିଷୟ ଜାଣି ପାରୁଥିଲେ ସେ ଜଣେ ସର୍ବଜ୍ଞ ହୁଅନ୍ତେ । ପ୍ରତ୍ୟେକ ଦିନ ସହସ୍ର ସହସ୍ର ଲୋକ ତାଙ୍କ ନାମରେ କାର୍ଯ୍ୟ ସମ୍ପାଦନ କରିଥାନ୍ତି ଓ ଶହଶହ ଲୋକ ମଧ୍ୟ ତାଙ୍କ ପ୍ରତିନିଧି-ମାନଙ୍କ ସହ ସମ୍ପର୍କ ସ୍ଥାପନ କରିଥାନ୍ତି । ବ୍ୟକ୍ତିଗତ ଭାବରେ ରାଣୀ ଏହି ବିଷୟରେ କିଛି ଜାଣି ନ ଥାନ୍ତି । ଏହି ଲେଖା ଲେଖାହେବା ଦିନ ସକାଳେ ରାଣୀ ସିଂହଳ ବିଶ୍ୱବିଦ୍ୟାଳୟର କୁଳପତିଙ୍କଠାରୁ କେତେକ ଚିଠି ପାଇଥିଲେ । ଉଦାହରଣସ୍ୱରୂପ, ରାଣୀଙ୍କ ପ୍ରତିଶ୍ରୁତି ଅନୁସାରେ ଜୁଲାଇ ମାସ ସୁଦ୍ଧା ବୈଦ୍ୟୁତିକ ସଂଯୋଗ ଯୋଗାଇ ଦେବା ସମ୍ବନ୍ଧରେ କୁଳପତି ଜାଣିବାକୁ ଚାହିଁଥିଲେ । ଟେଲିଫୋନ ଲଗାଇବା ପାଇଁ ଅନୁରୋଧ କରିଥିବା ଚିଠିର

ଉତ୍ତର ପାଇବା ପାଇଁ ମଧ୍ୟ ଆଶା ପ୍ରକାଶ କରିଥିଲେ । ବିଶ୍ୱବିଦ୍ୟାଳୟର ଆସବାବପତ୍ର ରଖିବା ପୂର୍ବରୁ ଘର ସଫା କରିବା ପାଇଁ ରାଣୀଙ୍କ ନିର୍ଦ୍ଦେଶ ପାଇଲେ ସେ ଉପକୃତ ହେବେ ବୋଲି ଜଣାଇଥିଲେ । ଏହିପରି ବିଭିନ୍ନ ବିଷୟରେ କୁଲପତି ରାଣୀଙ୍କ ପାଖକୁ ପତ୍ର ଲେଖିଥିଲେ । ଇଂଲଣ୍ଡରେ ଏହିପରି କାର୍ଯ୍ୟ ପ୍ରତ୍ୟେକ ଦିନ ଚାଲୁଥିବାର ଦେଖାଯାଏ ।

ସାଧାରଣତଃ ରାଣୀ କହିଲେ "ରାଜମୁକୁଟ"କୁ ବୁଝାଇଥାଏ । ଶେଷୋକ୍ତ ଶବ୍ଦଟି ଏକ ଆଇନଗତ ପରିକଳ୍ପନା ମାତ୍ର । ଜଣେ ବ୍ୟକ୍ତି ରାଜନୈତିକ କାର୍ଯ୍ୟାବଳୀର ଘଟଣା ପ୍ରବାହକୁ ଅନ୍ୱେଷଣ କଲେ ସ୍ୱଦେହରେ ସମ୍ରାଜ୍ଞୀଙ୍କୁ ଦେଖିବାକୁ ପାଇଥାଏ । "ମହାମାନ୍ୟା ରାଣୀଙ୍କ କାର୍ଯ୍ୟରେ" ବ୍ୟବହୃତ ହେଉଥିବା ଲକ୍ଷ ଲକ୍ଷ କାଗଜଗୁଡ଼ିକରେ ରାଣୀଙ୍କ ନିଜ ହସ୍ତରେ ଦସ୍ତଖତ କରିଥିବା, "ଏଲିଜାବେଥ ଆର୍" ସିଲ୍ ରହିଥାଏ । ରାଣୀଙ୍କ ସମସ୍ତ ଓ ଶକ୍ତିର ଅପବ୍ୟବହାର ନ କରିବା ପାଇଁ ଆଇନାନୁମୋଦିତ କ୍ଷମତା ସହ ଏହି ପ୍ରତିଲିପି ଛପା ହୋଇଥିଲେ ମଧ୍ୟ ଏହା ଏକ କଳ୍ପନା ମାତ୍ର । ରାଣୀ ବାସ୍ତବରେ ବ୍ୟକ୍ତିଗତ ଭାବରେ କେତେବେଳେ କେଉଁ କାର୍ଯ୍ୟରେ ସଂପୃକ୍ତ ଥାଆନ୍ତି ତାହା ନିର୍ଣ୍ଣୟ କରିବା କଷ୍ଟକର । ଏହା ମୁଖ୍ୟତଃ ରାଣୀଙ୍କ ସାମର୍ଥ୍ୟ ଓ ଇଚ୍ଛା ଉପରେ ନିର୍ଭର କରିଥାଏ ।

ଗୋଟିଏ କାର୍ଯ୍ୟ ନିଷ୍ଠ ଭାବରେ କେବଳ ରାଣୀଙ୍କ ଦ୍ୱାରା ସଂପାଦିତ ହେବା ଉଚିତ । ସଂଯୁକ୍ତ ରାଜ୍ୟରେ ସରକାର ରହିବା ବିଷୟ ରାଣୀଙ୍କର ନିଶ୍ଚିତ ଭାବରେ ଦେଖିବା କଥା । ଘଟଣାକ୍ରମେ ରାଜ୍ୟଗୋଷ୍ଠୀରେ ନଅ କିମ୍ବା ଦଶଟି ସରକାର ରହିବା କଥା ମଧ୍ୟ ସେ ଦେଖନ୍ତି । କିନ୍ତୁ ଏହି କାର୍ଯ୍ୟ ସେ ତାଙ୍କ ସହାୟକମାନଙ୍କ ମାଧ୍ୟମରେ କରିଥାନ୍ତି । ଚାର୍ଲସ ଡିକେନସ୍ଙ୍କ ପରି ଦଶଟି ବିଷୟ ଏକାଥରେ କହି ଆମ୍ଭେମାନେ ଏଠାରେ ସନ୍ଦେହ ସୃଷ୍ଟି କରିବା ଉଚିତ ନୁହେଁ । ସରକାର ପରିବର୍ତ୍ତନ ସହିତ ସାଧାରଣ ଲୋକ ଜଡ଼ିତ ନୁହେଁ । ଉଦାହରଣସ୍ୱରୂପ, ଏସ୍ ଡବଲ୍ୟୁ. ଓ୍ୟାନ୍, ଅଞ୍ଚଳରେ ଥିବା ହ୍ୱାଇଟହଲର ଦଶ ନମ୍ବର ଡାଉନିଙ୍ଗ୍ ଷ୍ଟ୍ରୀଟ ସ୍ଥିତ ପ୍ରଧାନମନ୍ତ୍ରୀଙ୍କ ବାସଭବନରୁ କେଉଁ ଦିନ ସାର୍ ଆଲେକ୍ ଗଲେ ଓ ଉଇଲସନ୍ ଆସିଲେ ତାହା ସାଧାରଣ ଲୋକେ ମନେ ରଖନ୍ତି ନାହିଁ । ୧୮୩୪ରେ ଡ୍ୟୁକ ଅଫ୍ ଓ୍ୱେଲିଙ୍ଗଟନଙ୍କ କହିବା ଅନୁସାରେ, "ରାଜାଙ୍କ ସେବାକାର୍ଯ୍ୟ ନିଶ୍ଚିତ ଭାବରେ ଚାଲୁ ରହିବା କଥା ।" ସୁତରାଂ ସାର୍ ରବର୍ଟ ପିଲ୍ ରୋମ୍‌ରେ ଥିଲାବେଳେ ମଧ୍ୟ ସେ ସରକାର ପରିଚାଳନା ଦାୟିତ୍ୱ ବହନ କରିଥିଲେ ଓ ତତ୍‌କାଳୀନ ସମ୍ବାଦପତ୍ର ଗୁଡ଼ିକ ଏହାକୁ "ପ୍ରସିଦ୍ଧ ନଅ ଦିନ ସମସ୍ତ" ବୋଲି ଅଭିହିତ କରିଥିଲେ । ଅତଏବ ଏହି କ୍ଷେତ୍ରରେ ରାଣୀଙ୍କ ସେବାକାର୍ଯ୍ୟ ଚାଲୁ ରଖିବା ପାଇଁ ରାଣୀ ବ୍ୟକ୍ତିଗତ ଭାବରେ ନିଶ୍ଚୟ ବ୍ୟବସ୍ଥା କରିଥାନ୍ତି ।

ସାଧାରଣତଃ ଏହି କାର୍ଯ୍ୟ ଅତି ସହଜ ଅଟେ । ଉଦାହରଣସ୍ୱରୂପ, କୁହାଯାଇପାରେ ଯେ ୧୯୬୪ରେ ବେତାର ମାଧ୍ୟମରେ ଆମ୍ଭେମାନେ ନିର୍ବାଚନ ଫଳାଫଳ ଶୁଣିଲୁ ପରେ କ'ଣ ଘଟିବ ତାହା ଜାଣିଥିଲୁ । ନିର୍ବାଚନ ଫଳାଫଳ ପ୍ରକାଶ ପାଇବା ପରେ ସାର୍

ଆଲେକ ବକିଂହାମ୍ ରାଜପ୍ରାସାଦକୁ ଯାଇ ଇସ୍ତଫା ପ୍ରଦାନ କରିଥିବେ । ରାଣୀ ତାଙ୍କୁ ପ୍ରଧାନମନ୍ତ୍ରୀ ଭାବରେ ତାଙ୍କ କାର୍ଯ୍ୟ ପାଇଁ ଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ବ୍ୟବସ୍ଥା କଲା ପର୍ଯ୍ୟନ୍ତ କ୍ଷମତାରେ ରହିବାକୁ ଅନୁରୋଧ କରିଥିବେ । ତାହାପରେ ସରକାର ଗଠନ କରିବାକୁ ରାଣୀ ଉଇଲସନ୍‌ଙ୍କୁ ଆମନ୍ତ୍ରଣ କରିଥିବେ । ଏହି ଅନୁରୋଧ ପାଇଁ ଉଇଲସନ୍ ଆଶ୍ଚର୍ଯ୍ୟ ହୋଇ ନ ଥିବେ । ନିୟମାନୁସାରେ ତାଙ୍କର ବନ୍ଧୁମାନଙ୍କ ସହ ପରାମର୍ଶ କରି ଉଇଲସନ୍ ସରକାର ଗଠନ କରିବାକୁ ସମ୍ମତି ପ୍ରକାଶ କରିଥିବେ । ସମ୍ବିଧାନରେ ଏହିପରି ବ୍ୟବସ୍ଥା କରାଯାଇଥିବାରୁ ଏହି କାର୍ଯ୍ୟ ଅତି ସରଳ । ନିର୍ବାଚନ ପରେ ସଂସଦରେ ସଂଖ୍ୟାଗରିଷ୍ଠତା ହରାଇ ଥିବାରୁ ଶାସନ କରିବା ପାଇଁ ଟୋରି ଦଳର ଅଧିକାର କିମ୍ବା କ୍ଷମତା ନ ଥିଲା । ଶ୍ରମିକ ଦଳ ସଂସଦରେ ସଂଖ୍ୟାଗରିଷ୍ଠତା ହାସଲ କରିଥିବାରୁ ସରକାର ଗଠନ କରିବା ଏହି ଦଳର ନେତାମାନଙ୍କ ଅଧିକାର ଓ କର୍ତ୍ତବ୍ୟ ଥିଲା । ଏହି କାର୍ଯ୍ୟ ଅତି ସରଳ ହେଲେ ବି ଜଣେ କେହି ଏହି କାର୍ଯ୍ୟ ସଂପାଦନ କରିବା କଥା ବୋଲି ପାଶୋରି ଦିଆଯାଇ ପାରିବ ନାହିଁ । ଧରନ୍ତୁ, ଜଣେ ପରାଜିତ ପ୍ରଧାନମନ୍ତ୍ରୀ ଇସ୍ତଫା ପ୍ରଦାନ କଲେ ନାହିଁ । ଏହାର ଉତ୍ତରରେ କୁହାଯାଇପାରେ ଯେ କମନ୍ସ ସଭା ତାର ପ୍ରଥମ ବୈଠକରେ ତାଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଗ୍ରହଣ କରିବ । ବାସ୍ତବିକ, ୧୮୬୮ ପର୍ଯ୍ୟନ୍ତ ଏହା ଏକ ସାଧାରଣ ପଦ୍ଧତି ଥିଲା । ଧରନ୍ତୁ, ଏହାପରେ ମଧ୍ୟ ଜଣେ ପ୍ରଧାନମନ୍ତ୍ରୀ ଇସ୍ତଫା ପ୍ରଦାନ କଲେ ନାହିଁ । ଏହି ଘଟଣା ବ୍ରିଟେନରେ କେବେହେଲେ ଘଟିନାହିଁ, କାରଣ ସେଠାରେ ରାଜନୈତିକ ନେତାମାନେ ସର୍ବଦା ନିୟମ ମାନି ଚଳିଆସନ୍ତି । ଯଦି ଏହା କେବେ ଘଟେ, ତେବେ ଏଥିରେ ରାଣୀଙ୍କର କର୍ତ୍ତବ୍ୟ ଅଛି । ରାଣୀ ସମ୍ପୃକ୍ତ ପ୍ରଧାନ ମନ୍ତ୍ରୀଙ୍କୁ ବରଖାସ୍ତ କରି ବିଜୟ ହାସଲ କରିଥିବା ବିରୋଧୀ ଦଳର ନେତାଙ୍କୁ ସରକାର ଗଠନ କରିବା ପାଇଁ ଆମନ୍ତ୍ରଣ କରିପାରନ୍ତି ।

ସମସ୍ତେ ନିୟମ ମାନିବାକୁ ପ୍ରସ୍ତୁତ ଥିଲେ ମଧ୍ୟ ଏହି କାର୍ଯ୍ୟ ସର୍ବଦା ସହଜ ନୁହେଁ । ବ୍ରିଟିଶ ନିର୍ବାଚକ ଦ୍ୱିଦଳୀୟ ବ୍ୟବସ୍ଥାକୁ ପସନ୍ଦ କରିଥାଏ, ଫଳରେ ଗୋଟିଏ ଦଳ କ୍ଷମତାକୁ ଆସିଲେ ଆଉ ଗୋଟିଏ ଦଳ ବାହାରେ ରହିଥାଏ । କିନ୍ତୁ ଏଥିରେ ମଧ୍ୟ ପରିବର୍ତ୍ତନ ଘଟିଥାଏ । ଉଦାହରଣସ୍ୱରୂପ, ୧୯୧୮ରୁ ୧୯୩୫ ପର୍ଯ୍ୟନ୍ତ ତିନିଗୋଟି ରାଜନୈତିକ ଦଳ କାର୍ଯ୍ୟ କରୁଥିଲେ । ସମପ୍ରଭାବଶାଳୀ ତିନିଗୋଟି ରାଜନୈତିକ ଦଳ ଥିଲେ ଦେଶରେ ତିନି ପ୍ରକାରର ସଂଖ୍ୟାନ୍ୟୁନ କିମ୍ବା ତିନି ପ୍ରକାରର ମିଳିତ ସରକାର ପ୍ରତିଷ୍ଠା ହୋଇପାରେ । ଏପରି ସ୍ଥଳେ ତିନିଗୋଟି ଦଳର ନେତାମାନଙ୍କ ମଧ୍ୟରୁ ହୁଏତ କେହି ପ୍ରଧାନମନ୍ତ୍ରୀ ନ ହୋଇ ପାରନ୍ତି । ଉଭୟ ଦଳ ପକ୍ଷରେ ଗ୍ରହଣୀୟ ଜଣେ ମଧ୍ୟମପନ୍ଥୀ ବ୍ୟକ୍ତି ମିଳିତ ସରକାରର ପ୍ରଧାନମନ୍ତ୍ରୀ ହୋଇପାରନ୍ତି । ଲର୍ଡ଼ ଆବରଡିନଙ୍କ ନେତୃତ୍ୱରେ ଗଠିତ ହୋଇଥିବା ମିଳିତ ମନ୍ତ୍ରିମଣ୍ଡଳ ସମୟରେ ତାଙ୍କ ଅସ୍ଥିର ମନୋଭାବ ଯୋଗୁ ବ୍ରିଟେନକୁ କ୍ରିମିଆ ଯୁଦ୍ଧରେ ଯୋଗଦେବାକୁ ପଡ଼ିଥିଲା ।

ପୁନଶ୍ଚ, ମୃତ୍ୟୁ କିମ୍ବା ଇସ୍ତଫା ଫଳରେ ପ୍ରଧାନମନ୍ତ୍ରୀ ପଦ ହଠାତ୍ ଖାଲି ପଡ଼ିଲେ ଓ ଦଳର ଜଣେ ସର୍ବସମ୍ମତ ନେତା ନ ଥିଲେ ରାଣୀ କେବଳ ପ୍ରଧାନମନ୍ତ୍ରୀଙ୍କୁ ନ ବାଛି ଦଳର ନେତାଙ୍କୁ ମଧ୍ୟ ବାଛିଥାନ୍ତି । ଏହା ଗୋଟିଏ ସହଜ କାର୍ଯ୍ୟ ନ ହୋଇପାରେ । ଅଭିନେତ୍ରୀମାନଙ୍କ ପରି ରାଜନୀତିଜ୍ଞମାନେ ନିଜ ନାମକୁ ଜନତା ଆଗରେ ରଖିବାକୁ ପସନ୍ଦ କରିଥାନ୍ତି ଓ ଅଭିନେତ୍ରୀମାନଙ୍କ ପରି ସେମାନେ ମଧ୍ୟ ଅଳ୍ପକେ ଉତ୍ତେଜିତ ହୋଇ ପଡ଼ିଥାନ୍ତି । ଏଥିରେ ମଧ୍ୟ ସାଂବିଧାନିକ ସମସ୍ୟାମାନ ସୃଷ୍ଟି ହୋଇପାରେ । ୧୯୨୩ରେ ବୋନାର ଲ ( Bonar Law )ଙ୍କ ଇସ୍ତଫା ପରେ ପଞ୍ଚମ ଜର୍ଜଙ୍କୁ ଜଣେ ଜାଠ ପ୍ରଧାନ-ମନ୍ତ୍ରୀ ବାଛିବାକୁ ପଡ଼ିଥିଲା । ବହୁ ଜାଠନେତା ବିରୋଧୀ ଦଳରେ ଥିଲେ; ସେମାନେ ମିଳିତ ସରକାର ଗଢ଼ିବା ପାଇଁ ଲୟଡ଼ ଜର୍ଜଙ୍କୁ ସମର୍ଥନ କରିଥିଲେ । ବଲଡ଼ୁଇନ ଓ ଲର୍ଡ଼ କର୍ଜନଙ୍କ ମଧ୍ୟରୁ ଜଣକୁ ବାଛିବାକୁ ପଡ଼ିଥିଲା । ମନ୍ତ୍ରୀ ଭାବରେ ବଲଡ଼ୁଇନଙ୍କର ଖୁବ୍ କମ୍ ଅଭିଜ୍ଞତା ଥିଲା । କର୍ଜନ ଜଣେ ଲର୍ଡ଼ ଥିବାରୁ ସେ ଜନସାଧାରଣଙ୍କ ମଧ୍ୟରେ ସେତେ ପ୍ରିୟ ନ ଥିଲେ ଓ ଆଭିଜାତ୍ୟ ହିଁ ତାଙ୍କର ଦୋଷ ରୂପେ ବିବେଚିତ ହୋଇଥିଲା ।

୧୯୩୯ରେ ପଶ୍ଚିମ ଆଫ୍ରିକାରେ ଯେଉଁ ସମସ୍ୟା ଦେଖା ଦେଇଥିଲା, ତାହା ହୁଏତ ବ୍ରିଟେନରେ ଦେଖାଦେଇ ପାରେ । ସେଠାରେ ମୁକ୍ତି-ଘୋଷଣା ପରି ଏକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ପ୍ରଧାନମନ୍ତ୍ରୀ ତାଙ୍କ ସହକର୍ମୀମାନଙ୍କ ସହିତ ଏକମତ ହୋଇ ପାରି ନ ଥିଲେ । ପ୍ରଧାନମନ୍ତ୍ରୀ ଇସ୍ତଫା ଦେବା ପରିବର୍ତ୍ତେ ସଂସଦକୁ ଭାଙ୍ଗିଦେବା ପାଇଁ ଗଭର୍ଣ୍ଣର-ଜେନେରାଲଙ୍କୁ ପରାମର୍ଶ ଦେଇଥିଲେ । ନିର୍ବାଚନ ପରେ ଆଉ ଥରେ ନିର୍ବାଚିତ ହୋଇ ନିଜର ଇଚ୍ଛାନୁସାରେ ସରକାର ପୁନର୍ଗଠନ କରିପାରିବେ ବୋଲି ସେ ଆଶା ପୋଷଣ କରିଥିଲେ । ସମ୍ରାଟଙ୍କ ବିଶେଷାଧିକାର ମଧ୍ୟରେ ଥିବା ସଂସଦ ଭଙ୍ଗ କ୍ଷମତାର ଏତଦ୍ୱାରା ଅପବ୍ୟବହାର ହେବ ବୋଲି ଭାବି, ଗଭର୍ଣ୍ଣର-ଜେନେରାଲ ତାଙ୍କ ପରାମର୍ଶ ଗ୍ରହଣ କରି ନ ଥିଲେ । ଫଳରେ ପ୍ରଧାନମନ୍ତ୍ରୀ ଇସ୍ତଫା ଦେଇଥିଲେ ଓ ଜଣେ ନୂତନ ପ୍ରଧାନମନ୍ତ୍ରୀ ବାଛିବା ଦାୟିତ୍ୱ ଗଭର୍ଣ୍ଣର-ଜେନେରାଲଙ୍କ ଉପରେ ପଡ଼ିଥିଲା । ଅବଶ୍ୟ ଏଠାରେ ସେହି ଦାୟିତ୍ୱ ସମ୍ପାଦନ କରିବା ତାଙ୍କ ପକ୍ଷରେ ସହଜ ଥିଲା ।

ଉପରୋକ୍ତ ଉଦାହରଣ ମାନଙ୍କରୁ ଜଣାଯାଏ ଯେ ରାଣୀ କେବଳ ଜଣେ ଆଲଙ୍କାରିକ ରାଷ୍ଟ୍ରମୁଖ୍ୟ ନୁହନ୍ତି । ସେ ନିଜେ ଜାହାଜ ଚଳାନ୍ତି ନାହିଁ, କିନ୍ତୁ ଜାହାଜ ଚଳାଇବା ପାଇଁ ଠିକ୍ ସ୍ଥାନରେ ଲୋକ ଅଛନ୍ତି କି ନାହିଁ ଦେଖିବା ତାଙ୍କର କାର୍ଯ୍ୟ । ଏହିପରି ପରିସ୍ଥିତି ବେଳେ ବେଳେ ଦେଖା ଦେଇଥାଏ; ତାହାକୁ ଜାଣିବା ସବୁବେଳେ ସହଜ ନୁହେଁ । ୧୯୩୭ରେ ନେଭିଲ ଚେମ୍ବରଲେନ୍‌ଙ୍କ ପଛରେ ବିପୁଳ ସଂଖ୍ୟାଗରିଷ୍ଠତା ଥିଲା । କିନ୍ତୁ ୧୯୪୦ ବେଳକୁ ଷଷ୍ଠ ଜର୍ଜ ଶ୍ରମିକ ଦଳର ସମର୍ଥନ ପାଇପାରିବା ଭଳି ଜଣେ ଜାଠ ପ୍ରଧାନମନ୍ତ୍ରୀ ଖୋଜିଥିଲେ । ସେ ଚର୍ଚ୍ଚିଲଙ୍କୁ ଏଥିପାଇଁ ଯୋଗ୍ୟ ବୋଲି ଭାବିଥିଲେ ।

ଅବଶ୍ୟ ଉପରୋକ୍ତ ଘଟଣାଗୁଡ଼ିକ କେତେକ ବିଶେଷ ପରିସ୍ଥିତିରେ ଦେଖା-ଦେଇଥାଏ । ସରକାରଙ୍କ ପକ୍ଷରେ ସଂଖ୍ୟାଗରିଷ୍ଠତା ଥିବାରୁ ସରକାରୀ ଦଳ ସାଧାରଣତଃ ଭଲ ଭାବରେ କାର୍ଯ୍ୟ କରିଥାଏ । ସନ୍ତୋଷର ନିର୍ବାଚନରେ ହାରିଗଲେ, ବିରୋଧୀ ଦଳ ସରକାର ଗଠନ କରେ । ସରକାରୀ ଦଳ ସ୍ଥିର ରହିବା ପାଇଁ ରାଣୀ ଇଚ୍ଛା ପ୍ରକାଶ କଲେ, ତାହା ସ୍ଥିର ରହେ । କେବଳ ସୈନ୍ୟବାହିନୀ ସମସ୍ୟାକୁ ବାଦ୍ ଦେଲେ ଅନ୍ୟାନ୍ୟ ବିଷୟରେ ସପ୍ତମ ଏଡ଼ୱାର୍ଡ଼ ଆଗ୍ରହ ପ୍ରକାଶ କରୁ ନ ଥିଲେ । ତେଣୁ ତାଙ୍କର ପ୍ରଧାନମନ୍ତ୍ରୀ ଥିବା ବାଲଫୋର, କାମ୍ପବେଲ-ବାନରମ୍ୟାନ ଓ ଆସକ୍ୱିଥ ତାଙ୍କୁ ଉପେକ୍ଷା କରିବାକୁ ଚେଷ୍ଟା କରିଥିଲେ । ଅପର ପକ୍ଷରେ ରାଣୀ ତାଙ୍କ ପିତା କିମ୍ବା ରାଣୀ ଭିକ୍ଟୋରିଆଙ୍କ ପରି ସଜାଗ ରହିଲେ ବହୁତ ପ୍ରଭାବ ପକାଇ ପାରିବେ ।

ସମୟସାପେକ୍ଷ ହେଲେ ମଧ୍ୟ କ୍ଷମତାରେ ଥିବା ଦଳ ଦେଶର ନୀତି ନିର୍ଦ୍ଧାରଣ କରିଥାନ୍ତି । ବିନା ଆଲୋଚନା କିମ୍ବା ଯୁକ୍ତିତର୍କ ଦ୍ୱାରା ଦଳର ନୀତି ନିର୍ଦ୍ଧାରିତ ହେବା କ୍ୱଚିତ୍ ଦେଖାଯାଇଥାଏ । "ଜାଠ" ଓ "ଶ୍ରମିକ" ମାର୍କା ଥିବା ଦୁଇଟି ଧାରା ମଧ୍ୟରୁ ଗୋଟିଏ ଧାରାକୁ ବାଛି ନେବା ପ୍ରଶ୍ନ ଏଠାରେ ଉଠେ ନାହିଁ । ଏକ ଔଷଧ ପ୍ରସ୍ତୁତକାରୀ ଦୋକାନୀ ସହିତ ଏହି ପ୍ରଣାଳୀର ବହୁତ ସାଦୃଶ୍ୟ ଥାଏ; ଏଠାରେ ରୋଗୀକୁ ମାରିବାକୁ ହେଉ କିମ୍ବା ଆରୋଗ୍ୟ କରିବାକୁ ହେଉ, ସେଥିପାଇଁ ଯେ କୌଣସି ପଦାର୍ଥ ପ୍ରସ୍ତୁତ ହୋଇଥାଏ । ସର୍ବୋପରି, ମନ୍ତ୍ରିମଣ୍ଡଳ ( The Cabinet )ହିଁ ଏଥିପାଇଁ ଔଷଧ-ବ୍ୟବସ୍ଥା କରିଥାନ୍ତି । ସରକାର ଗଠନ କରିବା ଏକ ସମସ୍ୟା ରୂପେ ଦେଖାଦିଏ । ଦୁଇଗୋଟି ଖରାପ ବ୍ୟବସ୍ଥା ମଧ୍ୟରୁ ଅପେକ୍ଷାକୃତ ଉତ୍କୃଷ୍ଟତର ପନ୍ଥାକୁ ବାଛିବା ସରକାର ଗଠନ ସମସ୍ୟା ସହ ସମ୍ପୃକ୍ତ । ସବୁ ଯୋଗ୍ୟ ଲୋକମାନଙ୍କୁ ନେଇ ମନ୍ତ୍ରିମଣ୍ଡଳ ଗଠିତ ହୋଇ ନ ଥାଏ । ଅବଶ୍ୟ ମନ୍ତ୍ରିମଣ୍ଡଳ ପକ୍ଷରେ ସରକାରୀ ସେବକ ଗୋଷ୍ଠୀ ଓ ବିଶିଷ୍ଟ ଲେଖକମାନଙ୍କର ସମର୍ଥନ ଥାଏ । ରାଣୀ ବିଭିନ୍ନ ଲେଖା ପଢ଼ି ନିଜେ ସମସ୍ତ ବିଷୟ ଜାଣିବାକୁ ଚେଷ୍ଟାକଲେ, ରାଣୀଙ୍କ ଉପଦେଶ ମଧ୍ୟ ଗ୍ରହଣଯୋଗ୍ୟ ହୋଇଥାଏ । ନିତାନ୍ତ ପକ୍ଷେ ପରବର୍ତ୍ତୀ ସାଧାରଣ ନିର୍ବାଚନ ଉପରେ ଅଧିକାଂଶ ରାଜନୀତିଜ୍ଞମାନଙ୍କର ଦୃଷ୍ଟି ଥାଏ । ରାଣୀ ବହୁ ଆଗରୁ ଦେଖିପାରନ୍ତି ଓ କୌଣସି ସମାଧାନ ସ୍ୱଳ୍ପ ସମୟ ପାଇଁ ଭଲ ହୋଇଥିଲେ ସୁଦ୍ଧା ଦୀର୍ଘ ସମୟ ପରେ ଖରାପ ହୋଇପାରେ ବୋଲି ଦର୍ଶାଇ ପାରନ୍ତି ।

ଉପଦେଶ ଦେବା ଯୋଗ୍ୟତା ମୁଖ୍ୟତଃ ଜଣକର ବିଚାର ବୁଦ୍ଧି ଉପରେ ନିର୍ଭର କରିଥାଏ । ଏହା ବେଳେବେଳେ ବୌଦ୍ଧିକ ଯୋଗ୍ୟତା କିମ୍ବା ରାଜନୈତିକ ଜନପ୍ରିୟତା ଉପରେ ନିର୍ଭର କରେ ନାହିଁ । ବାସ୍ତବିକ, ଏହା ବେଳେବେଳେ ଧୀରସ୍ଥିର ଲୋକମାନଙ୍କ-ଠାରେ ସମ୍ଭବ ହୋଇଥାଏ । ଭାବପ୍ରବଣ ହୋଇ କୌଣସି ସିଦ୍ଧାନ୍ତରେ ଉପନୀତ ହେଲେ

ସମସ୍ୟାର ସମସ୍ତ ଦିଗ ବିଚାରକୁ ନିଆଯାଇପାରେ ନାହିଁ । ଜଣେ ଲୋକପ୍ରିୟ ବକ୍ତା ଯାହା କହିବା ପାଇଁ ଭାବିଥାଏ, ବେଳେବେଳେ ତାହା କହିବା ପୂର୍ବରୁ ନିଜର ବକ୍ତବ୍ୟ ଶେଷ କରିଥାଏ । ଶିଳ୍ପ ଓ କଳାରେ ଅନୁରାଗୀ ଜଣେ ବ୍ୟକ୍ତି ଅପେକ୍ଷା ଦୀର୍ଘ ଅଭିଜ୍ଞତା ହାସଲ କରିଥିବା ଓ ପ୍ରତ୍ୟେକ ପ୍ରଶ୍ନକୁ ଭଲ ଭାବେ ଅନୁଧ୍ୟାନ କରିପାରୁଥିବା ଜଣେ ନାଗରିକ ଅଧିକ ନିର୍ଭୁଲ ମତାମତ ବ୍ୟକ୍ତ କରି ପାରନ୍ତି । ଏଥିପାଇଁ ପ୍ରାୟ ଦୃଢ଼ ସାଧାରଣ ଜ୍ଞାନର ଆବଶ୍ୟକତା ଥାଏ, କିନ୍ତୁ ରାଜନୀତିରେ ଏହାର ଅଭାବ ପରିଲକ୍ଷିତ ହୋଇଥାଏ । ରାଣୀ ଭିକ୍ଟୋରିଆଙ୍କର ଏପରି ବିଚାର ବୁଦ୍ଧି ଥିବା କହିବା ଅର୍ଥ କଥାକୁ ଅତିରଞ୍ଜିତ କରି କହିବା ଭଳି ହୋଇଥାଏ । ଅଧିକାଂଶ ସମୟରେ ସେ ଭାବପ୍ରବଣ ହୋଇ ବିଭିନ୍ନ କାର୍ଯ୍ୟ ସଂପାଦନ କରୁଥିଲେ ଏବଂ ଡିସରେଲିଙ୍କୁ ଏହି ବିଷୟ ଭଲ ଭାବରେ ଜଣାଥିଲା । ଅପର ପକ୍ଷରେ ରାଣୀ ଜଣେ ଭିକ୍ଟୋରିଆ ଯୁଗର ବ୍ୟକ୍ତି ପରି ଅଧ୍ୟବସାୟୀ ଜୀବନ ଯାପନ କରୁଥିଲେ । ତାଙ୍କ ଶାସନର ଶେଷ ଆଡ଼କୁ ସେ "ରାଜନୀତି"ରେ ଅଧିକ ଭାଗ ନେଇଥିଲେ ଏବଂ ଏକକାଳୀନ ଆ ବୃଦ୍ଧ ବ୍ୟକ୍ତି ଉଇଲିୟମ ଏୱାର୍ଟ ଗ୍ଲାଡ଼ଷ୍ଟୋନଙ୍କ ଅପେକ୍ଷା ଅଧିକ ପରିମାଣରେ କ୍ରିୟାଶୀଳ ଥିଲେ । ଗ୍ଲାଡ଼ଷ୍ଟୋନ ବେଳେବେଳେ ରାଜନୀତିର "ଭିତରେ" ଓ "ବାହାରେ" ରହିଥିଲେ । କିନ୍ତୁ ରାଣୀ ଅଠର ବର୍ଷଠାରୁ ରାଜନୀତି ଭିତରେ ରହିଥିଲେ । ରାଣୀଙ୍କର ପ୍ରଖର ସ୍ମରଣ ଶକ୍ତି ଥିଲା । ତାଙ୍କ ଉତ୍ତରାଧିକାରୀ ପଞ୍ଚମ ଜର୍ଜ ଓ ବିଶେଷତଃ ଷଷ୍ଠ ଜର୍ଜ ତାଙ୍କ ପରି ଅଧ୍ୟବସାୟୀ ଥିଲେ ଏବଂ ସେମାନଙ୍କର ବିଚାର ଶକ୍ତି ମଧ୍ୟ ଉଚ୍ଚକୋଟୀର ଥିଲା । ଏହିପରି ଶାନ୍ତ, ଶିଷ୍ଟ ଓ ବିଚାରବନ୍ତ ଲୋକଙ୍କୁ ଶାସନ କ୍ଷେତ୍ରରେ ପାଇଲେ ବହୁତ ଉପକାର ସାଧିତ ହୋଇଥାଏ । ବିଶେଷତଃ ଜଣେ କାର୍ଯ୍ୟଦକ୍ଷ କିନ୍ତୁ ବିପଥଗାମୀ ପ୍ରଧାନ ମନ୍ତ୍ରୀଙ୍କ ସମୟରେ ସେହିପରି ସମ୍ରାଟ୍ଙ୍କ ଦ୍ୱାରା ଅଶେଷ ଉପକାର ସାଧିତ ହୋଇଥାଏ ।

ଏ କଥା ଏଠାରେ ସ୍ମରଣ ରଖିବାକୁ ହେବ ଯେ ପ୍ରଧାନ ମନ୍ତ୍ରୀଙ୍କ ପାଖକୁ ପଠାଯାଉଥିବା ସମସ୍ତ କାଗଜପତ୍ର ରାଣୀଙ୍କ ଟେବୁଲ ଉପରେ ଥାଏ । ନିଷ୍ପତ୍ତି ପାଇଁ ଦାୟୀଥିବା ବ୍ୟକ୍ତି ନିଷ୍ପତ୍ତି ପାଇଁ ଦାୟୀ ନଥିବା ବ୍ୟକ୍ତିଙ୍କ ତୁଳନାରେ ସେହି କାଗଜ-ପତ୍ରଗୁଡ଼ିକୁ ବେଶୀ ଭଲ ଭାବରେ ଅଧ୍ୟୟନ କରିଥାଏ । କିନ୍ତୁ ଅନ୍ୟ ଜଣେ ଦାୟୀ ରହିଥିଲେ ସୁଦ୍ଧା ପ୍ରତ୍ୟେକ ପ୍ରଶାସକ ପରିଣାମ ବିଷୟ ବିଚାର କରି କୌଣସି ଏକ ସିଦ୍ଧାନ୍ତରେ ଉପନୀତ ହୁଏ । ଜଣେ ପାଠକ କୋଡ଼ିଏ ବର୍ଷଧରି ଦୈନିକ ଓ ସାପ୍ତାହିକ ସଂବାଦପତ୍ର ପାଠ କରୁଥିଲେ ମଧ୍ୟ ସେ ଦଳମାନଙ୍କ ଦ୍ୱାରା ଦିଆଯାଇଥିବା ଧ୍ୱନିଦ୍ୱାରା ପ୍ରଭାବିତ ହୁଏ ନାହିଁ କିମ୍ବା ଏପରି ଭାବରେ ପ୍ରଭାବିତ ହୋଇ କୌଣସି ଆଇନ ପ୍ରଣୟନ କରେ ନାହିଁ । ପ୍ରତ୍ୟେକ ଦିନ ରାଣୀଙ୍କ ପାଖକୁ ଗୋଟିଏ ଖବରକାଗଜ ନ ଆସି ଡଜନ ଡଜନ ଖବର କାଗଜ ଆସିଥାଏ ଏବଂ ରାଣୀଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ରାଣୀଙ୍କର ଜଣେ କର୍ମଚାରୀ ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକରେ ଚିହ୍ନ ଦେଇଥାଏ । ଗୋଟିଏ ସର୍ବସାଧାରଣ ପାଠାଗାର ଅପେକ୍ଷା ରାଣୀଙ୍କ ପାଖକୁ ଅଧିକ ସାପ୍ତାହିକ ଓ ମାସିକ ପତ୍ରପତ୍ରିକା ଆସିଥାଏ । ଏତଦ୍‌ବ୍ୟତୀତ ମନ୍ତ୍ରିମଣ୍ଡଳକୁ ପଠାଯାଉଥିବା କିମ୍ବା ପଠାଯାଉ

ନ ଥିବା ସମସ୍ତ ଦଲିଲ, ପ୍ରତ୍ୟେକ ସବୁଜପୁସ୍ତକ ଓ ଶ୍ୱେତ-ପତ୍ର, ରାଷ୍ଟ୍ରଦୂତମାନଙ୍କଠାରୁ ଆସୁଥିବା ପତ୍ରାବଳୀ, ଆମନ୍ତ୍ରିତ ଓ ବିଶ୍ରାମ ନେଇଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ସହ ଆଲୋଚନାର ବିବରଣୀ ଆଦି ରାଣୀଙ୍କ ପାଖକୁ ପଠାଯାଇଥାଏ ।

ରାଣୀ ଉପରୋକ୍ତ କାଗଜ ପତ୍ରର କିୟଦଂଶ ନିଜେ ବୁଝିପାରୁଥିଲେ, ସେ ରାଜ୍ୟଗୋଷ୍ଠୀ ମଧ୍ୟରେ ସର୍ବଶ୍ରେଷ୍ଠ ଶିକ୍ଷିତ ବ୍ୟକ୍ତି ରୂପେ ପରିଗଣିତ ହୁଅନ୍ତେ । ବେଶୀ ଅଧ୍ୟୟନ ଅପେକ୍ଷା କୌଣସି ବିଷୟକୁ ବୁଝିବାର ଯୋଗ୍ୟତା ବିଶେଷ ଆବଶ୍ୟକ ହୋଇଥାଏ । ସୁଦୂର-ପ୍ରସାରୀ ପରିଣାମ ଉପୁଜିଲା ପରି କୌଣସି ବିଷୟରେ ନିଷ୍ପତ୍ତି ନେବା ସରକାରଙ୍କ ପକ୍ଷରେ କଷ୍ଟକର ହୋଇଥାଏ । ଜଣେ ଲୋକ ବିକ୍ଷିପ୍ତ ଭାବରେ ଚିନ୍ତା କରିଥିଲେ ସୁଦ୍ଧା ତା'ର ଚିନ୍ତାକୁ ଏକ ନିର୍ଦ୍ଦିଷ୍ଟ ଧାରାରେ ପକାଇବାକୁ ହୋଇଥାଏ । ଜଣେ ଖୁବ୍ ଭଲଭାବରେ ଚିନ୍ତାକରୁଥିଲେ ଏହା ସହଜ ହୋଇଥାଏ । କୌଣସି ବିଷୟରେ ନିଷ୍ପତ୍ତି ନକରି ପକାଇ ରଖିବା ସହଜ, କାରଣ ଆଜି କୌଣସି କାର୍ଯ୍ୟ ନ କଲେ ଭବିଷ୍ୟତରେ କିଛି ଅସୁବିଧା ନ ଥାଏ । ନିବୃତ୍ତ ହେବାକୁ ଇଚ୍ଛା କରୁଥିବା ଜଣେ ବ୍ୟକ୍ତି ସହିତ କଥାବାର୍ତ୍ତା କରି ମଧ୍ୟ ଏହା କରାଯାଇ-ପାରେ । ରାଣୀ ଭିକ୍ଟୋରିଆ ଜଣେ ଦକ୍ଷ ସମ୍ରାଟ୍ ଥିଲେ । ଓ୍ୱାଲଟର ବେଜହଟ୍‌ଙ୍କ ଭାଷାରେ ସମ୍ରାଟଙ୍କର ତିନୋଟି ଅଧିକାର ଅଛି , ଯଥା—ପରାମର୍ଶ ଦେବା, ଉତ୍ସାହିତ କରିବା ଓ ସତର୍କ କରାଇ ଦେବା ଅଧିକାର । ଏହି ଅଧିକାରତ୍ରୟ ଠିକ୍ ଭାବରେ ଷଷ୍ଠ ଜର୍ଜଙ୍କ ଦ୍ୱାରା ପ୍ରୟୋଗ ହୋଇ ନ ଥିଲା ଓ ଏହା ସମ୍ଭବତଃ ଦ୍ୱିତୀୟ ଏଲିଜାବେଥଙ୍କ ଶାସନରେ ପ୍ରମୁକ୍ତ ହେଉ ନାହିଁ । କୌଣସି ବିଷୟକୁ ସମାଲୋଚନା କରିବା ଅପେକ୍ଷା ସେଥିରେ ସନ୍ଦେହ ପ୍ରକାଶ କରିବା ସହଜ ଓ କୌଣସି ବିଷୟରେ ସ୍ମାରକ-ପତ୍ର ଲେଖିବା ଅପେକ୍ଷା ହଠାତ୍ ମନ୍ତବ୍ୟ ପ୍ରକାଶ କରିବା ସହଜ । ରାଣୀ ଭିକ୍ଟୋରିଆଙ୍କ ଅସଂଖ୍ୟ ପତ୍ରାବଳୀ ଅପେକ୍ଷା ଷଷ୍ଠ ଜର୍ଜ ତାଙ୍କର ମନ୍ତ୍ରୀମାନଙ୍କ ସହିତ ଯେଉଁ ବ୍ୟକ୍ତିଗତ ସମ୍ପର୍କ ରଖିଥିଲେ ତାହାର ପ୍ରଭାବ ବୋଧହୁଏ ଅଧିକ ଥିଲା ।

## ରାଣୀ ଓ ସାଧାରଣ ବ୍ୟକ୍ତି ( The Queen and the Common Man ) :

ବହୁବିଧ କାରଣ ଯୋଗୁଁ ଆମ ସମ୍ବାଦପତ୍ରଗୁଡ଼ିକ ରାଜନୀତିରେ ପରିପୂର୍ଣ୍ଣ । ଗୋଟିଏ କଥା ହେଉଛି ରାଜନୀତି ଲକ୍ଷ ଲକ୍ଷ ଲୋକଙ୍କୁ ପ୍ରଭାବିତ କରିଥାଏ । ଅନ୍ୟ ଏକ କଥା ହେଉଛି ଯେ ରାଜନୀତିଜ୍ଞମାନେ ସମ୍ବାଦପତ୍ରରେ ସେମାନଙ୍କ ନାମ ପ୍ରକାଶ କରିବାକୁ ଚାହାନ୍ତି ଓ ସେଥିପାଇଁ ଅନେକ "ସମ୍ବାଦ" ପଠାଇଥାନ୍ତି । ତୃତୀୟ କଥା ହେଲା "ରୋଜ ଓ କ୍ରାଉନ୍" ଠାରେ ଏକ ବୌଦ୍ଧିକ ଭାଷଣ ଅପେକ୍ଷା ସଂସଦର ଏକ ନୀରସ ଭାଷଣକୁ ପ୍ରକାଶ କରିବା ସହଜ ହୋଇଥାଏ । "ଗୋଟିଏ ସମ୍ବାଦ ପତ୍ରକୁ ମାରି ଦେବାକୁ ହେଲେ ତାକୁ ରାଜନୀତି ମଧ୍ୟକୁ ପୂରାଇଦେବା ଉଚିତ" ବୋଲି କୁହାଯାଇଥିବା କଥାକୁ ସାଂବାଦିକମାନେ ବିଶ୍ୱାସ କରିଥାନ୍ତି । ଅଧିକାଂଶ ସମ୍ବାଦପତ୍ର "ଜନସାଧାରଣଙ୍କ ସ୍ୱାର୍ଥ"ର ସୁରକ୍ଷା କରିଥାନ୍ତି ।

ରାଜନୀତି ପ୍ରତି ସାଧାରଣ ମତାମତ ଭଲ ଥାଏ । ରାଜନୀତି ସମ୍ବନ୍ଧରେ ଚିନ୍ତା କରିବା ଓ ବିଶେଷ ପରିସ୍ଥିତି ଏ ସମ୍ବନ୍ଧରେ ଚିନ୍ତା କରିବାର ଆବଶ୍ୟକତା ଅନୁଭବ କରିବା ସ୍ୱାଧୀନ ଦେଶରେ ସବୁଠାରୁ ବଡ଼ ସୁଯୋଗ ବୋଲି ବିବେଚିତ ହୋଇଥାଏ । ସମ୍ବାଦ ପତ୍ରର ପ୍ରଥମ ପୃଷ୍ଠାକୁ ଦେଖି "ଏହା ଏକ ଖରାପ ଶାସନ" ( ଯେଉଁ ଶାସନ ଥାଉନା କାହିଁକି ) ବୋଲି ଜଣେ ମନ୍ତବ୍ୟ ଦେଇପାରେ ଓ ଅଧିକ ଆକର୍ଷଣୀୟ ଥିବା ଖେଳ ଖବର ପଢ଼ିପାରେ । ଗେଷ୍ଟାପୋ କିମ୍ବା ଓଗପୁର ସାମାନ୍ୟ ମନ୍ତବ୍ୟ ଉପରେ ଗୁରୁତ୍ୱ ଆରୋପ କରି ତାର ପ୍ରଶସ୍ତି ଗାନ କରିବା ଭିନ୍ନ କଥା ଅଟେ । ଏପରି ସ୍ଥଳେ ଗୋଟିଏ ବୃଦ୍ଧ ପକ୍ଷୀପରି ଜଣେ ବ୍ୟକ୍ତି ନିମ୍ନଲିଖିତ ପଂକ୍ତି ଗାନ କରିପାରେ—

"ଓକ୍ ଗଛରେ
  ଜରାଜୀର୍ଣ୍ଣ ଏକ ପେଚକ ରହେ,
ବହୁତ ଶୁଣଇ
  ଅଳପ ମାତ୍ରକ ଭାଷଇ ସିଏ ।
ଅଳପ କହିଲେ
  ମନେ ହୁଏ ସେହୁ ଶୁଣଇ ବେଶି
କହ ଦେଖି ତେବେ
  ଚତୁର ନୁହେଁ କି ସେ ବୃଦ୍ଧ ପକ୍ଷୀ ?"

( There was an old owl who lived in an oak
The more he heard the less he spoke;
The less he spoke the more he heard;
Now wasn't he a wise old bird ? )

ଷ୍ଟାଲିନଙ୍କୁ ପାଇ ଋଷିଆର ଲୋକମାନେ ଭଗବାନଙ୍କୁ ଧନ୍ୟବାଦ ଅର୍ପଣ କରିଥିବା କଥା ଏକ ପ୍ରଶ୍ନର ମାତ୍ର । ନିଃସନ୍ଦେହ ଭାବରେ ଏକଥା କୁହାଯାଇପାରେ ଯେ ଅନ୍ୟ ଲୋକମାନଙ୍କ ପରି ଋଷିଆର ଲୋକମାନେ ରାଜନୀତିକୁ ଭୁଲି ଯିବା ପାଇଁ ଚାହିଁଥାନ୍ତି ।

ଏକଥା ସତ୍ୟ ଯେ ସଂସାର ଭଲ ଭାବରେ ଶାସିତ ହେଲେ ଆମ୍ଭେମାନେ ରାଜନୀତି ବିଷୟରେ କମ୍ ଚିନ୍ତା କରିଥାଉ । ସଂସାରର ସର୍ବୋତ୍କୃଷ୍ଟ ଜିନିଷସବୁ ଖୁବ୍ କ୍ୱଚିତ ରାଜନୀତିଜ୍ଞମାନଙ୍କ ଦ୍ୱାରା କରାଯାଇଥାଏ । ଭାଷଣ ଭଲ ନ ହୋଇଥିଲେ, ଭାଷଣ ଦେବାରେ ବିଶେଷ ମୂଲ୍ୟ ନ ଥାଏ । ବରଂ ପୁସ୍ତକ ପ୍ରଣୟନ, ଚିତ୍ରାଙ୍କନ, କବିତା ପଠନ, ସଙ୍ଗୀତ ଗାନ, ଖେଳ ପ୍ରଦର୍ଶନ କିମ୍ବା ଖେଳରେ ସୁନାମ ଅର୍ଜନ ଅଧିକ ମୂଲ୍ୟବାନ ବୋଲି ବିବେଚିତ

ହୋଇଥାଏ । ଜଣେ ସାଧାରଣ ବଳ୍ପ ବ୍ୟକ୍ତି ଭାଷଣ ଶୁଣିବା ଅପେକ୍ଷା ଖାଇବା, ଶୋଇବା, ସିନେମା ଦେଖିବା କିମ୍ବା ଫୁଟବଲ୍ ଖେଳ ଦେଖିବାକୁ ଶ୍ରେୟସ୍କର ମନେ କରିଥାଏ । ବର୍ତ୍ତମାନ ଯୁଗ ସାଧାରଣ ବ୍ୟକ୍ତିମାନଙ୍କ ଯୁଗ ବୋଲି ବୁଝାଯାଏ । ଜଣେ ସାଧାରଣ ଲୋକ ନିଜର ବିଶେଷ ପ୍ରକୃତିର ଗୃହେ ନାହିଁ ଓ ସେ ଏକାକୀ ରହିବାକୁ ଭଲପାଏ । କୌଣସି ଅସୁବିଧା ଉପୁଜିଲେ ସେ ବିରାଗ ରାଜନୀତି ବିଷୟରେ ଆଗ୍ରହ ପ୍ରକାଶ କରିଥାଏ । ତଥାପି ଚାରି କିମ୍ବା ପାଞ୍ଚ ବର୍ଷରେ ଥରେ ମାତ୍ର ସେ ନିଜ ରାଜନୈତିକ କର୍ତ୍ତବ୍ୟ ସମ୍ପାଦନ କରିବାଲାଗି ମତଦାନ କରିବାକୁ ଆଗଭର ହୋଇଥାଏ ଓ "ରାଜନୀତିଜ୍ଞମାନେ କ'ଣ କରୁଛନ୍ତି" ସେ ବିଷୟ ଜାଣିବା ପାଇଁ ଚେଷ୍ଟା କରିଥାଏ ।

ସଂକ୍ଷେପରେ ଏକଥା ପ୍ରକାଶ କରାଯାଇପାରେ ଯେ ଜଣେ ନାଗରିକ ଗୋଟିଏ ଦିନ ପ୍ରାୟ ଗୋଟିଏ ଘଣ୍ଟା ପାଇଁ ନାଗରିକ କାର୍ଯ୍ୟ ସମ୍ପାଦନ କରିଥାଏ । ଅନ୍ୟାନ୍ୟ ସମୟରେ ସେ ଜଣେ କର୍ମଚାରୀ, ପରିବାରର ଗୃହ-ପିତା, କୌଣସି ଧର୍ମାବଲମ୍ବୀ ବା ଘୋଡ଼ାଦୌଡ଼ର ଜଣେ ସଭ୍ୟ ହିସାବରେ ରହିଥାଏ । ତା'ର ପଡ଼ୋଶୀ ଜଣେ ବୈଜ୍ଞାନିକ, ଜଣେ କବି, ଜଣେ ଦାର୍ଶନିକ କିମ୍ବା ଜଣେ ଲେଖକ ହୋଇପାରନ୍ତି । ସେଠାରେ ଜନୈକ ବ୍ୟକ୍ତି ରାଜନୀତି ବିଷୟ ଚର୍ଚ୍ଚା କରିବାକୁ ଲାଗିଲେ, ସେ ହୁଏତ ଅନିଚ୍ଛା ସହ ତାହାଠାରୁ ଦୂରରେ ରହିଥାନ୍ତି । ସେ ଜଣେ ମାର୍କସବାଦୀ ହୋଇଥିଲେ ଅନିଚ୍ଛା ପ୍ରକାଶ ସଙ୍ଗେ ସଙ୍ଗେ ସେ ଭାବିଥାନ୍ତି ଯେ ରକ୍ତାକ୍ତ ବିପ୍ଳବର ଆବଶ୍ୟକତାରୁ ଜନସାଧାରଣଙ୍କର ମନ ଭୁଲାଇବା ପାଇଁ ପୁଞ୍ଜିପତିମାନେ ଫୁଟବଲ ପ୍ରଦର୍ଶନୀର ବ୍ୟବସ୍ଥା କରିଥାନ୍ତି । ତାଙ୍କ ମତରେ ସ୍ପର ଓ ଆର୍ସେନାଲ (The Spurs and the Arsenal) ନାମରୁ ସୂଚିତ ହୁଏ ଯେ ସେମାନେ ଆମେରିକା ସାମ୍ରାଜ୍ୟବାଦର ହାତବାରିସୀ ଥିଲେ ।

ଏଠାରେ ରାଣୀଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ରାଜନୀତି ସହିତ ସଂପୃକ୍ତ ନ ଥିବା କିମ୍ବା ରାଜନୀତିଠାରୁ ବହୁ ଦୂରରେ ଥିବା ଅନେକ କାର୍ଯ୍ୟ ରାଣୀଙ୍କ ଦ୍ୱାରା ସମ୍ପାଦିତ ହୋଇଥାଏ । ନୌବାହିନୀ, ସୈନ୍ୟବାହିନୀ ଓ ବିମାନ ବାହିନୀ ସହ ବୋଧହୁଏ ରାଜନୀତି ସଂପୃକ୍ତ ବୋଲି ବୁଝାଯାଇପାରେ । କିନ୍ତୁ ଆଲିସ୍ (Alice) ଙ୍କ ସହିତ କ୍ରିଷ୍ଟୋଫର ରବିନ୍ ବକିଙ୍ଗହାମ ରାଜପ୍ରାସାଦର ଗାର୍ଡଙ୍କୁ ଦେଖିବାକୁ ଗଲବେଳେ ସାମ୍ରାଜ୍ୟବାଦୀ ଚିନ୍ତାଧାରାରେ ତାଙ୍କୁ ପ୍ରଭାବିତ କରିବା ପାଇଁ ଆଲିସ୍ ଚେଷ୍ଟା କରି ନ ଥିଲେ ( ଅପରପକ୍ଷରେ, ଜଣେ ସୈନିକର ଜୀବନ ଅତ୍ୟନ୍ତ କଷ୍ଟକର ବୋଲି ଆଲିସ୍ ପ୍ରକାଶ କରିଥିଲେ ) । କୋଇଲା ଖଣି କିମ୍ବା ବିଶ୍ୱବିଦ୍ୟାଳୟ ପରିଦର୍ଶନ କରିବା, ବିଜ୍ଞାନର ଅଗ୍ରଗତି ପାଇଁ ଗଠିତ ବ୍ରିଟିଶ ସଂଘରେ ଭାଷଣ ଦେବା, "କୌଣସି କାର୍ଯ୍ୟରେ" ପ୍ରଧାନ ଧାଡ଼ିରେ ବସିବା ଏବଂ କୌଣସି କ୍ରୀଡ଼ାସଂଗଠନ ବା ଦାତବ୍ୟ ଅନୁଷ୍ଠାନ ଅଥବା ବିପଦରେ ପଡ଼ିଥିବା ଭଦ୍ରମହିଳାମାନଙ୍କ ପାଇଁ ଚାନ୍ଦାସଂଗ୍ରହ କରିବା ଆଦି କାର୍ଯ୍ୟରେ ରାଜନୈତିକ ଗୁରୁତ୍ୱ ନ ଥାଏ ।

ସାଧାରଣ ଲୋକମାନଙ୍କର ମଙ୍ଗଳ ହେବା ଭଳି କୌଣସି କାର୍ଯ୍ୟକୁ ଉତ୍ସାହିତ କରିବାରେ ରାଜ ପରିବାର ସକ୍ରିୟ ଅଂଶ ଗ୍ରହଣ କରିଥାନ୍ତି । ରାଜନୀତି ସହ ଏହା ଯେତିକି ସଂପୃକ୍ତ, ଧର୍ମ, କଳା ଓ ସାହିତ୍ୟ, ଶିକ୍ଷା ଓ ଖେଳ, ବାଣିଜ୍ୟ ଓ ଶିଳ୍ପ ସହ ମଧ୍ୟ ସେତିକି ସଂପୃକ୍ତ ଥାଏ । ଏହା ସ୍ୱାଭାବିକ ଯେ ପାଞ୍ଚକୋଟି ଲୋକଙ୍କ ସହିତ କରମର୍ଦ୍ଦନ କରିବା ରାଣୀଙ୍କ ପକ୍ଷରେ ସମ୍ଭବପର ନୁହେଁ । କିନ୍ତୁ ତାଙ୍କ ଶାସନ କାଳ ମଧ୍ୟରେ କୋଟି କୋଟି ଲୋକ ତାଙ୍କୁ ଦେଖିପାରିବେ ଏବଂ ସେ ମଧ୍ୟ ହଜାର ହଜାର ଲୋକଙ୍କୁ ଭାଷଣ ଦେଇପାରିବେ । ଅଧିକାଂଶ ବିଶିଷ୍ଟ ଲୋକ ରାଣୀଙ୍କ ଦ୍ୱାରା ପ୍ରଭାବିତ ହୋଇଥାନ୍ତି ।

ଏଠାରେ "ଉପାଧି" ପ୍ରଦାନ ବିଷୟରେ କିଛି କୁହାଯାଇପାରେ । ପୂରାତନ ପନ୍ଥୀ ଗଣତନ୍ତ୍ରବାଦୀମାନେ ଉପାଧି କିମ୍ବା ସମ୍ମାନ ବିତରଣକୁ ନିନ୍ଦା କରିପାରନ୍ତି । ଏହାଦ୍ୱାରା ଶ୍ରେଣୀ ବିଭାଗ ସୃଷ୍ଟି ହେବାର ସମ୍ଭାବନା ଥାଏ ବୋଲି କୁହାଯାଏ । ବାସ୍ତବିକ, ଏହି ପ୍ରକାର ଶ୍ରେଣୀ ବିଭାଗ ଆଗରୁ ମଧ୍ୟ ରହି ଆସିଅଛି । ଜଣେ ଦାର୍ଶନିକ, କବି, ସଙ୍ଗୀତଜ୍ଞ କିମ୍ବା କ୍ରିକେଟ୍ ଖେଳାଳୀ ନାଇଟ ପଦ କିମ୍ବା ଓ.ବି.ଇ. ( O.B.E. ) ସମ୍ମାନରେ ଭୂଷିତ ହେବା ବେଳେ ଯେଉଁ ବ୍ୟକ୍ତି ଏହି ସମ୍ମାନ ଲାଭ କରିଥାଏ, ତାହାର ଉପଯୁକ୍ତ ଯୋଗ୍ୟତା ଅଛି ବୋଲି ରାଣୀଙ୍କୁ ପରାମର୍ଶ ଦିଆଯାଇଥାଏ । କେବଳ ଉପାଧି ଯୋଗୁ ସମ୍ମାନ ମିଳେ ନାହିଁ; ବରଂ ଯେଉଁଥି ପାଇଁ ଏହି ଉପାଧି ପ୍ରଦାନ କରାଯାଇଥାଏ, ତାହା ଗୁରୁତ୍ୱପୂର୍ଣ୍ଣ ଅଟେ । ଗୋଟିଏ ପକ୍ଷରେ ଆମେରିକା ଓ ଅପର ପକ୍ଷରେ ଋଷିଆ ମଧ୍ୟ ଏଥିପାଇଁ ପୁରସ୍କାର ଓ ପଦକ ବ୍ୟବସ୍ଥା କରିଛନ୍ତି । ଏଥିରେ ଅବଶ୍ୟ କିଛି କ୍ଷତି ନାହିଁ । ବିଦ୍ୟାଳୟରେ ପୁରସ୍କାର ପ୍ରଦାନ କଲାପରି ଏହା ଦ୍ୱାରା ଲୋକମାନଙ୍କୁ ଭଲ କାର୍ଯ୍ୟ କରିବା ପାଇଁ ପ୍ରେରଣା ଦିଆଯାଇଥାଏ । ଏ କଥା ନିଶ୍ଚିତ ଯେ ବିରାଟ ସୁଶୋଭିତ ମଟରଗାଡ଼ି ମଧ୍ୟରେ ଥାଇ ଯେଉଁମାନେ ନିଜର ପରାକ୍ରମ ଦେଖାଇବାକୁ ଚାହିଁଥାନ୍ତି, ସେମାନଙ୍କ ଅପେକ୍ଷା ଉପରୋକ୍ତ ପୁରସ୍କାର ବ୍ୟବସ୍ଥା ଅଧିକ ଆପତ୍ତିଜନକ ନୁହେଁ । ରାଣୀଙ୍କୁ ସମ୍ମାନ ପ୍ରଦର୍ଶନରେ ସଂପୃକ୍ତ କରାଯାଉଥିବାରୁ ଏହା ବ୍ରିଟିଶ ବ୍ୟବସ୍ଥାର ଏକ ସୁଗୁଣ ଓ ଏହା ଦ୍ୱାରା ଉପାଧି ଲାଭ କରୁଥିବା ବ୍ୟକ୍ତି ଦୁନିଆକୁ ଦେଖାଇ ଦିଅନ୍ତି ଯେ ସେ ତାଙ୍କ ରାଣୀଙ୍କ ଦ୍ୱାରା ସମ୍ମାନିତ ହୋଇଛନ୍ତି ଓ ଜାତି ପାଇଁ ତାଙ୍କ ସେବାଯୋଗୁ ରାଣୀ ତାଙ୍କୁ ସ୍ୱୀକୃତି ଦେଇଛନ୍ତି । ଏହି ଉପାଧିର ମାନରକ୍ଷା କରାଗଲେ, ଅଧିକ ଉପାଧି ପ୍ରଦାନ ଫଳରେ ଜାତିର ଉପକାର ସାଧିତ ହୋଇଥାଏ । ସର୍ବୋପରି, ଏହିପରି ସେବାର ଆବଶ୍ୟକତା ଇଂଲଣ୍ଡରେ ଅଛି । ଅନ୍ଧାରରେ ସନ୍ତୁଷ୍ଟ ରହୁଥିବା ଜଣେ ପଥିକ ନିଃସନ୍ଦେହରେ ଜଣେ ସମ୍ମାନିତ ବ୍ୟକ୍ତି; କିନ୍ତୁ ଇଂଲଣ୍ଡର ଲୋକମାନେ ଅଧିକ ସଂଖ୍ୟାରେ ସେକ୍ସପିଅର, ଗଲ୍‌ସ୍‌ଓ୍ୱାର୍ଦି, ବେକନ୍, ବାଇରନ, ନିଉଟନ, ନେଲସନ୍, ଟର୍ନର, ଟେନିସନ୍, ଓ୍ୱେଲିଙ୍ଗଟନ୍ ଓ ଓ୍ୱାର୍ଡ୍‌ସ୍‌ଓ୍ୱାର୍ଥକୁ ଲୋଡ଼ନ୍ତି ।

ଅଧୁନା ବହୁ ବାଧାବିଘ୍ନ ସତ୍ତ୍ୱେ ଇଂଲଣ୍ଡ ବହୁକ୍ଷେତ୍ରରେ ସୁନାମ ଅର୍ଜ୍ଜନ କରିଛି । ଅବଶ୍ୟ ଅନ୍ୟାନ୍ୟ ଦେଶରେ ବହୁ ବିଶିଷ୍ଟ କବି, ଦାର୍ଶନିକ, ବୈଜ୍ଞାନିକ, କଳାକାର, ଗବେଷକ, ସମାଜସେବୀ, ଔପନ୍ୟାସିକ, ନାଟ୍ୟକାର ଇତ୍ୟାଦି ଅଛନ୍ତି । ଏଥି। ନିଶ୍ଚୟ ବ୍ରିଟେନର ଏକଚାଟିଆ ଅଧିକାର ନୁହେଁ । ଅବଶ୍ୟ ଏହି ସବୁ କ୍ଷେତ୍ରରେ ଅନ୍ୟ କୌଣସି ଦେଶ ସୁନାମ ଅର୍ଜ୍ଜନ କରିଛି ବୋଲି କହିଲେ ସନ୍ଦେହ ପ୍ରକାଶ ପାଇଥାଏ । ପାର୍ଥିବ ପଦାର୍ଥ କିମ୍ବା କ୍ଷମତା ଅପେକ୍ଷା ଏଗୁଡ଼ିକର ମୂଲ୍ୟ ବହୁତ ବେଶୀ । ହଜାର ହଜାର ଆଣବିକ ବୋମା ( atomic bomb ) ଅପେକ୍ଷା ଜଣେ ସେକ୍ସପିଅରଙ୍କ ମୂଲ୍ୟ ଅଧିକ । ଅବଶ୍ୟ ଏକଥା ଏଠାରେ ସୂଚନା ଦିଆଯାଇପାରେ ଯେ ଆଣବିକ ବୋମା ବ୍ରିଟେନର ଗବେଷଣାଜ୍ଞାନ ବ୍ୟତୀତ ସମ୍ଭବ ହୋଇ ନ ଥାନ୍ତା । ସମ୍ମିଳିତ ରାଜ୍ୟ ଅଧିବାସୀମାନଙ୍କ ମଧ୍ୟରେ ବିଶେଷ ଜ୍ଞାନ ଆହରଣର ମାନ ବଜାୟ ରଖିବାରେ ସାହାଯ୍ୟ କରିବା ରାଣୀଙ୍କର ଗୋଟିଏ ପ୍ରଧାନ କର୍ତ୍ତବ୍ୟ ।

# ତୃତୀୟ ଅଧ୍ୟାୟ

## ରାଜନୀତି

## ( Politics )

**ରାଜନୀତିର ଗୁରୁତ୍ୱ ( The Importance of Politics ) :**

ସାମାଜିକ ଜୀବନରେ ରାଜନୀତିର ଯଥାର୍ଥ ଭୂମିକା ନିର୍ଣ୍ଣୟ କରିବା ସହଜ କଥା ନୁହେଁ । ରାଜନୀତିଜ୍ଞମାନଙ୍କର ଗୁରୁତ୍ୱ ବୃଦ୍ଧି ପାଉଥିବାରୁ ସେମାନେ ସର୍ବଦା ଉପରୋକ୍ତ ବିଷୟକୁ ଅତିରଞ୍ଜିତ କରି କହିଥାନ୍ତି । ଅପର ପକ୍ଷରେ ସଂସ୍କୃତି ଓ ପାଣ୍ଡିତ୍ୟ ସହ ଜଡ଼ିତ ଥିବା ବ୍ୟକ୍ତି ଏହି ବିଷୟ ଉପରେ କମ୍ ଗୁରୁତ୍ୱ ଆରୋପ କରିଥାନ୍ତି । ଦୂର ଦୃଷ୍ଟି ସହିତ ଦେଖିଲେ ରାଜନୀତିଜ୍ଞ କେବଳ ଧୂଳି ସହିତ ଖେଳୁଥିବା ପରି ମନେ ହୁଏ । ଅବଶ୍ୟ ସ୍ୱଳ୍ପ କାଳ ପାଇଁ ଘଟଣାଗୁଡ଼ିକ ଉପରେ ତାଙ୍କର ( ରାଜନୀତିଜ୍ଞଙ୍କର ) ଯଥେଷ୍ଟ ପ୍ରଭାବ ପଡ଼ିଥିଲେ ମଧ୍ୟ, କାଳକ୍ରମେ ତାହା କ୍ଷୀଣ ହୋଇଯାଏ । ଉଦାହରଣସ୍ୱରୂପ, ହିଟଲର, ନାମଧେୟ ଜଣେ ବ୍ୟକ୍ତି ଥିଲେ ବୋଲି ଲୋକମାନେ ପ୍ରାୟ ଭୁଲିଗଲେଣି । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଏକ ପ୍ରସିଦ୍ଧ ପ୍ରାଚୀର-ପତ୍ରରେ ଲେଖା ଥିଲି "ପିତା ! ବିରାଟ ଯୁଦ୍ଧ ସମୟରେ ଆପଣ କଣ କରିଥିଲେ ?" ଯୁଦ୍ଧ ପରବର୍ତ୍ତୀ କାଳରେ ପିଲା ଏହି ପ୍ରାଚୀର-ପତ୍ର ସମ୍ବନ୍ଧରେ ପ୍ରଶ୍ନ ଉଠାଇଥାନ୍ତି । ହିଟଲର କିପରି ନିଜର କାଗଜ ତିଆରି ପକାଉଥିଲେ ଓ ନିଜ ସୈନ୍ୟ-ବାହିନୀର କମାଣ୍ଡକୁ ଘୃଣିତ କ୍ଷୁଦ୍ର ଶତ୍ରୁସେନା ବିରୁଦ୍ଧରେ ପରିଚାଳିତ କରୁଥିଲେ—ଏହା ହୁଏତ କିଛି ବର୍ଷ ପରେ ସ୍ମିଥ ନାମଧେୟ କେହି ଜଣେ ବାଳକ ପ୍ରକାଶ କରିପାରେ । ଅବଶ୍ୟ ବାଳକ ସ୍ମିଥର ଇତିହାସ ସମ୍ବନ୍ଧୀୟ ମତାମତ ଉପରେ ବିଶେଷ ଗୁରୁତ୍ୱ ଦିଆ ନ ଯାଇପାରେ । କିନ୍ତୁ ଉଦାହରଣ ରୂପେ ବିଚାର କଲେ ୨୦୫୦ ମସିହାବେଳକୁ ହିଟଲର ( Hitler ) କିମ୍ବା ଟି. ଏସ୍. ଏଲିୟଟ ( T. S. Eliot )ଙ୍କ ମଧ୍ୟରେ କାହାର ଅଧିକ ପ୍ରଭାବ ଥିଲା ତାହା

ଆମ୍ଭେମାନେ ଜାଣିପାରିଥିବା । ସମ୍ଭବତଃ ଡ଼ି. ଡ଼ି. ଟି. ଆବିଷ୍କାର (The discovery of D. D. T.) ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟର ସବୁଠାରୁ ଶ୍ରେଷ୍ଠ ଘଟଣା ବୋଲି ଇତିହାସ ପୁସ୍ତକଗୁଡ଼ିକ ଲିପିବଦ୍ଧ କରିପାରନ୍ତି ।

ଉପରୋକ୍ତ ମନ୍ତବ୍ୟ ଆମ୍ଭମାନଙ୍କର ଦୃଷ୍ଟିକୋଣ ପରିବର୍ତ୍ତନ କରିବାରେ ସାହାଯ୍ୟ କରିଥାଏ । କିନ୍ତୁ ଆମ୍ଭେମାନେ ଗ୍ଭଳିଶ କମ୍ବା ପଗ୍ଭଶ ବର୍ଷ ପଛକୁ ଦୃଷ୍ଟି ନିକ୍ଷେପ କଲେ, ରାଜନୀତି କେତେଦୂର ପର୍ଯ୍ୟନ୍ତ ଆମ୍ଭମାନଙ୍କର ଜୀବନକୁ ପ୍ରଭାବିତ କରିଛି ଉପଲବ୍ଧି କରି ପାରିବା । ଏହା ମୁଖ୍ୟତଃ ଦୁଇଟୋଟି ବିଶ୍ୱଯୁଦ୍ଧ ଫଳରେ ଘଟିଛି । ଶାନ୍ତି ସମୟରେ ଆମ୍ଭମାନଙ୍କ ଦୈନନ୍ଦିନ ଜୀବନ ଉପରେ ରାଜନୀତିର ପ୍ରଭାବ କମ୍ ଥାଏ । ଅପର ପକ୍ଷରେ ଏହାର ପ୍ରଭାବ ଯେତେ କମ୍ ହୁଏ ସେତେ ଭଲ ବୋଲି ବିବେଚିତ ହୋଇଥାଏ । ଅବଶ୍ୟ ଏହି ମତବାଦ ବିପଜ୍ଜନକ । ଏହା ଫଳରେ କେତେକ ପରିସ୍ଥିତିରେ ରାଜନୀତି ଶଠ ଓ ବଦମାସ୍ (Crooks and Gangsters) ବ୍ୟକ୍ତିମାନଙ୍କ ଆଶ୍ରୟସ୍ଥଳୀ ହୋଇପାରେ । ଅନ୍ୟ କେତେକ ପରିସ୍ଥିତିରେ ରାଜନୀତି ହିଟଲର ପରି ଅଧର୍ମିକାଗ୍ରସ୍ତ ବ୍ୟକ୍ତିଙ୍କ ଆଡ଼୍ଡ଼ାସ୍ଥଳୀରେ ପରିଣତ ହୋଇପାରେ । ପୁନଶ୍ଚ ଆଉ କେତେବେଳେ ରାଜନୀତି ସାଧାରଣ କମ୍ୟୁନିଷ୍ଟମାନଙ୍କ ପରି ଉନ୍ମତ୍ତ (Paranoics) ବ୍ୟକ୍ତିମାନଙ୍କ ଆଶ୍ରୟ-ସ୍ଥଳୀରେ ପରିଣତ ହୋଇପାରେ । ସାଧାରଣତଃ ସ୍ୱଳ୍ପ ବୁଦ୍ଧି ଦ୍ୱାରା ସଂସାର ପରିଗ୍ଭଳିତ । ସରକାରୀ ପରିଗ୍ଭଳନା କ୍ଷେତ୍ରରେ ଆମେ ଏହି ସ୍ୱଳ୍ପବୁଦ୍ଧିକୁ ପ୍ରୟୋଗ ନ କଲେ ପ୍ରଭୂତ କ୍ଷତି ହୋଇପାରେ ।

ମୋଟ ଉପରେ ବାଟେନ ଯେଉଁ ରାଜନାମାରେ ଉପନୀତ ହୋଇଛୁ ତାହା ଯଥାର୍ଥ । ଯେଉଁମାନେ ରାଜନୀତି ପ୍ରତି ଆଗ୍ରହୀ, ସେମାନଙ୍କ ପକ୍ଷରେ ରାଜନୀତି ହିଁ ମୁଖ୍ୟ ବିଷୟ-ବସ୍ତୁ ହୋଇଥାଏ । ପ୍ରତି ପୁରୁଷରେ କେତେକ ସୁଦକ୍ଷ ବ୍ୟକ୍ତି ରାଜନୀତିରେ ଅଂଶ ଗ୍ରହଣ କରିଥାନ୍ତି । ସଂସଦୀୟ ସଭ୍ୟମାନଙ୍କ ବୁଦ୍ଧି ଓ ଅଭିଜ୍ଞତା ଯଥେଷ୍ଟ ବେଶୀ ହୋଇ ନ ଥିଲେ ସୁଦ୍ଧା ଏହା ଦେଶର ଜନସାଧାରଣଙ୍କ ବୁଦ୍ଧି ଓ ଅଭିଜ୍ଞତା ତୁଳନାରେ ବେଶୀ ହୋଇଥାଏ । କୌଣସି ଗୋଟିଏ ବିଶ୍ୱବିଦ୍ୟାଳୟର ସିନେଟ୍ (The Senate of a University) ଯେପରି ସୁଦକ୍ଷ ବ୍ୟକ୍ତିମାନଙ୍କୁ ନେଇ ଗଠିତ ହୋଇଥାଏ, ମନ୍ତ୍ରିମଣ୍ଡଳ (Cabinet) ସେହିପରି ସୁଦକ୍ଷ ବ୍ୟକ୍ତିମାନଙ୍କୁ ନେଇ ଗଠିତ ହୋଇ ନ ଥାଏ । ଅବଶ୍ୟ ମନ୍ତ୍ରିମଣ୍ଡଳରେ କେତେକ ପୁରୁଖା ଓ ଅଭିଜ୍ଞ ବ୍ୟକ୍ତିଙ୍କୁ ନିଆ ଯାଇଥାଏ । ସରକାରୀ କର୍ମଚ୍ଭରୀମାନଙ୍କ ମଧ୍ୟରେ ଥିବା ସୁଦକ୍ଷ ପ୍ରଶାସକ ତଥା ବୈଷୟିକ ଜ୍ଞାନସଂପନ୍ନ ବିଶେଷଜ୍ଞମାନେ ମନ୍ତ୍ରିମଣ୍ଡଳକୁ ପରାମର୍ଶ ଦେଇଥାନ୍ତି । କୌଣସି ସରକାର ସର୍ବଦା ନିଜ କାର୍ଯ୍ୟ ସୁଚ୍ଭରୁରୂପେ ସମ୍ପାଦନ କରିପାରିବେ ବୋଲି କୁହାଯାଇ ପାରିବ ନାହିଁ । ଏଥିପାଇଁ ସରକାରଙ୍କର ପରାମର୍ଶ ଦାତା ଥାନ୍ତି । ଅନ୍ୟାନ୍ୟ ଦେଶମାନଙ୍କ ଅପେକ୍ଷା ଇଂଲଣ୍ଡର ସରକାର ଭଲ ପରାମର୍ଶ ପାଇଥାନ୍ତି ।

## ରାଜନୀତି ଓ ସାମାଜିକ ଶ୍ରେଣୀବର୍ଗ ( Politics and Social Classes ):

ସମ୍ମିଳିତ ରାଜ୍ୟ ( The United Kingdom ) ର ଗୋଟିଏ ବିଶେଷତ୍ୱ ହେଲା ଯେ ଲୋକମାନଙ୍କ ମଧ୍ୟରେ ଅପୂର୍ବ ସାଦୃଶ୍ୟ ଅଛି । ସମ୍ମିଳିତ ରାଜ୍ୟ ଗୋଟିଏ ଦେଶ ନ ହୋଇ ଗୁଡ଼ିଏ ଦେଶର ସମଷ୍ଟି । ସେଠାରେ ତିନିଗୋଟି ଭାଷା ଓ ତିନିଗୋଟି ବିଭିନ୍ନ ପ୍ରକାର ଆଇନକାନୁନ ପ୍ରଚଳିତ ଥିବାରୁ ଏବଂ ଧର୍ମ ସମ୍ବନ୍ଧୀୟ ପାର୍ଥକ୍ୟ ସେଠାରେ ବିଶେଷ ପରିଲକ୍ଷିତ ହେଉଥିବାରୁ, ଏପରି ସାଦୃଶ୍ୟ ପରିଲକ୍ଷିତ ହେବା ଆଶ୍ଚର୍ଯ୍ୟ ମନେ ହୋଇଥାଏ । ତଥାପି ଏହା ସତ୍ୟ । ସମ୍ମିଳିତ ରାଜ୍ୟ ଏକ ଜନବହୁଳ ଦେଶ । ଏହାର ଆର୍ଥନୀତିକ ସଂହତି ( integration ) ଅଛି । ଏହାର ଗମନାଗମନ ବ୍ୟବସ୍ଥା ମଧ୍ୟ ଅତି ଉଚ୍ଚଧରଣର । ଉଦାହରଣ ସ୍ୱରୂପ ଲୁଗାପଟା ଦରଦାମ ହ୍ରାସ କିମ୍ବା କୋଇଲା ଉତ୍ପାଦନ ହ୍ରାସ ଫଳରେ ଅର୍ଥନୀତି କ୍ଷେତ୍ରରେ ସ୍ୱଳ୍ପ ପରିବର୍ତ୍ତନ ଆସିଲେ, ଏହାର ପ୍ରଭାବ ଖୁବ୍ ଶୀଘ୍ର ସମଗ୍ର ଦେଶରେ ଅନୁଭୂତ ହୋଇଥାଏ । ଜନବହୁଳତା, ଗମନାଗମନର ସୁବ୍ୟବସ୍ଥା ତଥା ପୂର୍ଣ୍ଣ ସ୍ୱାକ୍ଷରତା ଓ ଉଚ୍ଚକୋଟିର ଜୀବନ-ଯାପନ ବ୍ୟବସ୍ଥା ଯୋଗୁ ପୃଥିବୀର ଅନ୍ୟାନ୍ୟ ଦେଶଠାରୁ ଏଠାରେ ଲୋକପ୍ରିୟ ସମ୍ବାଦ ପତ୍ରଗୁଡ଼ିକ ଅଧିକ ସଂଖ୍ୟାରେ ବିକ୍ରୟ ହୋଇଥାଏ । ଅନେକ ଲୋକ ବୋଧହୁଏ ଟେଲିଭିଜନ ସମ୍ବାଦ ଶୁଣିଥାନ୍ତି । ସମ୍ମିଳିତ ରାଜ୍ୟରେ ପରସ୍ପର ମତ ପାର୍ଥକ୍ୟ ନାହିଁ ବୋଲି କୁହା ଯାଇପାରିବ ନାହିଁ; କିନ୍ତୁ ସାଧାରଣ ଶିଷ୍ଟତା ଓ ଅଭିଜ୍ଞତା ମଧ୍ୟରେ ସୀମିତ ରହି ଏହି ମତାନୈକ୍ୟ ପ୍ରକାଶ ପାଇଥାଏ । ଅନ୍ୟ ଦେଶମାନଙ୍କରେ ରାଜନୀତିଜ୍ଞମାନେ ଯେପରି ମିଥ୍ୟା ଓ ପ୍ରବଞ୍ଚନାର ଆଶ୍ରୟ ଓ ଉପାୟ ଅପେକ୍ଷା ଲକ୍ଷ୍ୟ ଉପରେ ଗୁରୁତ୍ୱ ଆରୋପ କରିବା ନୀତିକୁ ଗ୍ରହଣ କରିଛନ୍ତି, ବ୍ରିଟେନର ରାଜନୀତିଜ୍ଞମାନେ ସେପରି କରନ୍ତି ନାହିଁ । ଏହି ବିଷୟରେ ସେମାନେ ସଂଯମ ପ୍ରଦର୍ଶନ କରିଥାନ୍ତି । ବ୍ରିଟେନରେ ଯେ କୌଣସି ବିଷୟ ଉପରେ ରାଜନୈତିକ ଝଡ଼ଝଞ୍ଜା ସୃଷ୍ଟି ହୋଇଥାଏ; ସେଥିମଧ୍ୟରୁ ଅଧିକାଂଶ ବିଷୟରେ ନିର୍ବାଚକମାନଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଥାଏ । ଜଣେ ନିର୍ବାଚକ ସୋଭିଏତ୍ ଦେଶ ଦେଖି ନ ଥିଲେ ଏହା ଏକ ସ୍ୱର୍ଗ କିମ୍ବା ଦାସତ୍ୱ ସମ୍ପନ୍ନ ରାଷ୍ଟ୍ର ବୋଲି ତାଙ୍କୁ କୁହାଯାଇପାରେ କିନ୍ତୁ ନିଜ ଶୃଙ୍ଖଳା ବା ଦାସତ୍ୱ ବ୍ୟତୀତ ସେ ଅନ୍ୟ କିଛି ହରାଇବେ ନାହିଁ ବୋଲି ଜଣେ ବ୍ରିଟିଶ ନିର୍ବାଚକଙ୍କୁ କହିବା ନିରର୍ଥକ । ଏହା ମଧ୍ୟ ସେ କଦାପି ବିଶ୍ୱାସ କରିବେ ନାହିଁ, କାରଣ ସେ ଜାଣନ୍ତି ଯେ ତାଙ୍କ ନିଜ ଘର ବିଭିନ୍ନ ଆସବାବ-ପତ୍ରରେ ପରିପୂର୍ଣ୍ଣ ଓ ଥରେ ସେ ଗୃହ-ନିର୍ମାଣ ସମିତିର ଋଣ ପରିଶୋଧ କରି ପାରିଲେ ଘରଟି ତାଙ୍କ ନିଜ ସମ୍ପତ୍ତି ହୋଇ ରହିବ । ବାସ୍ତବରେ ଶ୍ରେଣୀ ସଂଘର୍ଷ ପାଇଁ ଯେଉଁ ଯୁକ୍ତି କରାଯାଇଥାଏ, ତାହାର ବିଶେଷ ପ୍ରଭାବ ଇଂଲଣ୍ଡରେ ଅନୁଭୂତ ହୁଏ ନାହିଁ । ଏହାର କାରଣ ହେଉଛି ସାଧାରଣ ନିର୍ବାଚକର ଏହି ବିଷୟରେ କୌଣସି ଅଭିଜ୍ଞତା ନାହିଁ । ଶହେ ବର୍ଷତଳେ ବ୍ରିଟେନର ଜନସାଧାରଣଙ୍କୁ "ନେତା" ଓ "ଜନତା" ଏହିଭଳି ଦୁଇ ଭାଗରେ ବିଭକ୍ତ କରାଯାଉଥିଲା । ଏବେ ମଧ୍ୟ ପୃଥିବୀର କେତେକ ଅଞ୍ଚଳରେ ଏହିଭଳି ବିଭାଜନ ଦେଖାଯାଇ ଥାଏ । କିନ୍ତୁ ବ୍ରିଟେନରେ

ଏହା ସମ୍ଭବ ନୁହେଁ  ଏହାର କାରଣ ହେଉଛି, ବ୍ରିଟେନରେ ଅପେକ୍ଷାକୃତ ଦରିଦ୍ର (ଏସିଆ ମହାଦେଶରେ ଏମାନଙ୍କୁ 'ମଧ୍ୟବିତ୍ତ ଶ୍ରେଣୀ' ରୂପେ ଗଣନା କରାଯାଇଥାଏ) ଓ ଅପେକ୍ଷାକୃତ ଧନୀ (ଆମେରିକାରେ ଏମାନଙ୍କୁ ଧନୀରୂପେ ଗଣନା କରାଯାଇ ନ ଥାଏ)ଙ୍କ ମଧ୍ୟରେ ଶ୍ରେଣୀଗତ ପାର୍ଥକ୍ୟ ରହିଅଛି । ଏହି ଦେଶର ଜାତୀୟ ଆୟ ଡେନମାର୍କ ପରି ଦେଶ ମାନଙ୍କର ଜାତୀୟ ଆୟ ଅପେକ୍ଷା ବେଶୀ, କିନ୍ତୁ ଆମେରିକା ଓ ରୁଷିଆ ପରି ଦେଶଗୁଡ଼ିକର ଜାତୀୟ ଆୟ ଅପେକ୍ଷା କମ । ବ୍ରିଟେନରେ ସାଧାରଣ ନିର୍ବାଚକ ଏହି ବିଷୟରେ ଜାଣି ନ ଥାଏ । କିନ୍ତୁ ତାଲିମ ପାଇ ନ ଥିବା ଶ୍ରମିକଠାରୁ ଆରମ୍ଭ କରି ପରିଚାଳନା ନିର୍ଦ୍ଦେଶକ ( The managing director)ଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଆୟ ବୃଦ୍ଧି ହେଉଥିଲେ ବି ଧନୀ ଓ ଦରିଦ୍ର ମଧ୍ୟରେ ଯଥାର୍ଥ ସୀମା ରେଖା ଟାଣିବା ସମ୍ଭବପର ନୁହେଁ ବୋଲି ସେ ( ସାଧାରଣ ନିର୍ବାଚକ ) ଜାଣିଥାଏ । ତାଲିମ ପାଇ ନ ଥିବା ଶ୍ରମିକର କେତେକାଂଶରେ ପୁଞ୍ଜିବାଦୀ ଦୃଷ୍ଟିକୋଣ ଥିବା ସ୍ଥଳେ ପରିଚାଳନା ନିର୍ଦ୍ଦେଶକ କେବଳ ବେତନର ଦାସ ବୋଲି କୁହାଯାଇ ପାରେ ।

ବ୍ରିଟେନରେ ଜନସଂଖ୍ୟା ଅନୁପାତରେ କମ୍ ଗରିବ ଓ କମ୍ ଧନୀ ଅଛନ୍ତି । ଏହା ବ୍ରିଟେନ ଶ୍ରେଣୀ ବିଭାଗର ଆଉ ଏକ ବିଶେଷତ୍ୱ । ସେମାନଙ୍କୁ ବେଳେବେଳେ "ମଧ୍ୟବିତ୍ତ ଶ୍ରେଣୀ" ( The middle class ) ରୂପେ ଅଭିହିତ କରାଯାଇଥାଏ । କିନ୍ତୁ ଏତଦ୍ୱାରା ଗୋଳମାଳିଆ ପରିସ୍ଥିତି ସୃଷ୍ଟି ହେବାର ଆଶଙ୍କା ଥାଏ । କାରଣ ଏଠାରେ କେବଳ ଆୟ ବିଷୟ ବିଚାରକୁ ନିଆ ନ ଯାଇ ସାମାଜିକ ଚଳଣିକୁ ମଧ୍ୟ ବିଚାର କରାଯାଇଥାଏ । ଉଦାହରଣ ସ୍ୱରୂପ, ଜଣେ ତାଲିମପ୍ରାପ୍ତ ଶ୍ରମିକ ନିଜେ "ଶ୍ରମିକ ଶ୍ରେଣୀ" ( The working class )ର ଅନ୍ତର୍ଭୁକ୍ତ ବୋଲି ଭାବିଥାଏ । କିନ୍ତୁ ଜଣେ କିରାଣୀ ବା ଶିକ୍ଷକ କିମ୍ବା ଜଣେ ବୀମା ପ୍ରତିନିଧି ନିଜକୁ "ମଧ୍ୟବିତ୍ତ ଶ୍ରେଣୀ"ରେ ଅନ୍ତର୍ଭୁକ୍ତ କରିଥାଏ । ଅବଶ୍ୟ ଅର୍ଥନୈତିକ ଦୃଷ୍ଟିକୋଣରୁ ଉପରୋକ୍ତ ଦୁଇ ଶ୍ରେଣୀ ମଧ୍ୟରେ ବ୍ୟତିକ୍ରମ ଥାଏ । କମ୍ ବେତନ ପାଉଥିବା କିରାଣୀ ଓ ଶିକ୍ଷକଙ୍କ ଅପେକ୍ଷା ଜଣେ ସୁଦକ୍ଷ ତାଲିମପ୍ରାପ୍ତ ଶ୍ରମିକ ବହୁ ଅଧିକ ବେତନ ପାଇପାରେ । ଅଧିକନ୍ତୁ ଜଣେ କିରାଣୀଙ୍କ ଅପେକ୍ଷା ଜଣେ ତାଲିମ ପ୍ରାପ୍ତ ବଢ଼େଇ, ଇଟାମିସ୍ତ୍ରୀ କିମ୍ବା ରାଜମିସ୍ତ୍ରୀ ସହଜରେ କେତେ ଲୋକଙ୍କର "ମୁଖ୍ୟ" ରୂପେ କାର୍ଯ୍ୟ କରିପାରେ । ଉଦାହରଣ ସ୍ୱରୂପ, ଜଣେ ବଢ଼େଇ ମୁଖ୍ୟ ବଢ଼େଇ ହିସାବରେ ଛୋଟ ଛୋଟ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଦାୟିତ୍ୱ ନେଇଥାଏ । ଯଦି ସେ ଉକ୍ତ କାର୍ଯ୍ୟରେ କୃତକାର୍ଯ୍ୟ ହୁଏ, ତେବେ ସେ ଉକ୍ତ କାର୍ଯ୍ୟରେ ଆଉ କେତେକ ବଢ଼େଇ ନିଯୁକ୍ତ କରିପାରେ । ଏପରି କି ସେ କେତେକ କାଠ-କଟାଳୀ, ଇଟାମିସ୍ତ୍ରୀ ଓ ରାଜମିସ୍ତ୍ରୀଙ୍କୁ ମଧ୍ୟ ନିଯୁକ୍ତ କରି ପାରେ । ସଂକ୍ଷେପରେ କହିଲେ ସେହି ବଢ଼େଇ ଜଣକ ଜଣେ "କୋଠାବାଡ଼ି ନିର୍ମାଣ କଣ୍ଟ୍ରାକଟର" ବି ହୋଇଯାଇ-ପାରେ । ଅବଶ୍ୟ ଏଠାରେ ସେହି ବଢ଼େଇ ଜଣକ ବିଶ୍ୱରେ ଥିବା ଶ୍ରମିକମାନଙ୍କ ମଧ୍ୟରୁ ଜଣେ "ଶ୍ରମିକ ନ ହୋଇ" କେତେବେଳେ "ଜଣେ ଦ୍ୱିତୀୟ ଶ୍ରେଣୀର ପୁଞ୍ଜିପତି" ପାଲଟିଯାଏ ତାହା କହିବା କଷ୍ଟକର ଅଟେ । ଅନ୍ୟ ପକ୍ଷରେ ଉଚ୍ଚ ମାଧ୍ୟମିକ ଶିକ୍ଷା ଲାଭ

କରିଥିବା କିରାଣୀକୁ ଜଣେ କର୍ମଚାରୀ ରୂପେ ରହିବାକୁ ପଡ଼ିଥାଏ । ଅବଶ୍ୟ ଶେଷରେ ସେ ହୁଏତ ପରିଚାଳକ କିମ୍ବା ନିର୍ଦ୍ଦେଶକ ହୋଇପାରେ; କିନ୍ତୁ ସର୍ବଦା ତାକୁ ନିଜର ବେତନ ଉପରେ ହିଁ ନିର୍ଭର କରିବାକୁ ପଡ଼ିଥାଏ ।

ଶିଳ୍ପ-ବିକାଶ ତଥା ବହୁଳ-ଉତ୍ପାଦନ ଫଳରେ ବିରାଟ ବ୍ୟାବସାୟିକ ତଥା ଶିଳ୍ପ ସଂସ୍ଥା ପ୍ରତିଷ୍ଠିତ ହୋଇଛି ଓ ସେହି ସଂସ୍ଥା ଗୁଡ଼ିକରେ ଅସଂଖ୍ୟ ବ୍ୟକ୍ତି କାର୍ଯ୍ୟ କରୁଛନ୍ତି । ଏହି ସଂସ୍ଥାଗୁଡ଼ିକର ବିବର୍ତ୍ତନ ସଙ୍ଗେ ସଙ୍ଗେ ପୂର୍ବରୁ ବର୍ଣ୍ଣନା କରାଯାଇଥିବା ମୁଖ୍ୟ ବଢ଼େଇ ମଧ୍ୟ ବିରାଟ କୋଠାବାଡ଼ି କଣ୍ଟ୍ରାକ୍ଟରରେ ପରିଣତ ହୋଇପାରେ । ମୁଖ୍ୟ ବଢ଼େଇ ଜଣକ ସମସ୍ତ କାର୍ଯ୍ୟ ନିଜ ବନ୍ଧୁମାନଙ୍କ ସାହାଯ୍ୟରେ ସଂପାଦନ କରିପାରେ । ମୁଖ୍ୟ ବଢ଼େଇ ଜଣକ କଣ୍ଟ୍ରାକ୍ଟରଙ୍କ ସହିତ ଚୁକ୍ତି କରିପାରେ; ସେ ଜିନିଷପତ୍ର କିଣେ, ଶ୍ରମିକମାନଙ୍କୁ ମଜୁରି ଦିଏ, ବିଭିନ୍ନ ଯନ୍ତ୍ରପାତି ଖରିଦ କରେ ଓ ଦରକାର ବେଳେ ନିଜ କୋଟ ଓ କୁରୁଚା ରଖି ଦେଇ ନିଜେ ଉକ୍ତ କାର୍ଯ୍ୟ ସଂପାଦନ କରିଥାଏ । ବ୍ୟବସାୟ ବଢ଼ିଲେ ସେ ଗୋଟିଏ ଅଫିସ (office) କରି ସେଥିରେ କିରାଣୀ ଓ ସହାୟକମାନଙ୍କୁ ନିଯୁକ୍ତ କରିପାରେ । ସେ ମଧ୍ୟ ଏକ କାରଖାନା ସ୍ଥାପନ କରି ସେଥିରେ ବିଭିନ୍ନ ବ୍ୟକ୍ତିମାନଙ୍କୁ ନିଯୁକ୍ତି ଦେଇପାରେ । ବୈଷୟିକଜ୍ଞାନ ସଂପନ୍ନ ବ୍ୟକ୍ତିମାନେ ବିଭିନ୍ନ ଯୋଜନା ପ୍ରସ୍ତୁତ କରିଥାନ୍ତି । କେଉଁ ସବୁ ଜିନିଷ ଆବଶ୍ୟକ ହେବ ତାହା ଠିକ୍ କରିବା ପାଇଁ ସେ ଜିନିସପତ୍ର ପରିଦର୍ଶକ ନିଯୁକ୍ତ କରିପାରେ । ତା ଜିନିଷପତ୍ର ନେବାପାଇଁ ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନ ତା ସହିତ ଚୁକ୍ତି କରିଥାନ୍ତି । ଏହିପରି ତାହାର ବ୍ୟବସାୟ ପ୍ରତିଷ୍ଠାନଟିର ଶ୍ରୀବୃଦ୍ଧି ଘଟିଥାଏ । ସମୟାନୁକ୍ରମେ ସେ ତାଙ୍କ ବ୍ୟାବସାୟିକ ପ୍ରତିଷ୍ଠାନଟିକୁ ଏକ ଘରୋଇ କମ୍ପାନୀରେ ପରିଣତ କରିପାରନ୍ତି । ଯଦି ଏହି ବ୍ୟକ୍ତିଗତ କମ୍ପାନୀର ଉତ୍ତରୋତ୍ତର ଉନ୍ନତି ହୁଏ, ତେବେ ତାହା ଏକ ସାଧାରଣ କମ୍ପାନୀ (a public Company) ରେ ପରିଣତ ହୁଏ । ଅକ୍ସଫୋର୍ଡରେ ଥିବା ମରିସ୍ ସାଇକେଲ—ଦୋକାନ (The Morris bicycle-shop) ଉପରୋକ୍ତ ପ୍ରଣାଳୀରେ ନ୍ୟୁଫିଲ୍ଡ୍ (Nuffield) କମ୍ପାନୀରେ ପରିଣତ ହୋଇଥିଲା । ଏକ ଶତାବ୍ଦୀ ଓ ତହିଁରୁ ଅଧିକ ସମୟ ଧରି ଏହି ବ୍ୟବସ୍ଥା ପ୍ରଚଳିତ ହୋଇ ଆସିଅଛି । ମୁଖ୍ୟ କୁଶଳୀ କାରିଗର-ମାନଙ୍କ ପରିବର୍ତ୍ତେ ସୀମିତ ଅଂଶୀଦାର ଥିବା କମ୍ପାନୀମାନ ଗଢ଼ି ଉଠିଅଛି ଓ ଉକ୍ତ କମ୍ପାନୀ-ଗୁଡ଼ିକରେ ତାଲିମ ପାଇ ନ ଥିବା ଓ ତାଲିମପ୍ରାପ୍ତ ଶ୍ରମିକମାନଙ୍କୁ ନିଯୁକ୍ତ ଦିଆଯାଇଛି । ଏତଦ୍‌ବ୍ୟତୀତ, ସେହି କମ୍ପାନୀରେ କିରାଣୀ, ସହାୟକ, ଯନ୍ତ୍ରୀକାରିଗର, ଓକିଲ, ଦୋକାନ ପରିଚାଳକ ପ୍ରଭୃତିଙ୍କୁ ମଧ୍ୟ ନିଯୁକ୍ତ ଦିଆଯାଇଥାଏ । ବ୍ୟାବସାୟିକ କ୍ଷେତ୍ରରେ ମଧ୍ୟ ଏହି ଚିନ୍ତାଧାରା ପରିଦୃଷ୍ଟ ହୋଇଥାଏ । ଛୋଟ ଛୋଟ ଦୋକାନ ପରିବର୍ତ୍ତେ ଶିକୁଳି ଲାଗିଥିବା ବଡ଼ ବଡ଼ ଦୋକାନ ସ୍ଥାପିତ ହୋଇଅଛି । ଏହି ବଡ଼ ଦୋକାନଗୁଡ଼ିକ ନିଜ କାର୍ଯ୍ୟାଳୟ ପାଇଁ ବହୁ ସହାୟକ, ଦୋକାନ-ପରିଚାଳକ ଓ ଅନ୍ୟାନ୍ୟ ଶ୍ରେଣୀର ଲୋକମାନଙ୍କୁ ନିଯୁକ୍ତ କରିଥାନ୍ତି । ଏହି ବ୍ୟବସ୍ଥାର ଏକ ପ୍ରଭାବ ନିଶ୍ଚିତ ଭାବରେ ଦେଖାଯାଏ ତାହା ହେଉଛି ଯେ

ଆଜକାଲି ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ଶିକ୍ଷା ଲାଭ କରୁଥିବା ଯୁବକ ଯୁବତୀଙ୍କ ଆବଶ୍ୟକତା ଅଧିକ ଅନୁଭୂତ ହେଉଅଛି । ୧୯୦୦ ମସିହାରେ ଏହି ଆବଶ୍ୟକତା ଏତେ ପରିମାଣରେ ଅନୁଭୂତ ହୋଇ ନ ଥିଲା ।

ଜଣେ ବ୍ୟକ୍ତିର ଆର୍ଥନୀତିକ ସ୍ୱାର୍ଥ ତାର ରାଜନୈତିକ ମତବାଦକୁ ପ୍ରଭାବିତ କରେ ବୋଲି ନିଃସନ୍ଦେହରେ କୁହାଯାଇ ପାରେ । ତାଲିମ ପାଇ ନ ଥିବା ଶ୍ରମିକ ସାମାଜିକ ସଂସ୍ଥାର ବିକାଶ, ସର୍ବନିମ୍ନ ମଜୁରି, ଶ୍ରମର ସମୟ, ସୀମା ଓ ଖାଦ୍ୟପଦାର୍ଥ ଯୋଗାଣରେ ରିହାତି ବ୍ୟବସ୍ଥାକୁ ପସନ୍ଦ କରିପାରେ । ପୁନଶ୍ଚ. ଅତ୍ୟାବଶ୍ୟକୀୟ ପଦାର୍ଥର ଦରଦାମ ନିୟନ୍ତ୍ରଣ, ଘର ଭଡ଼ାରେ ରିହାତି, ସୁବିଧାଜନକ ଭାବରେ ବାସଗୃହ ଯୋଗାଣ ଇତ୍ୟାଦି ବ୍ୟବସ୍ଥା ପାଇଁ ଉକ୍ତ ଶ୍ରମିକ ଜଣକ ମଧ୍ୟ ଦାବୀ କରିପାରେ । ଏହି ବ୍ୟବସ୍ଥାଗୁଡ଼ିକ ପାଇଁ ଅଧିକ ଟିକସ ବସାଇବା ଯୋଜନାକୁ ଉକ୍ତ ଶ୍ରମିକ ଜଣକ ସ୍ୱାଗତ କରିପାରେ । ଏହାର କାରଣ ହେଉଛି ଯେ ଉକ୍ତ ଶ୍ରମିକଙ୍କ ମତାନୁସାରେ ଟିକସ ବସାଇବା ପ୍ରସ୍ତାବ କାର୍ଯ୍ୟକାରୀ ହେଲେ କେବଳ ଧନିକ ଗୋଷ୍ଠୀର ଲୋକମାନଙ୍କ ଉପରେ ଏହାର ଭାର ପଡ଼ିପାରେ । କିନ୍ତୁ ଅପର ପକ୍ଷରେ ଜଣେ ଧନୀ ନାଗରିକ ଏହାର ଠିକ୍ ବିପରୀତ ବ୍ୟବସ୍ଥା ଚାହୁଁଥାଏ । ଟିକସ ହାର କିପରି ହ୍ରାସ ପାଇବ ସେଥିପାଇଁ ସେ ଚିନ୍ତିତ ଥାଏ । ଏଥିପାଇଁ ସର୍ବ-ସାଧାରଣ ସଂସ୍ଥାରେ କିପରି ମିତବ୍ୟୟିତା ରକ୍ଷା କରାଯାଇ ପାରିବ ତାହା ସେ ଚିନ୍ତା କରୁଥାଏ । କୌଣସି କଂପାନୀରେ ତାର ଅଂଶ ଥିଲେ, ଉକ୍ତ କମ୍ପାନୀର ଆୟ-ବୃଦ୍ଧି ସଙ୍ଗେ ସଙ୍ଗେ ତା ଅଂଶର ମୂଲ୍ୟ ମଧ୍ୟ ବଢ଼ିଥାଏ । ଏଥି ସହିତ ସେ ମଧ୍ୟ କିଛି ଲାଭ ଚାହିଁଥାଏ ଏବଂ ଲାଭ ପାଇବାରେ ପ୍ରତିବନ୍ଧକ ଦେଖାଦେଲେ ତାହାକୁ ସେ ବିରୋଧ କରିବାକୁ ଚେଷ୍ଟା କରିଥାଏ ।

ଏ କଥା ଏଠାରେ ପ୍ରକାଶ କରାଯାଇ ପାରେ ଯେ ରାଜନୀତିରେ ଦେଖା ଦେଉଥିବା ବିରାଟ ରାଜନୈତିକ ଦ୍ୱନ୍ଦ୍ୱଗୁଡ଼ିକ ସହିତ ଆର୍ଥନୀତିକ ସ୍ୱାର୍ଥର ସମ୍ବନ୍ଧ ନ ଥାଏ । ଆଇର୍ଲାଣ୍ଡର ସ୍ୱଶାସନ ନୀତିରେ ବ୍ରିଟେନର କୌଣସି ଆର୍ଥନୀତିକ ସ୍ୱାର୍ଥନିହିତ ନ ଥିଲା । ଏହି ଆନ୍ଦୋଳନର ପ୍ରଥମାର୍ଦ୍ଧରେ ଆୟର୍ଲାଣ୍ଡର ସ୍ୱଶାସନ ସମର୍ଥକମାନେ ସାଧାରଣତଃ ପ୍ରଜା ଥିଲେ; କିନ୍ତୁ ମିଳନବାଦୀ ବା ୟୁନିୟନିଷ୍ଟମାନେ ( ଅଲଷ୍ଟର ବାହାରେ ଥିବା ) ସାଧାରଣତଃ ଜମିଦାର ଥିଲେ । ଏହି ସମସ୍ୟାକୁ ଏକପ୍ରକାର ଭୂସଂସ୍କାର ବୋଲି ଗ୍ଲାଡ଼ଷ୍ଟୋନ୍ ମନେକରି ଥିଲେ । କିନ୍ତୁ ତାଙ୍କର ଏହି ଧାରଣା ଭ୍ରାନ୍ତ ଥିଲା । କେବଳ ଆର୍ଥନୀତିକ ସ୍ୱାର୍ଥ ନୁହେଁ, ଭାବ ପ୍ରବଣତା ମଧ୍ୟ ଏଥି ସହି ସଂପୃକ୍ତ ଥିଲା ( ଧର୍ମ ସମ୍ବନ୍ଧୀୟ ମତଭେଦ ଏହା ଦୃଢ଼ୀଭୂତ କରିଥିଲା ) ।

ପୁନଶ୍ଚ, ଅବାଧ ବାଣିଜ୍ୟ ଓ ସଂରକ୍ଷଣ ବ୍ୟବସ୍ଥା ( Free trade and protection ) ମଧ୍ୟରେ ଯେଉଁ ବିରାଟ ଦ୍ୱନ୍ଦ୍ୱ ଦେଖା ଦେଇଥିଲା, ତାହା କେବଳ ପ୍ରତ୍ୟକ୍ଷ ଆର୍ଥନୀତିକ କାରଣରୁ ଘଟି ନ ଥିଲା । ଆଂଶିକ ଭାବରେ ବାଣିଜ୍ୟ ଶୁଳ୍କ ଉପରେ ବସୁଥିବା ଟିକସ ବିଷୟରେ ମତଭେଦ ଯୋଗୁ ତାହା ଘଟିଥିଲା । କେତେକ ବ୍ୟକ୍ତି ଅଭିଯୋଗ

କରିଥିଲେ ଯେ ପ୍ରଶୁଳ୍କ ଫଳରେ ଜୀବନ-ଧାରଣର ମାନ ବୃଦ୍ଧି ଘଟିଥିଲା । ଆଉ କେତେ ଜଣଙ୍କ ମତରେ ଏହା ଫଳରେ ବେତନ ହାର ବୃଦ୍ଧି ପାଇଥିଲା । ଉଦାରବାଦୀମାନେ "ଶସ୍ତା ଖାଦ୍ୟ" ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଜାତୀଦଳର ସଭ୍ୟମାନେ "ଅଧିକ କର୍ମଯୋଗାଣ" ଓ "ଅଧିକ ବେତନ" ଉପରେ ଗୁରୁତ୍ୱ ଦେଇଥିଲେ । ଏ କଥା ଏଠାରେ ଦର୍ଶାଯାଇ ପାରେ ଯେ ଗରିବ ଶ୍ରମିକ ଓ ସ୍ୱଳ୍ପବେତନ ଭୋଗୀ "ଧବଳ-ଭେକ ପରିହିତ ଶ୍ରମିକମାନଙ୍କୁ" (White—Collar workers) ଉଭୟ ଉଦାରଦଳ ଓ ଜାତୀଦଳର ସଭ୍ୟମାନେ ନିବେଦନ କରିଥିଲେ । ଅବଶ୍ୟ ଉତ୍ପାଦନକାରୀ ଓ ବ୍ୟବସାୟୀ ଗୋଷ୍ଠୀଙ୍କ ମଧ୍ୟରେ ମତଭେଦ ଦେଖା ଦେଇଥିଲା । ଯେଉଁମାନଙ୍କର ଲାଭ ମୁଖ୍ୟତଃ ଘରୋଇ ବଜାର ଉପରେ ନିର୍ଭର କରୁଥିଲା, ସେମାନେ "ବିଦେଶୀ-ଗୋଷ୍ଠୀଙ୍କ ପ୍ରଭାବରୁ" ମୁକ୍ତ ରହିବା ପାଇଁ ସଂରକ୍ଷଣ ନୀତି ଅନୁସରଣ କରିବାକୁ ଚାହୁଁଥିଲେ । ଅନ୍ୟ ଯେଉଁମାନଙ୍କର ଲାଭ ରପ୍ତାନି ବାଣିଜ୍ୟ ଉପରେ ନିର୍ଭର କରୁଥିଲା, ସେମାନେ ସଂରକ୍ଷଣ ନୀତିକୁ ଗ୍ରହଣ କରୁ ନ ଥିଲେ । ସେମାନଙ୍କ ମତରେ ଏହା ଦ୍ୱାରା କଞ୍ଚାମାଲର (ଯଥା ତୁଳା ଓ ପଶମ) ମୂଲ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ଉତ୍ପାଦନ ଖର୍ଚ୍ଚ ମଧ୍ୟ ବୃଦ୍ଧି ପାଇବାର ଆଶଙ୍କା ଥିଲା । ପୁନଶ୍ଚ ଏହାଫଳରେ ଯନ୍ତ୍ରପାତି ତଥା ଘରୋଇ ଜିନିଷପତ୍ରର ମୂଲ୍ୟ ବୃଦ୍ଧି କିମ୍ବା ଉଚ୍ଚଧରଣର ଜୀବନଧାରଣ ପାଇଁ ବେତନ ବୃଦ୍ଧିର ସମ୍ଭାବନା ଥିଲା । ସୁତରାଂ, ସଂରକ୍ଷଣ ଓ ଅବାଧ ବାଣିଜ୍ୟ ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ସୃଷ୍ଟି ହୋଇଥିଲା ତାହା ଯଥାର୍ଥରେ ଅପେକ୍ଷାକୃତ ବଡ଼ ଧନୀଗୋଷ୍ଠୀଙ୍କ ମଧ୍ୟରେ ସୀମିତ ଥିଲା । ସାଧାରଣ ନିର୍ବାଚକଙ୍କୁ ପ୍ରଭାବିତ କରିବା ପାଇଁ ପ୍ରତ୍ୟେକ ଗୋଷ୍ଠୀ ନିଜ ଯୁକ୍ତିସବୁ ଉପସ୍ଥାପିତ କରିଥିଲେ ।

ପୁନଶ୍ଚ, ସମାଜବାଦ (Socialism) ନିଶ୍ଚିତ ଭାବରେ ଧନୀ ଓ ଦରିଦ୍ର ମଧ୍ୟରେ କଳହ ସୃଷ୍ଟିକରି ନ ଥାଏ । ଉତ୍ପାଦନର ସାଧନ ଓ ଉତ୍ପନ୍ନ ସାମଗ୍ରୀର ବଣ୍ଟନ ପ୍ରଥାର ଜାତୀୟକରଣ ବ୍ୟବସ୍ଥା ଦ୍ୱାରା ଗରିବ ଲୋକ ନିଶ୍ଚିତ ଭାବରେ ଧନୀ ହୁଏ ନାହିଁ । ଏହି ବ୍ୟବସ୍ଥା ଫଳରେ ସୀମିତ ଅଂଶୀଦାର ଥିବା କଂପାନୀଗୁଡ଼ିକର କର୍ମଚାରୀବୃନ୍ଦ ସରକାରୀ କର୍ମଚାରୀ ହୋଇଯାନ୍ତି । ସେହି କଂପାନୀଗୁଡ଼ିକର ଅଂଶୀଦାରମାନେ ଶିଳ୍ପ କିମ୍ବା ବ୍ୟବସାୟରୁ ଲାଭ ପାଇବା ପରିବର୍ତ୍ତେ ସରକାରଙ୍କଠାରୁ ଅର୍ଥ ପାଇଥାନ୍ତି । ସରକାରଙ୍କ ଠାରୁ ଯେଉଁ ଅର୍ଥ ବା କ୍ଷତିପୂରଣ ମିଳେ ତାହା ଯଦି ଯଥେଷ୍ଟ ହୋଇଥାଏ, ତେବେ ତାହା କଂପାନୀଠାରୁ ମିଳୁଥିବା ହାରାହାରି ଲାଭ ସହିତ ପ୍ରାୟ ସମାନ ହୋଇପାରେ । ବେସରକାରୀ କଂପାନୀ-ଗୁଡ଼ିକ ଅପେକ୍ଷା ଜାତୀୟକରଣ କରାଯାଇଥିବା ଏକଚାଟିଆ ବ୍ୟବସାୟର ଯଦି ଅଧିକ ଉତ୍ପାଦନ କିମ୍ବା ବଣ୍ଟନ କ୍ଷମତା ଥିବ, ତାହାହେଲେ ଜାତୀୟକରଣ ଫଳରେ ସମାଜ ଅଧିକ ଉପକୃତ ବା ସମୃଦ୍ଧିଶାଳୀ ହୋଇପାରିବ । ସୁତରାଂ ଜାତୀୟକରଣ ଏକଚାଟିଆ ବ୍ୟବସାୟ ଓ ଅବାଧ ବ୍ୟବସାୟ ମଧ୍ୟରେ ତୁଳନା କଲାବେଳେ ପ୍ରତ୍ୟେକର ଦକ୍ଷତା ବିଷୟ ବିଚାରକୁ ନିଆଯିବା ଆବଶ୍ୟକ । ଅବଶ୍ୟ, ଏଥି ସଙ୍ଗେ ସଙ୍ଗେ ଅନ୍ୟାନ୍ୟ କେତେକ ବିଷୟ ବିଚାରକୁ ନିଆଯିବା

ଉଚିତ । ଯେଉଁମାନେ ଅବାଧ ପ୍ରତିଯୋଗିତାରେ ବିଶ୍ୱାସ କରନ୍ତି ସେମାନଙ୍କ ମତରେ କଂପାନୀର ଅଂଶୀଦାରମାନେ କିଛି ଆୟ ପାଇବା ଉଚିତ । ଅଂଶୀଦାର ବୃଦ୍ଧ ହୋଇଥିଲେ ଓ ତାଙ୍କ ଜୀବନର ସମସ୍ତ ସଞ୍ଚୟ ଅଂଶ ଆକାରରେ ଦିଆଯାଇଥିବାରୁ ତାଙ୍କ ମୃତ୍ୟୁ ଫଳରେ ତାଙ୍କ ବିଧବା ସ୍ତ୍ରୀ ଉକ୍ତ ଅଂଶରୁ ସ୍ୱଳ୍ପ ଲାଭ ପାଇବା ଉଚିତ । ଅନ୍ୟାନ୍ୟ କେତେକ ବ୍ୟକ୍ତିଙ୍କ ମତରେ ଶିଳ୍ପକୁ (ଉଦାହରଣ ସ୍ୱରୂପ ପରିବହନ ଶିଳ୍ପକୁ) ଲାଭଖୋର ମନୋବୃତ୍ତି ସହିତ ପରିଚାଳନା ନକରି ସେବା ମନୋବୃତ୍ତି ରଖି ପରିଚାଳନା କରିବା ଉଚିତ । ଅନ୍ୟ କେତେକ ବ୍ୟକ୍ତି ଲାଭଖୋର ମନୋବୃତ୍ତିକୁ ଅନୈତିକ ବା ନୀତି ବିରୁଦ୍ଧ ବୋଲି ଚିତ୍ରଣ କରିଥାନ୍ତି । ସେ ଯାହା ହେଉନା କାହିଁକି, ସମାଜବାଦ ଉପରେ ବିବାଦ ଦେଖା ନ ଦେଇ ସମାଜବାଦର ଫଳାଫଳ ବିଷୟରେ ବିବାଦ ଦେଖା ଦେଇଥାଏ । ପ୍ରକୃତ କଥା ହେଲା ଯେ ସମାଜବାଦ ଦ୍ୱାରା ଶିଳ୍ପକ୍ଷେତ୍ରରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କର ଉପକାର ସାଧିତ ହେବ ବୋଲି ଶ୍ରମିକ ସଂଘ ବା ଟ୍ରେଡ୍ ୟୁନିଅନଗୁଡ଼ିକୁ ଫେବିୟାନମାନେ ( the Fabians ) ଆଶ୍ୱାସନା ଦେଇଥିଲେ । ଅପର ପକ୍ଷରେ ଅବାଧ ଉତ୍ପାଦନ ବ୍ୟବସ୍ଥା ଦ୍ୱାରା ସେମାନଙ୍କର ଉପକାର ସାଧିତ ହେବ ବୋଲି ଜାତି ଦଳର ସଭ୍ୟମାନେ ସେମାନଙ୍କୁ ( ଶିଳ୍ପ-ଶ୍ରମିକମାନଙ୍କୁ ) ପ୍ରବର୍ତ୍ତାଇଥିଲେ ।

ଉପରୋକ୍ତ ବିବାଦଗୁଡ଼ିକ ଯେଉଁଭାବେ ଉପସ୍ଥାପିତ ହେଉଥିଲା, ସେଥିରୁ ଅର୍ଥନୈତିକ ଉଦ୍ଦେଶ୍ୟର ଗୁରୁତ୍ୱ ଅନୁଭବ କରି ହେଉଥିଲା । ଆଜିକାଲି ଆମେ ଯାହାକୁ ଜନମଙ୍ଗଳ ରାଷ୍ଟ୍ର ବୋଲି କହୁଅଛୁ ତାହା ଜାତି, ଉଦାରବାଦୀ ଓ ଶ୍ରମିକଦଳର ରାଜନୀତିଜ୍ଞମାନେ ଦାବୀ କରୁଥିଲେ । ବ୍ୟାପକ ଓ ଉତ୍ତମ ସାମାଜିକ ସେବାପାଇଁ ପ୍ରତ୍ୟେକଦଳ ଚେଷ୍ଟା କରୁଥିଲେ । ଅବାଧ ବାଣିଜ୍ୟ ବ୍ୟବସାୟ ପାଇଁ ସେମାନଙ୍କ ମଧ୍ୟରେ ମତଭେଦ ଥିଲା ସତ୍ୟ କିନ୍ତୁ ଜୀବନ ଧାରଣର ମାନ ଉନ୍ନତ କରିବା ପାଇଁ ସବୁ ରାଜନୈତିକ ଦଳ ଶ୍ରମଜୀବୀମାନଙ୍କୁ ନିବେଦନ କରିଥିଲେ । ସମାଜବାଦ ବିଷୟରେ ମଧ୍ୟ ସେମାନେ ଏକ ମତ ନ ଥିଲେ ଓ ନିଜ ମତାନୁସାରେ ସେମାନେ ଜନସାଧାରଣଙ୍କୁ ନିବେଦନ କରୁଥିଲେ । ଗତ ପଚିଶ ବର୍ଷ ବିଶେଷତଃ ଗତ ତିରିଶ ବର୍ଷ ହେଲା ମଧ୍ୟବିତ୍ତ ଶ୍ରେଣୀର ଶକ୍ତି ବୃଦ୍ଧି ପାଉଥିବା କଥା ଆଗରୁ କୁହାଯାଇଛି । ଏହି ମଧ୍ୟବିତ୍ତ ଶ୍ରେଣୀରେ କିରାଣୀ, କାରିଗର, ବ୍ୟବସାୟୀ ପ୍ରତିଷ୍ଠାନ କର୍ମଚାରୀ, ବୀମା ପ୍ରତିନିଧି ଓ ଧବଳ-ଭେକ ପରିହିତ ଶ୍ରମିକମାନେ ଅନ୍ତର୍ଭୁକ୍ତ । ଏହି ଶ୍ରେଣୀର ସଂଖ୍ୟା ଏତେ ବୃଦ୍ଧି ପାଇଛି ଓ ଏହାର ପ୍ରଭାବ ଏତେ ବଢ଼ିଯାଇଛି ଯେ ଏହି ଶ୍ରେଣୀ କ୍ଷମତାରେ ଭାରସାମ୍ୟ ରକ୍ଷାକରିଛି ବୋଲି କୁହାଯାଇଥାଏ ।

ପାଠକ କୌଣସି ବୃହତ୍ତମ ସହରରେ ବସବାସ କରୁଥିଲେ ସେ ଉପରୋକ୍ତ ପ୍ରଭାବ ଅନୁଭବ କରିଥିବେ । ସାଧାରଣତଃ କୌଣସି ସହରର ଦକ୍ଷିଣ-ପଶ୍ଚିମାଞ୍ଚଳରେ ମଧ୍ୟବିତ୍ତ ଶ୍ରେଣୀର ଲୋକେ ବସବାସ କରୁଥିଲାବେଳେ ସହରର ପଶ୍ଚିମାଞ୍ଚଳରେ ଧନୀ ଲୋକମାନେ

ବସବାସ କରନ୍ତି । ଶେଷୋକ୍ତ ଅଞ୍ଚଳଟି ଜାତୀ ଦଳ ପକ୍ଷରେ ଏକ ନିଶ୍ଚିତ ଓ ନିରାପଦ ସ୍ଥାନ ରୂପେ ଧରି ନିଆଯାଇଥାଏ । ସହରର ମଧ୍ୟଭାଗରେ ତଥା ପୂର୍ବାଞ୍ଚଳରେ ଗରିବ ଶ୍ରେଣୀର ଶ୍ରମିକମାନେ ବାସ କରିଥାନ୍ତି । ସେହି ଅଞ୍ଚଳର ଘରଗୁଡ଼ିକ ସାଧାରଣତଃ ଟାଇଲରେ ଛାଆରି ହୋଇଥାଏ, ଅଥବା ନୂତନ ନଗରପାଳିକାର ଗୃହ-ନିର୍ମାଣ ଯୋଜନାନୁସାରେ ନିର୍ମାଣ ହୋଇଥାଏ । ଏହିପରି ଅଞ୍ଚଳଗୁଡ଼ିକ ଶ୍ରମିକଦଳ ପକ୍ଷରେ ନିରାପଦ ସ୍ଥାନ ରୂପେ ବିବେଚିତ ହୋଇଥାଏ । ଡିନିଗୋଟି କୋଠରୀ ଥିବା ବାସଗୃହ ଓ ବାସଗୃହଗୁଡ଼ିକ ଠାରୁ ଅଳ୍ପ ବ୍ୟବଧାନରେ ଥିବା ଅଞ୍ଚଳଗୁଡ଼ିକ ରାଜନୈତିକ ଦଳଙ୍କ ପକ୍ଷରେ ସନ୍ଦେହ ପୂର୍ଣ୍ଣ ଅଞ୍ଚଳ ରୂପେ ପରିଗଣିତ ହୁଏ । ଏହି ଅଞ୍ଚଳମାନଙ୍କରେ କିରାଣୀ, କାରିଗର ଓ ବ୍ୟବସାୟ ପ୍ରତିଷ୍ଠାନର କର୍ମଚାରୀମାନେ ରହିଥାନ୍ତି ଓ ସେମାନେ ସେମାନଙ୍କ ଆନୁଗତ୍ୟ ହଠାତ୍ ପରିବର୍ତ୍ତନ କରିଥାନ୍ତି । ଏଗୁଡ଼ିକୁ ସୀମାନ୍ତ ନିର୍ବାଚନମଣ୍ଡଳୀ କୁହାଯାଏ । ୧୯୩୧ ମସିହାରେ ଏହି ନିର୍ବାଚକମଣ୍ଡଳୀଗୁଡ଼ିକ ଜାତୀଦଳ ( ଅଥବା ଜାତୀୟ ସରକାର ) ସପକ୍ଷରେ ମତଦାନ କରିଥିଲେ । ୧୯୩୫ ମସିହାରେ ସେମାନେ ଜାତୀଦଳ ସପକ୍ଷରେ ଥିଲେ ମଧ୍ୟ ଏହି ଦଳର ସଂଖ୍ୟାଗରିଷ୍ଠତା ହ୍ରାସ ପାଇଥିଲା । ୧୯୪୫ ମସିହାରେ ସେମାନେ ଶ୍ରମିକଦଳ ସପକ୍ଷରେ ମତଦାନ କରିଥିଲେ । ୧୯୫୧ ପରେ ସେମାନେ ଜାତୀ ଦଳର ସମର୍ଥକ ଥିଲେ, କିନ୍ତୁ ୧୯୬୪ ପରେ ସେମାନେ ପୁନର୍ବାର ଶ୍ରମିକ ଦଳକୁ ସମର୍ଥନ କରିଥିଲେ ।

ଉପରୋକ୍ତ ବିଷୟଟି ଏଠାରେ ପରିଷ୍କାର କରି କୁହାଯିବା ଆବଶ୍ୟକ । ଏଥିରୁ କେହି ବୁଝିବା ଉଚିତ ନୁହେଁ ଯେ ଶ୍ରମଜୀବୀମାନେ ସର୍ବଦା ଶ୍ରମିକ ଦଳକୁ ଓ ବେତନଭୋଗୀ ମାନେ ସର୍ବଦା ଜାତୀ ଦଳକୁ ସମର୍ଥନ କରନ୍ତି ଏବଂ କିରାଣୀ କିମ୍ବା ବ୍ୟବସାୟ ପ୍ରତିଷ୍ଠାନ କର୍ମଚାରୀମାନେ "ଅନିଶ୍ଚିତ ସମର୍ଥକ" ( Floating vote ) ଭାବରେ ରହିଥାନ୍ତି । ଜଣେ ବ୍ୟକ୍ତିର ମତଦାନ ବିଷୟକୁ ବିଚାର ନ କରି ନିର୍ବାଚନମଣ୍ଡଳୀଗୁଡ଼ିକୁ ଜାତୀ ବା ଶ୍ରମିକ ଦଳୀୟ କିମ୍ବା ସୀମାନ୍ତ ନିର୍ବାଚନମଣ୍ଡଳୀ ରୂପେ ବିବେଚନା କରାଯାଏ । ଉକ୍ତ ନିର୍ବାଚନ-ମଣ୍ଡଳୀରେ ରହୁଥିବା ଅଧିକାଂଶ ଲୋକମାନଙ୍କ ଅର୍ଥନୈତିକ ସ୍ୱାର୍ଥକୁ ବିଚାର କରି ନିର୍ବାଚନ-ମଣ୍ଡଳୀର ପ୍ରକୃତ ନିର୍ଣ୍ଣୟ କରାଯାଇଥାଏ । ଅନେକ ଶ୍ରମଜୀବୀ ଜାତୀ ଦଳ ସପକ୍ଷରେ ମତଦାନ କରିଥିଲେ ମଧ୍ୟ ଗୋଟିଏ ଶ୍ରମଜୀବୀ ନିର୍ବାଚନମଣ୍ଡଳୀ ସାଧାରଣତଃ ଶ୍ରମିକ ଦଳ ସପକ୍ଷରେ ମତ ଦେଇଥାଏ । ଅନ୍ୟମାନଙ୍କ ପରି କିରାଣୀ ଓ ବ୍ୟବସାୟ ସହାୟକମାନେ ମଧ୍ୟ ନିଜ ମତ ପରିବର୍ତ୍ତନ କରନ୍ତି । ରାଜନୀତି କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ମତଭେଦ ଦେଖା ଦେଇଥାଏ । ସୁତରାଂ ଜନମତର ପରିବର୍ତ୍ତନ ସଙ୍ଗେ ନିର୍ବାଚନ-ମଣ୍ଡଳୀର ମତ ମଧ୍ୟ ପରିବର୍ତ୍ତିତ ହୋଇଥାଏ ।

ଏଠାରେ ଅନ୍ୟାନ୍ୟ ବିଷୟ ମଧ୍ୟ ବିଚାରକୁ ନିଆଯାଇଥାଏ । "ଶ୍ରେଣୀ ସ୍ୱାର୍ଥ" ( Class interest )ରେ ବି କେତେକ ପରିବର୍ତ୍ତନ ଘଟିଅଛି । ଅର୍ଥନୈତିକ ଦୃଷ୍ଟି-କୋଣରୁ ବିଚାର କଲେ ଡାଲମପ୍ରାପ୍ତ ଶ୍ରମିକ ଓ କିରାଣୀ ଗୋଟିଏ ଶ୍ରେଣୀରେ ଅନ୍ତର୍ଭୁକ୍ତ ।

ଶ୍ରବପ୍ରବଣତାର ଦଶବର୍ତ୍ତୀ ହୋଇ ସେମାନେ ନିଜକୁ ଦୁଇଟି ବିଭିନ୍ନ ଗୋଷ୍ଠୀ ରୂପେ ବିଚାର କରନ୍ତି । "ଶ୍ରମିକ ସଙ୍ଘଗୁଡ଼ିକ" ତାଲିମ ପାଇ ନ ଥିବା ଶ୍ରମିକମାନଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । କେତେକ ଅନିଚ୍ଛା ସତ୍ତ୍ୱେ ତାଲିମ ପ୍ରାପ୍ତ ଶ୍ରମିକମାନଙ୍କ ଦ୍ୱାରା ପରିଚାଳିତ କାରିଗରି ସଙ୍ଗଠନ ଗୁଡ଼ିକ ( Craft Unions ) ଶ୍ରମିକସଙ୍ଘ ସହିତ ମିଶି ଯାଇଥିଲେ । ଊନବିଂଶ ଶତାବ୍ଦୀରେ ଉପରସ୍ଥ "ମୁନିବମାନେ" ( bosses ) ଏହି ଉଭୟ ସଙ୍ଗଠନର ବିରୋଧୀ ଥିଲେ । ଜାତୀୟକରଣ କରାଯାଇଥିବା ଶିଳ୍ପାନୁଷ୍ଠାନଗୁଡ଼ିକ ସହିତ ବଡ଼ ବଡ଼ ନିଗମ (Corporations) ସୃଷ୍ଟି ହେବା ଫଳରେ "ଉପରସ୍ଥ ମୁନିବ" ଶ୍ରେଣୀ ଲୋପ ପାଇଯାଇଥିଲେ । ତଥାପି ପରମ୍ପରା ଚାଲି ଆସୁଛି । ତାଲିମ ପାଇଥିବା ଓ ତାଲିମ ନ ପାଇଥିବା ଶ୍ରମିକମାନେ ସଂଘକୁ ସମର୍ଥନ କରିଥାନ୍ତି ଓ ସଂଘଗୁଡ଼ିକ ଶ୍ରମିକ ଦଳକୁ ସମର୍ଥନ କରନ୍ତି । ସୂତାକଳ ତଥା କୃଷିକ୍ଷେତ୍ରରେ କାର୍ଯ୍ୟ କରୁଥିବା ଶ୍ରମିକ-ମାନେ ସାଧାରଣତଃ କ୍ଷୁଦ୍ର କ୍ଷୁଦ୍ର ଅନୁଷ୍ଠାନମାନଙ୍କରେ କାର୍ଯ୍ୟ କରନ୍ତି । ଏହି ଶ୍ରମିକମାନେ ଖଣି, ରେଲ ଏବଂ ଲୁହା ଓ ଇସ୍ପାତ କ୍ଷେତ୍ରରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କ ଅପେକ୍ଷା ଅଧିକ ସକ୍ରିୟ ଭାବରେ ୟୁନିୟନକୁ ସମର୍ଥନ କରିଥାନ୍ତି । ସାଉଥ୍ ଓ୍ୱେଲସ୍, ଡରହାମ ଓ ସାଉଥ୍ ୟର୍କସାୟାର୍ ସର୍ବଦା ଶ୍ରମିକ ଦଳକୁ ସମର୍ଥନ କରି ଆସିଅଛି, କିନ୍ତୁ ଲଙ୍କାସାୟାର୍ ଓ ୟର୍କସାୟାର୍‌ରେ "ମତ ପରିବର୍ତ୍ତନ" ହେବାର ସମ୍ଭାବନା ଦେଖାଯାଇଥାଏ ।

ଆର୍ଥନୀତିକ ଦୃଷ୍ଟିକୋଣରୁ କିରାଣୀ ଓ ଶିକ୍ଷକମାନେ ତାଲିମପ୍ରାପ୍ତ ଶ୍ରମିକମାନଙ୍କ ସହ ସମାନ ଥିଲେ ମଧ୍ୟ କିରାଣୀ ଓ ଶିକ୍ଷକମାନେ ନିଜକୁ ବେତନଭୋଗୀ କର୍ମଚାରୀ ବୋଲି ଭାବିଥାନ୍ତି ଓ ସେମାନେ ନିଜକୁ ମଧ୍ୟବିତ୍ତ ଶ୍ରେଣୀ ବୋଲି ବିଚାରିଥାନ୍ତି, (ଏଥିରୁ ରେଲ ବିଭାଗର କିରାଣୀମାନଙ୍କୁ ବାଦ ଦିଆଯାଇପାରେ ) । ଶିକ୍ଷକମାନଙ୍କ ଜାତୀୟ ସଙ୍ଗଠନ ଓ ଜାତୀୟ ତଥା ସ୍ଥାନୀୟ ସରକାରୀ କର୍ମଚାରୀ ସଙ୍ଗଠନ ପରି ସଂସ୍ଥାଗୁଡ଼ିକ ଅଣ-ରାଜନୈତିକ, ହେଲେ ମଧ୍ୟ ସେହି ସଂସ୍ଥାଗୁଡ଼ିକର ସଭ୍ୟମାନେ ରାଜନୈତିକ ଦୃଷ୍ଟିକୋଣରୁ ଭାଗ ଭାଗ ହୋଇଥାନ୍ତି । ସାମାଜିକ ସ୍ଥିତି ଅର୍ଥନୈତିକ ସ୍ଥିତିର ରୂପାନ୍ତର ନୁହେଁ, ଏହା ଏକ ଭିନ୍ନ ଚିନ୍ତାଧାରା ।

ଧର୍ମର ପ୍ରଭାବ ଫଳରେ ଆଉ ଏକ ଭାବ-ପ୍ରବଣତା ଦେଖା ଦେଇଥାଏ । ସାଧାରଣ ଭାବରେ କୁହାଯାଇ ପାରେ ଯେ ଇଂଲଣ୍ଡର ଚର୍ଚ୍ଚ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀ, ନନ୍‌କନଫର୍ମିଷ୍ଟ ଚର୍ଚ୍ଚଗୁଡ଼ିକ ( The Nonconformist churches ) ନିମ୍ନ ମଧ୍ୟବିତ୍ତ ଶ୍ରେଣୀ ଓ ରୋମାନ କାଥଲିକ ଚର୍ଚ୍ଚ ଶ୍ରମିକ ଶ୍ରେଣୀ ଅନ୍ତର୍ଭୁକ୍ତ । ଏହି ଶ୍ରେଣୀ ବିଭାଗ ବାହାରେ ବହୁ ଶ୍ରମିକ ଅନ୍ତର୍ଭୁକ୍ତ ରହି ଯାଉଛନ୍ତି । ସେମାନଙ୍କୁ କାଉପରଟେମ୍ପଲ ଖ୍ରୀଷ୍ଟିଆନ ( Cowper Temple Christians ) ବୋଲି କୁହାଯାଏ । ସାଧାରଣ ପ୍ରାଥମିକ ବିଦ୍ୟାଳୟ-ମାନଙ୍କରେ ଧର୍ମ ଶିକ୍ଷାଦେବା ବିଷୟ ନନ୍‌କନଫର୍ମିଷ୍ଟମାନଙ୍କ ତରଫରୁ ଲର୍ଡ଼ କାଉପର ( Lord Cowper ) ଏବଂ ଆଙ୍ଗ୍ଲିକାନ୍‌ମାନଙ୍କ ତରଫରୁ ଆର୍ଚ୍ଚବିଶପ ଟେମ୍ପଲ

( Archbishop Temple ) ପରସ୍ପର ଆଲୋଚନା କରି ବିଦ୍ୟାଳୟ ପାଠ୍ୟକ୍ରମରେ ଭର୍ତ୍ତି କରିଥିଲେ । ସେଥିପାଇଁ ଏପରି ନାମକରଣ କରାଯାଇଅଛି । ଅଧିକାଂଶ ଲୋକଙ୍କୁ ପ୍ରାୟ ଖ୍ରୀଷ୍ଟିଆନ ବୋଲି ଧରି ନିଆଯାଇଥାଏ; କିନ୍ତୁ ସେମାନଙ୍କ ମତଦାନ ଉପରେ ଧର୍ମର ପ୍ରଭାବ ପଡ଼େ ନାହିଁ । ଚର୍ଚ୍ଚ ଅଫ୍ ଇଂଲଣ୍ଡ ଓ ଚର୍ଚ୍ଚ ଅଫ୍ ରୋମ ଦୁଇଟି ରକ୍ଷଣଶୀଳ ସଂସ୍ଥା; କିନ୍ତୁ ( ବ୍ରିଟେନରେ ଥିବା ) ଚର୍ଚ୍ଚ ଅଫ ରୋମ ( The church of Rome ) ଆୟର୍ଲାଣ୍ଡ ଅଧିବାସୀଙ୍କ ଦ୍ୱାରା ମୁଖ୍ୟତଃ ପରିଚାଳିତ । ଆଇରିସ୍‌ମାନଙ୍କ ଉଗ୍ର ଚିନ୍ତାଧାରା ଯୋଗୁଁ ଯେଉଁଠାରେ ରୋମାନ ଚର୍ଚ୍ଚ ଦୃଢ଼ ଅଟେ ( ଯଥା ଲିଭରପୁଲ ଓ ଗ୍ଲାସ୍‌ଗୋ ), ସେଠାରେ ସାଧାରଣତଃ ଶ୍ରମିକ ଦଳ ବିଜୟ ଲାଭ କରିଥାନ୍ତି । ବହୁକାଳ ପର୍ଯ୍ୟନ୍ତ ନନ୍‌କନଫର୍ମିଷ୍ଟ ଚର୍ଚ୍ଚ-ଗୁଡ଼ିକ ନିଜ ଉଗ୍ର ଚିନ୍ତାଧାରା ଯୋଗୁ ଉଦାରବାଦୀ ଦଳକୁ ସମର୍ଥନ କରି ଆସିଥିଲେ । ସେଗୁଡ଼ିକୁ "ନନ୍‌କନଫର୍ମିଷ୍ଟ ବିବେକ" ( ଯଦି ଏହିପରି ଉପମା ପ୍ରୟୋଗ ହୋଇପାରେ ) ବୋଲି କୁହାଯାଉଥିଲା । କର୍ଣ୍ଣୱାଲ, ନର୍ଥ ଓ୍ୱେଲସ୍ ଓ ସ୍କଟଲଣ୍ଡର ଉତ୍ତର-ପଶ୍ଚିମାଞ୍ଚଳରେ ନନ୍‌କନଫର୍ମିଷ୍ଟ ଚିନ୍ତାଧାରା ବେଶୀ ଦେଖାଦେବା ଫଳରେ ସେହି ଅଞ୍ଚଳରେ ଉଦାରବାଦୀ-ମାନଙ୍କୁ ଅଧିକ ସମର୍ଥନ ମିଳୁଥିଲା । ସାଧାରଣତଃ ନନ୍‌କନଫର୍ମିଷ୍ଟମାନେ ଶ୍ରମିକ ଦଳକୁ ସମର୍ଥନ କରୁଥିଲେ ମଧ୍ୟ ବେଳେବେଳେ ସେମାନଙ୍କ ଚିନ୍ତାଧାରା ସମାଜବାଦୀମାନଙ୍କ ଚିନ୍ତାଧାରାଠାରୁ ଅଧିକ ଉଗ୍ର ମନେ ହୋଇଥାଏ ।

ଉପରୋକ୍ତ ଆଲୋଚନାରୁ ଏହା ଜଣାପଡ଼େ ଯେ ନିର୍ବାଚନର ଫଳାଫଳ ଆଗରୁ ଜଣା ପଡ଼ିଯାଏ ଓ ଏଥିରେ ପ୍ରାର୍ଥୀ, ଦଳୀୟ ନେତୃବୃନ୍ଦ ତଥା ସମର୍ଥକମାନଙ୍କର କୌଣସି ପ୍ରଭାବ ନ ଥାଏ । ଅନେକାଂଶରେ ଏହି କଥା ସତ୍ୟ ଅଟେ । କେତେକ ସ୍ଥାନ ସର୍ବଦା ଶ୍ରମିକ ଦଳ ସପକ୍ଷରେ ଓ ଅନ୍ୟ କେତେକ ସ୍ଥାନ ସର୍ବଦା ଜାତୀୟ ଦଳ ସପକ୍ଷରେ ଥାଏ । ଏତଦ୍‌-ବ୍ୟତୀତ କେତେକ ସୀମାନ୍ତବର୍ତ୍ତୀ ସ୍ଥାନରେ ପରିବର୍ତ୍ତନ ଘଟିଥାଏ । ୧୯୩୧ରେ ଜାତୀୟ ଦଳ ବିଜୟ ଲାଭ କରିଥିଲା । ୧୯୪୫ରେ ଓ ୧୯୬୪ରେ ( ଏହା ସନ୍ଦେହଜନକ ମନେହୁଏ ) ଶ୍ରମିକ ଦଳ ବିଜୟ ଲାଭ କରିଥିଲା କିନ୍ତୁ ୧୯୫୯ରେ ଜାତୀୟ ଦଳ ବିଜୟୀ ହୋଇଥିଲା । ଏଥିପାଇଁ ସୀମାନ୍ତବର୍ତ୍ତୀ ସ୍ଥାନ ଗୁଡ଼ିକ ବିଷୟରେ ଅନୁସନ୍ଧାନ କରିବାକୁ ପଡ଼ିଥାଏ ।

ମଧ୍ୟବିତ୍ତ ଶ୍ରେଣୀ ଅନ୍ତର୍ଭୁକ୍ତ ସ୍ୱଳ୍ପ ବେତନ-ଭୋଗୀ ଲୋକମାନେ ଅଧିକ ସଂଖ୍ୟାରେ ସୀମାନ୍ତବର୍ତ୍ତୀ ( ନିର୍ବାଚନମଣ୍ଡଳୀମାନଙ୍କରେ ବସବାସ କରୁଥାନ୍ତି ବୋଲି ପୂର୍ବରୁ ସୂଚନା ଦିଆଯାଇଅଛି । ଅର୍ଥନୈତିକ ଦୃଷ୍ଟିକୋଣରୁ ସେମାନଙ୍କ ସ୍ଥିତି ତାଲିମପ୍ରାପ୍ତ ଶ୍ରମିକ-ମାନଙ୍କ ସ୍ଥିତି ସହିତ ସମାନ; କିନ୍ତୁ ସାମାଜିକ କ୍ଷେତ୍ରରେ ସେମାନେ ବେତନଭୋଗୀ କର୍ମଚାରୀ-ମାନଙ୍କ ସହିତ ସଂଶ୍ଲିଷ୍ଟ । ସୁତରାଂ ସେମାନେ ଭାରି ଭାରି ହୋଇଥାନ୍ତି; କିନ୍ତୁ କାହିଁକି ସେମାନଙ୍କ ମତରେ ପରିବର୍ତ୍ତନ ଘଟିଥାଏ ? ସର୍ବପ୍ରଥମେ ଏ କଥା ଏଠାରେ ନିଶ୍ଚିତ ଭାବରେ ସୂଚାଇ ଦେବା ଉଚିତ ଯେ ପ୍ରତ୍ୟେକ ନିର୍ବାଚନ ସମୟରେ ନୂତନ ଯୁବକ ଓ ଯୁବତୀମାନଙ୍କ

ନାମ ନିର୍ବାଚକ ତାଲିକାରେ ଉଠିଥାଏ । ବେଳେବେଳେ ସେହି ଯୁବକ ଓ ଯୁବତୀମାନେ ସେମାନଙ୍କ ପାରିବାରିକ ରାଜନୀତି ଅନୁସରଣ କରନ୍ତି କିନ୍ତୁ ଅଧିକାଂଶ ସମୟରେ ସେମାନେ ପାରିବାରିକ ରାଜନୀତି ବିରୁଦ୍ଧରେ ବିଦ୍ରୋହ କରନ୍ତି । ୧୯୩୧ ପରେ ଯୁବଗୋଷ୍ଠୀ ବାମପନ୍ଥୀ ରାଜନୀତି ଆଡ଼କୁ ଚଳିବା ସ୍ଥଳେ ୧୯୪୫ ପରେ ସେମାନେ ଦକ୍ଷିଣପନ୍ଥୀ ହୋଇଯାଇଥିଲେ । ଦ୍ୱିତୀୟତଃ, ମତଦାନରୁ ବିରତ ରହୁଥିବା ଲୋକମାନଙ୍କ ବିଷୟ ବିଚାର କରାଯିବା ଉଚିତ । ସେମାନଙ୍କୁ ମଧ୍ୟ ଗୋଟିଏ ବିଶିଷ୍ଟ ରାଜନୈତିକ ଗୋଷ୍ଠୀ ବୋଲି କୁହା ଯାଇପାରେ । ସମଗ୍ର ଦେଶରେ ଏହିପରି ବ୍ୟକ୍ତି ଥାଆନ୍ତି ଓ ସେମାନଙ୍କ ସଂଖ୍ୟା ମତଦାତାମାନଙ୍କ ସଂଖ୍ୟାର ୧୫ ଭାଗରୁ ୨୦ ଭାଗ ମଧ୍ୟରେ ଥାଏ । ସେମାନଙ୍କ ମଧ୍ୟରୁ କେତେଜଣ ବେରୋଗ ଥିବାରୁ, କେତେଜଣ ଘରଠାରୁ ଦୂରରେ ଥିବାରୁ, କେତେକଙ୍କର ରାଜନୀତି ପ୍ରତି ବିତୃଷ୍ଣା ଥିବାରୁ, କେତେଜଣ ରାଜନୀତିକୁ ଖେଳ ପ୍ରକୃତିର ଖେଳ ବୋଲି ଭାବୁଥିବାରୁ, କେତେ ଜଣ ନିଜର ବିବେକ ଅନୁସାରେ କୌଣସି ଗୋଟିଏ ରାଜନୈତିକ ଦଳକୁ ସମର୍ଥନ କରୁ ନ ଥିବାରୁ ଓ ଅନ୍ୟ କେତେକ ରାଜନୀତି ପ୍ରତି ଆଗ୍ରହ ପ୍ରକାଶ କରୁ ନ ଥିବାରୁ ନିର୍ବାଚନରେ ମତଦାନ କରି ପାରନ୍ତି ନାହିଁ । ମତଦାନରୁ ବିରତ ରହୁଥିବା ଲୋକମାନଙ୍କ ସଂଖ୍ୟା ନିର୍ବାଚନ ପ୍ରଚାରର ଦକ୍ଷତା ଉପରେ ନିର୍ଭର କରେ । ଏହା ମଧ୍ୟ କେତେକାଂଶରେ ରାଜନୈତିକ ଦଳର ସମର୍ଥକମାନଙ୍କ ଉପରେ ନିର୍ଭର କରିଥାଏ । ପ୍ରଚାରପତ୍ର, ସଭା, ଟେଲିଭିଜନ ଆଲୋଚନା ଓ ଲେଖାଲେଖି ମାଧ୍ୟମରେ ଜନସାଧାରଣଙ୍କ ମଧ୍ୟରେ ନିର୍ବାଚନ ପ୍ରତି ଆଗ୍ରହ ସୃଷ୍ଟି ହୁଏ । ନିର୍ବାଚନ-ପ୍ରତିଦ୍ୱନ୍ଦ୍ୱିତା ଆକର୍ଷଣୀୟ ହୋଇଥିଲେ, ବହୁତ ଲୋକ ମତଦାନ କରିବାକୁ ଆଗଭର ହୁଅନ୍ତି । ପ୍ରତିଯୋଗିତା ଏହିପରି ଆକର୍ଷଣୀୟ ହୋଇଥିଲେ ଡର୍ବୀ କପ୍ ଫାଇନାଲ ଟେଷ୍ଟ ମ୍ୟାଚ ଓ ବୋଟ୍ ରେସର୍ ଦର୍ଶକମାନଙ୍କ ତୁଳନାରେ ବହୁ ଅଧିକ ସଂଖ୍ୟକ ଲୋକ ମତଦାନ କରିବାକୁ ଆସନ୍ତି । ଏଥିରେ ଭାଗ ନେଇଥିବା ନିର୍ବାଚକମାନେ ସମସ୍ତେ ରାଜନୈତିକ ଦଳର ଦୃଢ଼ ସମର୍ଥକ ନ ଥାନ୍ତି । ରାଜନୀତି ଶାସ୍ତ୍ରର କେତେକ ଗ୍ରନ୍ଥ ଉପରୋକ୍ତ ବ୍ୟକ୍ତିମାନଙ୍କ ମତଦାନକୁ "ଭାସମାନ ମତ" ବା ଅନିଶ୍ଚିତ ସମର୍ଥନ ବୋଲି ବର୍ଣ୍ଣନା କରନ୍ତି । ଜଣେ "ସ୍ତ୍ରୀ ଲୋକଙ୍କୁ" ମତଦାନ ଦେବା ପାଇଁ ପ୍ରବର୍ତ୍ତାଇବା ଫଳରେ ସେ କଷ୍ଟ ସହ୍ୟ କରି ନିର୍ବାଚନ କରାଯାଉଥିବା ସ୍ଥାନକୁ ଯାଇ ନିଜେ ମତଦାନ କରନ୍ତି । ସେହି ସ୍ତ୍ରୀଲୋକ ଜଣକ ସାଧାରଣତଃ ତାଙ୍କ ସ୍ୱାମୀଙ୍କ ପଦାଙ୍କ ଅନୁସରଣ କରିଥାନ୍ତି । ଉଦାହରଣ ସ୍ୱରୂପ, ଏଠାରେ ସାଧାରଣତଃ ଶ୍ରମିକ ଦଳ ସପକ୍ଷରେ ଭୋଟ ମିଳିଥାଏ । ଜଣେ ଉଚ୍ଚ ସମ୍ମାନିତ ଭଦ୍ରମହିଳାଙ୍କୁ ତାଙ୍କ ସଞ୍ଚିତ ଅର୍ଥ ବିପଦର ସମ୍ମୁଖୀନ କରାଇପାରେ ବୋଲି କହିଲେ, ସେ ଜାତୀୟଦଳ ସପକ୍ଷରେ ମତଦାନ କରନ୍ତି । ବାସ୍ତବିକ, ଅଧିକ ସଂଖ୍ୟକ ଲୋକ ମତଦାନ କଲେ ତାହା ଜାତୀୟଦଳ ପ୍ରତି ଅନୁକୂଳ ହୁଏ ବୋଲି ପ୍ରମାଣ ଅଛି । ଗୋଟିଏ ଉଗ୍ରବାଦୀ ଦଳ "ବାଜେ" କଥା ପ୍ରଚାର କଲେ ତାହାକୁ ଭବିଷ୍ୟତରେ ବନ୍ଦ କରିବା ଉଦ୍ଦେଶ୍ୟରେ ମତଦାନରୁ ସାଧାରଣତଃ ବିରତ ରହୁଥିବା ଲୋକେ ମତଦାନ କରିବାକୁ ଆଗଭର ହୁଅନ୍ତି ।

ଶେଷରେ "ଭାସମାନ ମତ" ( **Floating vote** ) ବିଷୟରେ ଆଲୋଚନା କରାଯାଇପାରେ । ଏହାକୁ "ଦୋଳାୟମାନ ବା ଦୋ-ଦୁଲ୍ୟମାନ ମତ" ( **Swinging vote** ) ବୋଲି ଆଖ୍ୟା ଦିଆଯାଇପାରେ, କାରଣ ଏହା ଦ୍ୱାରା ଜଣେ ନିର୍ବାଚକ ଗୋଟିଏ ନିର୍ବାଚନରେ ଗୋଟିଏ ଦଳ ସପକ୍ଷରେ ମତଦାନ କରିଥିଲେ, ଅନ୍ୟ ଏକ ନିର୍ବାଚନରେ ଆଉ ଏକ ଦଳ ସପକ୍ଷରେ ମତଦାନ କରନ୍ତି । ଏହି ମତଦାତା-ମାନଙ୍କ ସଂଖ୍ୟା ନିର୍ଣ୍ଣୟ ଏକ ବିବାଦୀୟ ସମସ୍ୟା । କେତେକଙ୍କ ମତରେ ଏପରି ମତଦାତା-ମାନଙ୍କ ସଂଖ୍ୟା ଏକ କୋଟି ଓ ବୃଦ୍ଧି ପାଇଲେ ଏହା ଦୁଇ କୋଟି ହୋଇପାରେ । ଏହାର କାରଣ ହେଉଛି, ଜଣେ ଜାତିଦଳର ପ୍ରାର୍ଥୀ ଚାରି ହଜାର ଅଧିକ ମତ ପାଇଥିଲେ ଓ ସେଥିରୁ ଏକ ହଜାର ମତଦାନ ପତ୍ର ଶ୍ରମିକଦଳ ଲାଭ କରିପାରିଲେ, ଜାତିଦଳର ସଂଖ୍ୟା ଗରିଷ୍ଠତା ଦୁଇ ହଜାରକୁ କମି ଆସିବ । ଅନ୍ୟ କେତେକଙ୍କ ମତରେ ଭାସମାନ ମତର ସଂଖ୍ୟା ପ୍ରାୟ ୧୫ ଲକ୍ଷ ଓ ଏହା ଅତି ବେଶୀରେ ୩୦ ଲକ୍ଷ ପର୍ଯ୍ୟନ୍ତ ହୋଇପାରେ । ଉପରୋକ୍ତ ଦୁଇ ଗଣନା ମଧ୍ୟରେ ଯେଉଁ ପାର୍ଥକ୍ୟ ଦେଖାଯାଏ, ତାହା କେତେକାଂଶରେ "ଭାସମାନ ମତ"ର ସଂଜ୍ଞାରୁ ସୃଷ୍ଟି ହୋଇଛି । ଯେଉଁମାନେ ଏହି ସଂଖ୍ୟା ଖୁବ୍ ଅଧିକ ବୋଲି ବିଚାର କରନ୍ତି, ସେମାନଙ୍କ ମତରେ ନିର୍ବାଚକମାନଙ୍କର କୌଣସି ନିର୍ଦ୍ଦିଷ୍ଟ ରାଜନୈତିକ ଦର୍ଶନ ନ ଥାଏ ଏବଂ ସେମାନେ ସାମୟିକ ଘଟଣା ଦ୍ୱାରା ପ୍ରଭାବିତ ହୋଇଯାନ୍ତି । ଏହି ଲୋକମାନେ ୧୯୧୮ ର ହତ୍ୟା ବନ୍ଦ, ୧୯୩୧ର ଅର୍ଥନୈତିକ ମୂଲ୍ୟହ୍ରାସ ଓ ୧୯୪୫ର ମିତବ୍ୟୟିତାର ଦୃଷ୍ଟାନ୍ତ ଦେଇଥାନ୍ତି । ଯେଉଁମାନେ ଉକ୍ତ ସଂଖ୍ୟା କମ୍ ବୋଲି କହିଥାନ୍ତି, ସେମାନେ ନିର୍ବାଚନରେ ଲୋକମାନେ କିପରି ଭୋଟ ଦିଅନ୍ତି ଓ କାହିଁକି ଭୋଟ ଦିଅନ୍ତି ତାହା ଜାଣିବା ପାଇଁ ଆଗ୍ରହୀ ନୁହନ୍ତି । ଉଦାହରଣ ସ୍ୱରୂପ, ଜାତି ଦଳକୁ ସମର୍ଥନ କରିବା ଠିକ୍ ବୋଲି ଯଦି ଜଣେ ମତଦାତା ଭାବୁଥାନ୍ତି ଓ ଏହାର କାରଣ ସେ ଜାଣି ନ ଥାନ୍ତି, ତେବେ ତାହାକୁ ଭାସମାନ ମତ କୁହା ନ ଯାଇ ନିରାପଦ ମତ କୁହାଯାଇପାରେ ।

ଭାସମାନ ମତର ସଂଖ୍ୟା କମ୍ ବୋଲି ଯେଉଁମାନେ ଅଟକଳ କରନ୍ତି, ସେମାନଙ୍କ ଗଣନା ଯଥାର୍ଥ ମନେହୁଏ । ବହୁ ସହସ୍ର ମତଦାତା ଅଛନ୍ତି ଯେଉଁମାନଙ୍କ ନିର୍ଦ୍ଦିଷ୍ଟ ରାଜନୈତିକ ମତ ସହଜରେ ଜଣାପଡ଼େ ନାହିଁ । ବୋଟ ରେସ୍ ବେଳେ ଅକ୍ସଫୋର୍ଡ଼ କିମ୍ବା କେମ୍ବ୍ରିଜ ବିଶ୍ୱବିଦ୍ୟାଳୟକୁ ସମର୍ଥନ କଲାପରି, ସାଧାରଣ ନିର୍ବାଚନ ସମୟରେ ସେମାନେ ଜାତିଦଳ ବା ଶ୍ରମିକ ଦଳକୁ ସମର୍ଥନ କରିଥାନ୍ତି । ଲୋକମାନେ ଯୌବନରେ ସେମାନଙ୍କର ମତାମତ ଠିକ୍ କରିଥାନ୍ତି । ପରେ ସେମାନେ ସେମାନଙ୍କ ମତ ପରିବର୍ତ୍ତନ କରିପାରନ୍ତି । କିନ୍ତୁ ଖୁବ୍ କ୍ୱଚିତ ଲୋକ "ଭାସମାନ" ଅବସ୍ଥାରେ ଥାଆନ୍ତି' ଅର୍ଥାତ୍ ପ୍ରଥମ ନିର୍ବାଚନରେ ଗୋଟିଏ ଦଳ ସପକ୍ଷରେ ମତବ୍ୟକ୍ତ କରି, ଦ୍ୱିତୀୟ ନିର୍ବାଚନରେ ଆଉ ଗୋଟିଏ ଦଳ ସପକ୍ଷରେ ଓ ତୃତୀୟ ନିର୍ବାଚନରେ ପୁନର୍ବାର ପୂର୍ବ ଦଳ ସପକ୍ଷରେ

ମତଦାନ କରିବା ଦେଖାଯାଏ । ବହୁ ସମୟରେ ଏହି ଦୋଳାୟମାନ ଅବସ୍ଥା ବରଂ କମ୍ ଦେଖାଯାଇଥାଏ । ମତଦାନ କ୍ଷେତ୍ରରେ ସ୍ୱାଧୀନ ହେଲେ ମତଦାତା ନିଜର ବିବେକ ଅନୁସାରେ କୌଣସି ଗୋଟିଏ ଦଳ ସପକ୍ଷରେ ମତଦାନ କରିବାକୁ ସମର୍ଥ ହୁଏ ନାହିଁ ।

ଏ ପର୍ଯ୍ୟନ୍ତ ନିର୍ବାଚନରେ ପ୍ରତିଯୋଗିତା କରୁଥିବା ପ୍ରାର୍ଥୀମାନଙ୍କ ବିଷୟରେ କିଛି କୁହାଯାଇ ନାହିଁ । ଏହାର କାରଣ ହେଉଛି ପ୍ରାର୍ଥୀମାନଙ୍କ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଏ ନାହିଁ । ଦୁଇ ବିଶ୍ୱଯୁଦ୍ଧର ମଧ୍ୟବର୍ତ୍ତୀ ଦ୍ୱି-ସ୍ଥାନ ବିଶିଷ୍ଟ ନିର୍ବାଚନ-ମଣ୍ଡଳୀ ଥିବା ସମୟରେ ଉପରୋକ୍ତ ଘଟଣାର ସତ୍ୟତା ଭଲଭାବେ ଉପଲବ୍ଧି କରାଯାଇ ପାରୁଥିଲା । ଜଣେ ନିର୍ବାଚକ ଦୁଇ ଜଣ ପ୍ରାର୍ଥୀଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ ଗୋଟିଏ ଲେଖା ଭୋଟ ଦେଇ ପାରୁଥିଲା । ସୁତରାଂ ପ୍ରତ୍ୟେକ ଦଳ ଦୁଇଜଣ ପ୍ରାର୍ଥୀ ଠିଆ କରୁଥିଲେ । ଜାତି ଦଳର ଦୁଇଜଣ, ଉଦାର ଦଳର ଦୁଇଜଣ କିମ୍ବା ଶ୍ରମିକ ଦଳର ଦୁଇଜଣ ପ୍ରାର୍ଥୀଙ୍କ ମଧ୍ୟରେ ବିଶେଷ ପାର୍ଥକ୍ୟ ନ ଥିଲା । ଏ କଥା ନିଶ୍ଚିତ ଯେ ଗୋଟିଏ ଦଳର ଦୁଇଜଣ ପ୍ରାର୍ଥୀଙ୍କ ମଧ୍ୟରୁ ଜଣେ ହୁଏତ ଅଧିକ ଦକ୍ଷ ହୋଇପାରନ୍ତି । ତାଙ୍କ ଦକ୍ଷତା ହୁଏତ ବେଶୀ, କିମ୍ବା ଅଧିକ ସଂଖ୍ୟକ ଲୋକେ ତାଙ୍କୁ ଭଲ ପାଉଥିଲେ, ଅଥବା ସେ ଜଣେ ସୁବକ୍ତା ଥିଲେ, କିମ୍ବା ବ୍ୟକ୍ତିଗତ ଭାବରେ ତାଙ୍କର ବହୁତ ସ୍ଥାନୀୟ ସାଙ୍ଗସାଥୀ ଥିଲେ । ଯଦି କିଛି ମତଭେଦ ଦେଖା ଦେଉଥିଲା, ତାହା ବିଶେଷ ଗୁରୁତର ନ ଥିଲା । ବାସ୍ତବିକ୍ ଜଣେ ନିର୍ବାଚକ କହୁଥିଲା, "ମୁଁ ସାଧାରଣତଃ ଶ୍ରମିକ ଦଳକୁ ସମର୍ଥନ କରିଥାଏ; କିନ୍ତୁ "କ" ଜଣେ ସ୍ଥାନୀୟ ଲୋକ ଏବଂ ସେ ଜଣେ ଭଲ ଲୋକ ହୋଇଥିବାରୁ ମୁଁ ମୋ ଭୋଟରୁ ଗୋଟିଏ ତାଙ୍କ ସପକ୍ଷରେ ଦେବି ।" ବେଳେ ବେଳେ ଏପରି ନିର୍ବାଚକଙ୍କ ସଂଖ୍ୟା ଏତେ ବେଶୀ ହେଉଥିଲା ଯେ ନିର୍ବାଚନର ଫଳାଫଳକୁ ଏହା ଏକାଧିକ ବାର ପ୍ରଭାବିତ କରିଥିଲା । ଏହି ପରିବର୍ତ୍ତନ ଦକ୍ଷିଣପନ୍ଥୀ ହେଲେ ଦୁଇ ଜଣ ଜାତି ଦଳର ପ୍ରାର୍ଥୀ ନିର୍ବାଚିତ ହେଉଥିଲେ । ଏହି ପରିବର୍ତ୍ତନ ବାମପନ୍ଥୀ ହେଲେ, ଦୁଇଜଣ ଶ୍ରମିକ ଦଳର ପ୍ରାର୍ଥୀ ନିର୍ବାଚିତ ହେଉଥିଲେ । ଏହା ସେତେବେଳେ ଦ୍ୱିସ୍ଥାନ ବିଶିଷ୍ଟ ନିର୍ବାଚନ-ମଣ୍ଡଳୀରେ ଘଟୁଥିବା ବେଳେ ବର୍ତ୍ତମାନ ଏହା ସମସ୍ତ ନିର୍ବାଚନ-ମଣ୍ଡଳୀମାନଙ୍କରେ ଘଟୁଛି । ଲୋକମାନେ ପ୍ରାର୍ଥୀଙ୍କ ପରିବର୍ତ୍ତେ ଦଳ ସପକ୍ଷରେ ମତବ୍ୟକ୍ତ କରିଥାନ୍ତି ।

ସୀମାନ୍ତ ନିର୍ବାଚନମଣ୍ଡଳୀ ଉପରେ ଗୁରୁତ୍ୱ ଦିଆଯାଉଥିବାରୁ ଆଉ ଗୋଟିଏ ପରିଣତି ଦେଖାଯାଏ । ନିର୍ବାଚନରେ ଜିତିବାକୁ ହେଲେ ଯେ କୌଣସି ଗୋଟିଏ ଦଳକୁ ଯଥେଷ୍ଟ ସଂଖ୍ୟାରେ ସୀମାନ୍ତ ନିର୍ବାଚନମଣ୍ଡଳୀରେ ବିଜୟ ହାସଲ କରିବାକୁ ପଡ଼ିବ । ପ୍ରତ୍ୟେକ ଦଳର କେତେକ ନିରାପଦ ସ୍ଥାନ ଥାଏ । ପ୍ରତ୍ୟେକ ଦଳ ନିଜ ନିରାପଦ ସ୍ଥାନଗୁଡ଼ିକୁ ହରାନ୍ତି ନାହିଁ, ଅଥବା ଗୋଟିଏ ଦଳ ଅନ୍ୟ ଦଳର ନିରାପଦ ସ୍ଥାନରେ ବିଜୟ ହାସଲ କରିପାରନ୍ତି ନାହିଁ । ଗୋଟିଏ ଦଳ ନିଜର ଦୃଢ଼ ସମର୍ଥକମାନଙ୍କୁ ହରାଇବାକୁ ନ ଚାହିଁବା ସ୍ୱାଭାବିକ । ଶ୍ରମିକ ଦଳ

ଖଣି ଅଞ୍ଚଳରେ କାର୍ଯ୍ୟ କରୁଥିବା ଲୋକମାନଙ୍କ ମଧ୍ୟରେ ଅପ୍ରିୟ ହେଲେ, ହୁଏତ ଗୋଟିଏ ନୂତନ କମ୍ୟୁନିଷ୍ଟ ଦଳ ସୃଷ୍ଟି ହୋଇପାରେ । ସେହିପରି ସହରାଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କ ମଧ୍ୟରେ ଜାତୀୟ ଦଳ ଅପ୍ରିୟ ହେଲେ ହୁଏତ ଆଉ ଏକ ଚରମ ଦକ୍ଷିଣପନ୍ଥୀ ଦଳ ସୃଷ୍ଟି ହୋଇପାରେ । ଅବଶ୍ୟ ଏପରି ପରିସ୍ଥିତି ସୃଷ୍ଟି ହେବାର ସମ୍ଭାବନା ବହୁତ କମ୍ । ଖଣି ଅଞ୍ଚଳରେ କାର୍ଯ୍ୟ କରୁଥିବା ଲୋକମାନେ କୌଣସି ନୀତି-ନିର୍ଦ୍ଧାରଣରେ ନିଜର ପ୍ରଭାବ ପକାଇବାକୁ ଚାହିଁଲେ ଶ୍ରମିକ ଦଳକୁ ନିଶ୍ଚିତ ଭାବରେ ସଂଖ୍ୟାଗରିଷ୍ଠତା ହାସଲ କରିବାରେ ସାହାଯ୍ୟ କରିବେ ଓ ଏଥିପାଇଁ ଅନେକ ସୀମାନ୍ତ ନିର୍ବାଚନମଣ୍ଡଳୀରେ ଶ୍ରମିକ ଦଳକୁ ବିଜୟ ହାସଲ କରିବାକୁ ପଡ଼ିବ । ସହରାଞ୍ଚଳରେ ବସବାସ କରୁଥିବା ଲୋକମାନେ କୌଣସି ନୀତିକୁ ପ୍ରଭାବିତ କରିବାକୁ ହେଲେ ଜାତୀୟ ଦଳକୁ ଅନେକ ସୀମାନ୍ତ ନିର୍ବାଚନମଣ୍ଡଳୀରେ ବିଜୟ ହାସଲ କରିବାରେ ସାହାଯ୍ୟ କରିବେ । ସୁତରାଂ, ଉଭୟ ଦଳ ସୀମାନ୍ତ ନିର୍ବାଚନମଣ୍ଡଳୀ-ଗୁଡ଼ିକ ଉପରେ ନିର୍ଭର କରିଥାନ୍ତି ଓ ସେହି ନିର୍ବାଚନମଣ୍ଡଳୀର ମତଦାତାମାନଙ୍କୁ ନିଜ ନିଜ ଦଳ ସପକ୍ଷରେ ମତଦାନ କରିବାକୁ ନିବେଦନ କରିଥାନ୍ତି ।

ନିର୍ବାଚନର ଫଳାଫଳ ବିଶ୍ଳେଷଣ କଲେ ଦେଖା ଯାଇଥାଏ ଯେ ନିବେଦନ ମାଧ୍ୟମରେ ଖୁବ୍ କମ ମତଦାତାମାନଙ୍କର ସମର୍ଥନ ଲାଭ ହୋଇଥାଏ । ୧୯୩୧ ଓ ୧୯୪୫ ମସିହାର ନିର୍ବାଚନରେ ମିଳିଥିବା ଭୋଟ ମଧ୍ୟରେ ଥିବା ବିରାଟ ପାର୍ଥକ୍ୟକୁ ବାଦ ଦେଲେ ଅନ୍ୟ ସମୟରେ ହଜାରେ ଭୋଟରେ ପରିବର୍ତ୍ତନ ଘଟିଥିଲେ ସରକାର ଗଠନରେ ପରିବର୍ତ୍ତନ ଘଟିଥାନ୍ତି । ଏହା ୧୯୩୫, ୧୯୫୦ କିମ୍ବା ୧୯୫୨ରେ ଘଟିଥିଲା । ବାସ୍ତବିକ, ୧୯୩୫ ରେ ଏହି ସଂଖ୍ୟା ୭୫୦,୦୦୦ ଥିଲା । ସୀମାନ୍ତ ନିର୍ବାଚନମଣ୍ଡଳୀମାନଙ୍କ ମଧ୍ୟରୁ ନିମ୍ନ ମଧ୍ୟବିତ୍ତ ନିର୍ବାଚନମଣ୍ଡଳୀଗୁଡ଼ିକରେ ଏହି ପରିବର୍ତ୍ତନ ଦେଖା ଯାଇଥାଏ । ଉଭୟ ଦଳ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ସମର୍ଥନ ଲାଭ କରିବାକୁ ଚାହାନ୍ତି । ତଦନୁସାରେ ଉଭୟ ଦଳ ପ୍ରଚାର ମାଧ୍ୟମରେ ଜନସାଧାରଣଙ୍କୁ ନିଜ ଦଳ ପ୍ରତି ଆକୃଷ୍ଟ କରିଥାନ୍ତି । ସହରାଞ୍ଚଳରେ ବସବାସ କରୁଥିବା ଲୋକମାନେ ଜାତୀୟ ସ୍ୱାସ୍ଥ୍ୟ ସେବା କିମ୍ବା ବ୍ୟୟବହୁଳ ସର୍ବସାଧାରଣ ଶିକ୍ଷା ବ୍ୟବସ୍ଥା ଅଥବା ଜନମଙ୍ଗଳ ରାଷ୍ଟ୍ର ସମ୍ବନ୍ଧରେ ଅଧିକ ଚିନ୍ତା କରି ନ ଥାନ୍ତି । କିନ୍ତୁ ଏହା ଫଳରେ ଶ୍ରମିକ ଦଳ ଅଧିକ ଜନପ୍ରିୟ ହୋଇଯିବାର ସମ୍ଭାବନା ଥିବାରୁ, ସେମାନେ ବାଧ୍ୟ ହୋଇ ଏହି ବିଷୟ-ଗୁଡ଼ିକ ସମ୍ବନ୍ଧରେ କିଛି ନା କିଛି ପ୍ରକାଶ କରିଥାନ୍ତି । ଶ୍ରମିକ ଦଳର ତତ୍ତ୍ୱବିତ୍‌ମାନେ ଅପେକ୍ଷାକୃତ ଅଧିକରୁ ଅଧିକ ଶିଳ୍ପ ଜାତୀୟକରଣ ଚାହିଁପାରନ୍ତି; କିନ୍ତୁ ସେମାନେ ତାଙ୍କ ତତ୍ତ୍ୱକୁ କମ୍ ଆଡ଼ମ୍ବରପୂର୍ଣ୍ଣ ବସ୍ତି ଅଞ୍ଚଳରେ ରହୁଥିବା ମାଲିକମାନଙ୍କୁ ଭୟଭୀତ କରିବା ପାଇଁ ପ୍ରୟୋଗ କରିବା ଉଚିତ ନୁହେଁ । ଲଣ୍ଡନର ପ୍ରଚଳିତ ବ୍ୟବସ୍ଥାନୁସାରେ ଲାଇମହାଉସ ଅଥବା ଚେଲ୍‌ସିର ଲୋକମାନଙ୍କ ଅପେକ୍ଷା ହାମରସ୍ମିଥ କିମ୍ବା ଉଡ୍‌ଗ୍ରୀନ୍‌ର ଲୋକମାନଙ୍କ ଉପରେ ଅଧିକ ଗୁରୁତ୍ୱ ଆରୋପ କରାଯାଇଥାଏ । ତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ଲିଖିତ ପୁସ୍ତକମାନଙ୍କରୁ ଦଳୀୟ ରାଜନୀତି ଅନୁଧ୍ୟାନ କରାଯାଇ ନ ଥାଏ; ବରଂ ଏହା ଜାତୀୟ ଦଳର ମୁଖ୍ୟ ଅଫିସ

ଟ୍ରାନସପୋର୍ଟ ହାଉସ ( Transport House )ରୁ ପ୍ରକାଶ ପାଉଥିବା ସରକାରୀ ଦଲିଲ-ମାନଙ୍କରୁ ଅନୁଧ୍ୟାନ କରାଯାଇଥାଏ । ସଂପୃକ୍ତ ଦଳଗୁଡ଼ିକ ବିଭିନ୍ନ ବିଷୟ ଉପରେ ଦୃଷ୍ଟି ଦେଉଥିଲେ ମଧ୍ୟ ଏହି ପାର୍ଥକ୍ୟ ସେତେ ବେଶୀ ନୁହେଁ ବୋଲି ଜଣାଯାଏ । ସମାଜବାଦରେ ଏହି ପାର୍ଥକ୍ୟ ବିଶେଷଭାବେ ପରିଲକ୍ଷିତ ହୁଏ ବୋଲି ଯାହା କୁହାଯାଏ, ତାହା ଠିକ୍ ନୁହେଁ । ଏହାର କାରଣ ହେଉଛି ସରକାରୀ ଭାବରେ ଶ୍ରମିକ ଦଳ ଗ୍ରହଣ କରିଥିବା ସମାଜବାଦ କେବଳ ଅଳ୍ପ କେତେକ ଗୁରୁତ୍ୱପୂର୍ଣ୍ଣ ଶିଳ୍ପର ଜାତୀୟକରଣକୁ ବୁଝାଇଥାଏ । ଅପର ପକ୍ଷରେ ଜାତୀୟ ଦଳ ଅବାଧ ପ୍ରତିଯୋଗିତା ସପକ୍ଷରେ ମତ ଦିଏ ନାହିଁ । ଶ୍ରମିକ ଦଳ ଯେତେବେଳେ ଖଣିଗୁଡ଼ିକୁ ଜାତୀୟକରଣ କରିବାକୁ ଚାହିଁଲା, ଖଣି ଶିଳ୍ପକୁ ଅଧିକ ଉତ୍ପାଦନ କ୍ଷମ କରିବା ପାଇଁ ଶ୍ରମିକ ଦଳ ତାହାକୁ ପୁନର୍ଗଠନ କରିବାକୁ ମଧ୍ୟ ଚାହୁଁଥିଲା ।

## ଦ୍ୱିଦଳୀୟ ବ୍ୟବସ୍ଥା (The Two-Party System) :—

ଇଂଲଣ୍ଡରେ ଦ୍ୱିଦଳୀୟ ବ୍ୟବସ୍ଥା ହୁଏତ କାହାକୁ ଭଲ ଲାଗି ନ ପାରେ । ଏକଥା ସତ ଯେ ସେଠାରେ ଉଦାରବାଦୀ ଦଳ (Liberal Party) ନାମରେ ଆଉ ଗୋଟିଏ ଦଳ ଅଛି; କିନ୍ତୁ ଏହି ଦଳର କୌଣସି ପ୍ରଭାବ ନାହିଁ । କାଳଚକ୍ରର ଘୂର୍ଣ୍ଣନାନୁସାରେ ନୂତନ ଦଳଗୁଡ଼ିକର ଅଭ୍ୟୁଦୟ ଘଟିଛି, କିନ୍ତୁ ସେଗୁଡ଼ିକ ରୁଗ୍ଣ ହୋଇଥିବାରୁ ଶୀଘ୍ର ମୃତ୍ୟୁ ମୁଖରେ ପଡ଼ିଛନ୍ତି ।

ଏହି ପୁସ୍ତକର ପାଠକ ରାଜନୀତିର ବିଭିନ୍ନ ବିଷୟ ଜାଣିବା ପାଇଁ ହୁଏତ ଆଗ୍ରହ ପ୍ରକାଶ କରିପାରେ । କୌଣସି ଗୋଟିଏ ଦଳର ନୀତି ସହିତ ଜଣେ ପାଠକ ସମ୍ପୂର୍ଣ୍ଣ ଏକମତ କି ନୁହେ ବୋଲି ପଚାରିଗଲେ ସେ ହୁଏତ ନାହିଁ କରି ପାରେ । ସମ୍ଭବତଃ ଅଧିକାଂଶ ଲୋକ ଦଳୀୟ ନୀତିଗୁଡ଼ିକୁ ଅଧ୍ୟୟନ କରି ନ ଥାନ୍ତି । ସେମାନଙ୍କର ଚିନ୍ତାଧାରା ଅସ୍ପଷ୍ଟ ଓ ତାହା ବିଭିନ୍ନ ଧ୍ୱନି ମାଧ୍ୟମରେ ପ୍ରକାଶିତ ହୋଇଥାଏ । ସେମାନେ କେଉଁ ଦଳକୁ ସମର୍ଥନ କରିବେ ତାହା ଧ୍ୱନିଗୁଡ଼ିକରୁ ଜଣାପଡ଼ିଥାଏ । ସେମାନେ "ହୋମ୍" (Home)ଙ୍କ ସପକ୍ଷରେ କିମ୍ବା ଉଇଲସନଙ୍କ ସପକ୍ଷରେ କହିବା ଯାହା ସେମାନେ "ଟୋଟେନହାମ ହୋଷ୍ଟପର" ଅଥବା "ମଡ଼ଲସେକ୍ସ" ସପକ୍ଷରେ କହିବା ତାହାବୋଲି ବୁଝାଯାଇଥାଏ । ତଥାପି ଲୋକମାନଙ୍କର ନିଜ ଚିନ୍ତାଧାରା ଅଛି । ସେମାନଙ୍କ ଚିନ୍ତାଧାରା କୌଣସି ଦଳର ନୀତି ସହିତ ସମ୍ପୂର୍ଣ୍ଣ ଏକମତ ହୋଇ ନପାରେ । ଯେଉଁ ଲୋକମାନେ ଅଧିକ ସକ୍ରିୟ ହୋଇ ଇଚ୍ଛାକଲେ ନିଜେ ଗୋଟିଏ ରାଜନୈତିକ ଦଳ ସୃଷ୍ଟି କରିବା ପାଇଁ ସମର୍ଥ ହୋଇ ପାରନ୍ତି । ତଥାପି ସଂସଦ ଭଙ୍ଗ ହେଲା ପରେ ସେମାନେ ନିଜ ନାମକୁ ଦଳର ପ୍ରଧାନ କାର୍ଯ୍ୟାଳୟକୁ ପଠାଇ ଦଳର କାର୍ଯ୍ୟ କରିବା ପାଇଁ ସେମାନେ ପ୍ରସ୍ତୁତ ଅଛନ୍ତି ବୋଲି ଜଣାଇ ଦିଅନ୍ତି । ତତ୍ପରେ କେତେ ସପ୍ତାହ ପାଇଁ ସେମାନେ ଦଳୀୟ କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣଭାବରେ ନିୟୋଜିତ କରନ୍ତି ଏବଂ ତାଙ୍କ ଦଳ ସଂଖ୍ୟାଗରିଷ୍ଠତା ହାସଲ କଲେ ସେମାନଙ୍କ ଆନନ୍ଦର ସୀମା ରହେ ନାହିଁ । ଅବଶ୍ୟ ସେମାନେ ନିଜ ଦଳର ସମସ୍ତ ନୀତି ସହିତ ସମ୍ପୂର୍ଣ୍ଣରୂପେ ଏକମତ ହୋଇ ନ ଥାନ୍ତି ।

ଏ କଥା ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଜଣେ ବ୍ୟକ୍ତି ଦଳୀୟ ସମର୍ଥନ ଲାଭ ନ କଲେ କୌଣସି କାର୍ଯ୍ୟ କରିପାରେ ନାହିଁ । ବିବାହ-ବିଚ୍ଛେଦ ଆଇନ ସଂସ୍କାର କିମ୍ବା ସ୍ତ୍ରୀମାନଙ୍କ ସଂରକ୍ଷଣ ବ୍ୟବସ୍ଥା ପରି ଅଣ-ରାଜନୈତିକ ବିଷୟକୁ ବାଦ ଦେଲେ ଅନ୍ୟ ସବୁ ବିଷୟରେ ସରକାରଙ୍କ ସମର୍ଥନ ବ୍ୟତୀତ କିଛି କରି ହେବ ନାହିଁ । ଏଥିପାଇଁ ସଂସଦରେ ସରକାରଙ୍କର ସଂଖ୍ୟାଗରିଷ୍ଠତା ଥିବା ଦରକାର । ସଂସଦରେ ସଂଖ୍ୟାଗରିଷ୍ଠତା ହାସଲ କରିବାକୁ ହେଲେ ରାଜନୈତିକ ଦଳର ଆକାର ପ୍ରକାର ବ୍ୟାପକ ହୋଇଥିବା ବିଧେୟ । ସଂପୃକ୍ତ ଦଳଟି ଅତ୍ୟନ୍ତ ପକ୍ଷେ ଅର୍ଦ୍ଧେକ ନିର୍ବାଚନମଣ୍ଡଳୀରେ ବିଜୟୀ ହେବା ଓ ସେଥିପାଇଁ ନିର୍ବାଚନ-ମଣ୍ଡଳୀ ମଧ୍ୟରୁ ଚତୁଃପଞ୍ଚମାଂଶ ସ୍ଥାନରେ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିଥିବା ଉଚିତ । ଦ୍ୱିଦଳୀୟ ବ୍ୟବସ୍ଥା ରହିବାର ପ୍ରଧାନ କାରଣ ହେଉଛି ଯେ ଏହି ବ୍ୟବସ୍ଥା ବହୁଦିନରୁ ରହି ଆସିଅଛି । ଜଣେ ନିର୍ବାଚକ ପ୍ରାର୍ଥୀ କିମ୍ବା ଦଳକୁ ଭୋଟ ନ ଦେଇ ସରକାରଙ୍କୁ ଭୋଟ ଦେଇଥାଏ । ଉଦାହରଣ ସ୍ୱରୂପ, ସାର୍ ଆଲେକ ଡଗଲାସ-ହ୍ୟୁମ୍ କିମ୍ବା ହାରଲଡ୍ ଉଇଲସନଙ୍କ ମଧ୍ୟରେ ଜଣେ କେହି ପ୍ରଧାନ ମନ୍ତ୍ରୀ ହେବେ ବୋଲି ସଂପୃକ୍ତ ନିର୍ବାଚକ ଜଣକ ଜାଣିଥାନ୍ତି । ଜାତୀୟ ଦଳ କିମ୍ବା ଶ୍ରମିକ ଦଳ ସପକ୍ଷରେ ମତବ୍ୟକ୍ତ ନ କଲେ ସମୟ ଓ ଶକ୍ତିର ଅପଚୟ ବୋଲି ଧରାଯାଇ ଥାଏ । ଅବଶ୍ୟ ଏଥିରେ ବ୍ୟତିକ୍ରମ ଥାଏ । ଜଣେ ହୁଏତ ଉଦାରବାଦୀ, କମ୍ୟୁନିଷ୍ଟ, ସ୍କଟିସ୍ ଜାତୀୟତାବାଦୀ କିମ୍ବା ସଂରକ୍ଷଣବାଦୀଙ୍କୁ ସମର୍ଥନ କରିବା ପାଇଁ ଇଚ୍ଛା ପ୍ରକାଶ କରିପାରେ । କିନ୍ତୁ ଜଣେ ସାଧାରଣ ନିର୍ବାଚକର ଏପରି ଇଚ୍ଛା ନ ଥାଏ । ଜାତୀୟଦଳ ଓ ଶ୍ରମିକ ଦଳ ମଧ୍ୟରୁ ଗୋଟିଏ ଦଳ ସପକ୍ଷରେ ତାଙ୍କୁ ମତବ୍ୟକ୍ତ କରିବାକୁ ପଡ଼ିଥାଏ । ସେ ଉଭୟ ଦଳକୁ ଘୃଣା କରୁଥିଲେ ମତଦାନରୁ ନିବୃତ୍ତ ରହିଥାଏ ।

ଅବଶ୍ୟ ଦଳ ମଧ୍ୟରେ ବିଭେଦ ଦେଖାଯିବା ବିଷୟ ଏଠାରେ ଉଲ୍ଲେଖ କରାଯାଇ-ପାରେ । ପୂର୍ବରୁ ଜାତୀୟ ଦଳ ଓ ଉଦାର ଦଳ ମଧ୍ୟରେ ଯେଉଁ ବିଭେଦ ଥିଲା ତାହା ବର୍ତ୍ତମାନ ଜାତୀୟ ଦଳ ଓ ଶ୍ରମିକ ଦଳରେ ପରିଣତ ହୋଇଅଛି । ଏହା ସତ୍ୟ ଘଟଣା ଓ ଏହି ବିଷୟରେ କେତେକ ଉଦାହରଣ ଦିଆଯାଇପାରେ । ୧୮୪୬ରେ ସାର୍ ରବର୍ଟ ପୀଲଙ୍କ ନେତୃତ୍ୱରେ ଗଠିତ ଜାତୀୟ ଦଳ ସରକାର ଶସ୍ୟ ଆଇନ (corn law) ବା ଶସ୍ୟ ସଂରକ୍ଷଣ ଆଇନକୁ ରଦ୍ଦ କରିବା ପାଇଁ ନିଷ୍ପତ୍ତି ନେଇଥିଲେ । ଆମ୍ଭେମାନେ ବର୍ତ୍ତମାନ ଜାଣିବାକୁ ପାଉଛୁ ଯେ ଗହମ ଉତ୍ପାଦନ କରୁଥିବା ଶିଳ୍ପକୁ ସଂରକ୍ଷଣ କରିବା ପାଇଁ ସାର୍ ରବର୍ଟ ପୀଲ ଉଚିତ ମନେକରୁ ନ ଥିଲେ । "ଦେଶରେ ଭଦ୍ରବ୍ୟକ୍ତି ବୋଲାଉଥିବା" ଗହମ ଉତ୍ପାଦନକାରୀମାନେ ଜାତୀୟ ଦଳର ମୁଖ୍ୟ ସମର୍ଥକ ଥିଲେ ଏବଂ ସେମାନେ ଆଡ଼ାମ ସ୍ମିଥ୍, କବ୍‌ଡ଼େନ ଓ ବ୍ରାଇଟଙ୍କ ଯୁକ୍ତିରେ ସନ୍ତୁଷ୍ଟ ନ ଥିଲେ । ସୁତରାଂ ଶସ୍ୟ ଆଇନକୁ ପୀଲଙ୍କ ସରକାର ବହାଲ୍ ରଖିଥିଲେ । ଆଇର୍ଲାଣ୍ଡରେ ଦୁର୍ଭିକ୍ଷ ପଡ଼ିବା ହେତୁ ସେମାନେ ତାଙ୍କ ମତ ପରିବର୍ତ୍ତନ କରିଥିଲେ । ଏହା ଫଳରେ ଜାତୀୟ ଦଳ ମଧ୍ୟରେ ବିଭେଦ ଦେଖାଦେଇଥିଲା ଓ ୧୮୭୪ ପର୍ଯ୍ୟନ୍ତ ଜାତୀୟ ଦଳ କ୍ଷମତାରେ ରହି ପାରି ନ ଥିଲା । ଆରମ୍ଭରେ ପୀଲଙ୍କ

ସମର୍ଥକମାନଙ୍କୁ ଚକ୍ଷୁଶୂଳ ହେଉଥିଲା ଓ କ୍ରମେ ସେମାନେ ଉଦାରବାଦୀ ଦଳରେ ମିଶି ଯାଇଥିଲେ । ଗ୍ଲାଡ଼ଷ୍ଟୋନ ପିଲଙ୍କର ପରମ ବନ୍ଧୁ ଓ ଉତ୍ତରାଧିକାରୀ ଥିଲେ ସତ୍ୟ; କିନ୍ତୁ ସେ ଉଦାର-ବାଦୀ ଦଳରୁ ଜଣେ ବିଶିଷ୍ଟ ପ୍ରଧାନ ମନ୍ତ୍ରୀ ଥିଲେ ।

୧୮୮୫ରେ ସ୍ୱଶାସନ ନିୟମ (ବା ହୋମ୍ ରୁଲ୍) ଉପରେ ଉଦାରବାଦୀମାନଙ୍କ ମଧ୍ୟରେ ମତଭେଦ ଦେଖାଯାଇଥିଲା । ଏହି ଦଳର ଦକ୍ଷିଣପନ୍ଥୀମାନଙ୍କ ନେତୃତ୍ୱ ନେଇଥିବା ଡିଉକ୍ ଅଫ୍ ଡେଭନସାୟାର କାହିଁକି "ୟୁନିୟନିଷ୍ଟ ଦଳ"ରେ ଯୋଗଦେଲେ ତାହା ସହଜରେ ଅନୁମେୟ । ଅର୍ଥନୈତିକ ଓ ସାମାଜିକ ନୀତି ନିର୍ଦ୍ଧାରଣରେ ସଂପୃକ୍ତ ଦକ୍ଷିଣପନ୍ଥୀମାନେ ଟୋରି ଦଳର ସଭ୍ୟମାନଙ୍କ ପରି ରକ୍ଷଣଶୀଳ ଥିଲେ । ଚେମ୍ବରଲେନଙ୍କ ନେତୃତ୍ୱରେ ବାମପନ୍ଥୀମାନେ କାହିଁକି ଗୋଟିଏ ଭିନ୍ନ ଗୋଷ୍ଠୀ ଗଠନ କଲେ, ତାହାର କାରଣ ବୁଝିବା ସହଜ ନ ଥିଲା । ଆୟର୍ଲାଣ୍ଡର ଶାସନ କ୍ଷମତା ବିକେନ୍ଦ୍ରୀକରଣ ସମ୍ବନ୍ଧରେ ଚେମ୍ବର୍‌ଲେନଙ୍କର ନିଜର ଯୋଜନା ଥିଲା । ଦଳର ରକ୍ଷଣଶୀଳ ନେତାମାନଙ୍କ ଯୋଜନା ଓ ଚେମ୍ବରଲେନଙ୍କ ଯୋଜନା ମଧ୍ୟରେ ବିଶେଷ ପାର୍ଥକ୍ୟ ନ ଥିଲା । ଅବଶ୍ୟ ଚେମ୍ବରଲେନଙ୍କ ସାମାଜିକ ନୀତି ସହ ସେମାନେ ଏକମତ ନ ଥିଲେ । ଏହାର କାରଣ ସ୍ୱରୂପ କୁହାଯାଇ ପାରେ ଯେ ଚେମ୍ବରଲେନଙ୍କର ବିରାଟ ବ୍ୟକ୍ତିତ୍ୱ ଥିଲା ଓ ସେ ଜଣେ ଉଚ୍ଚାଭିଳାଷୀ ବ୍ୟକ୍ତି ଥିଲେ । ଗ୍ଲାଡ଼ଷ୍ଟୋନଙ୍କ ସରକାର ତାଙ୍କ ନୀତି ଅନୁସରଣ କରୁ ବୋଲି ଚେମ୍ବରଲେନ ଚାହୁଁଥିଲେ । ଚେମ୍ବରଲେନଙ୍କ ମତ ବିରୁଦ୍ଧରେ ଓ ଗ୍ଲାଡ଼ଷ୍ଟୋନଙ୍କ ପରାମର୍ଶ ଅନୁସାରେ ଉଦାରବାଦୀମାନେ ସ୍ୱଶାସନ ନୀତି ଗ୍ରହଣ କରିଥିଲେ । ସୁତରାଂ ସେ ଇସ୍ତଫା ଦେଇଥିଲେ । ତାଙ୍କ ପ୍ରଭାବକୁ ଅକ୍ଷୁଣ୍ଣ ରଖିବା ପାଇଁ ଚେମ୍ବରଲେନ "ୟୁନିୟନିଷ୍ଟ ଦଳ"ରେ ଯୋଗ ଦେଇଥିଲେ ଓ ସେ ନିଜେ ଜଣେ ଟାଣୁଆ "ୟୁନିୟନିଷ୍ଟ" ହୋଇ ଯାଇଥିଲେ । ଏଥିପାଇଁ ତାଙ୍କୁ ସଂରକ୍ଷଣ ଓ ସାମ୍ରାଜ୍ୟବାଦର ପ୍ରତୀକ ବୋଲି କୁହାଯାଉଥିଲା । ଉଦାରବାଦୀ ୟୁନିୟନିଷ୍ଟମାନଙ୍କର ସ୍ୱତନ୍ତ୍ର ସଂସ୍ଥା ଥିଲା ଓ ସେମାନେ ଟୋରି ଦଳର ସଭ୍ୟମାନଙ୍କ ସହିତ ନିର୍ବାଚନ-ମେଣ୍ଟ କରିଥିଲେ । ଫଳରେ ଟୋରି ଓ ୟୁନିୟନିଷ୍ଟମାନେ ୧୮୮୬ରୁ ୧୯୦୫ ପର୍ଯ୍ୟନ୍ତ କ୍ଷମତାରେ ରହିଥିଲେ । କେବଳ ୧୮୯୨ରୁ ୧୮୯୫ ପର୍ଯ୍ୟନ୍ତ ସେମାନେ କ୍ଷମତାର ବାହାରେ ଥିଲେ, କାରଣ ସେତେବେଳେ ଆଇରିସ୍‌ମାନଙ୍କ ସହିତ ଅବାଞ୍ଛିତ ସହଯୋଗ ଯୋଗୁ ସେମାନଙ୍କର ଦୁଇ ବର୍ଷ ବୃଥାରେ କଟିଥିଲା । କାଳକ୍ରମେ ଉଦାରବାଦୀ ୟୁନିୟନିଷ୍ଟ-ମାନେ ଟୋରିମାନଙ୍କ ସହିତ ମିଶିଯାଇଥିଲେ ଓ ସେମାନଙ୍କ ମଧ୍ୟରୁ ନେଭିଲ ଚେମ୍ବରଲେନ ପରେ ଟୋରି ଦଳର ପ୍ରଧାନ ମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ ।

ଉଦାର ଦଳର ଦକ୍ଷିଣପନ୍ଥୀ ସମର୍ଥକମାନଙ୍କୁ ନେଇ ଶ୍ରମିକ ଦଳ ଗଠିତ ହୋଇଥିଲା । ୧୯୧୮ ପର୍ଯ୍ୟନ୍ତ ବସ୍ତୁତଃ ଏହା ଏକ ଶ୍ରମିକ ସଂଗଠନ ରୂପେ ପରିଚିତ ଥିଲା । ଗୋଟିଏ ନୂତନ ଦଳରେ ସାଂଗଠନିକ ଅଭାବ ଥିଲା ପରି, ଉକ୍ତ ଦଳର ମଧ୍ୟ ସାଂଗଠନିକ ପରି-

ତୁଳନାରେ ଦକ୍ଷତା ନ ଥିଲା । ୧୯୧୬ ରେ ଲଏଡ଼ ଜର୍ଜଙ୍କ ମିଳିତ ସରକାର ଗଠନ ଯୋଗୁ ଉଦାର ଦଳ ମଧ୍ୟରେ ବିଭେଦ ଦେଖାଦେଇ ନ ଥିଲେ ହୁଏତ ଶ୍ରମିକ ଦଳ ଏକ କ୍ଷୁଦ୍ରଦଳ ରୂପେ ରହିଯାଇଥାନ୍ତା । ଏହା ମୁଖ୍ୟତଃ ଏକ ବ୍ୟକ୍ତିଗତ ବିବାଦ ଥିଲା ଓ ଏହି ବ୍ୟକ୍ତିଗତ ବିବାଦରେ ଉଦାରବାଦୀମାନେ ବିଭିନ୍ନ ପକ୍ଷ ସମର୍ଥନ କରିଥିଲେ । (୧୯୨୨ ରେ ଜାଠ- ମାନେ ଲଏଡ଼ ଜର୍ଜଙ୍କ ବିରୁଦ୍ଧାଚରଣ କଲା ପରେ) ବହୁଚେଷ୍ଟା କରିସିବା ସତ୍ତ୍ୱେ ଉକ୍ତ ବିବାଦର ଅବସାନ ହୋଇ ନ ଥିଲା । ଚର୍ଚ୍ଚିଲ ଓ ଲର୍ଡ଼ ସାଇମନ୍‌ଙ୍କ ପରି କେତେକ ଉଦାରବାଦୀ ଯଥା ସମୟରେ ଜାଠ ଦଳରେ ମିଶି ଥିଲେ । ଲର୍ଡ଼ ହାଲଡ଼େନ, ଲର୍ଡ଼ ଆଡ଼ସନ ଓ ଲିହ୍-ସ୍ମିଥ୍‌ଙ୍କ ପରି ନେତୃବୃନ୍ଦ ଶ୍ରମିକ ଦଳରେ ଯୋଗ ଦେଇଥିଲେ । ଦଳର ମୁଖ୍ୟ ଅଂଶୀଦାରମାନେ ଅଲଗା ରହି ଉଦାର ଦଳର ପୁନରୁତ୍ଥାନ ପାଇଁ ଚେଷ୍ଟା କରିଥିଲେ । ୧୯୨୯ ରେ ସେମାନେ ଏଥିପାଇଁ ବହୁ ଉଦ୍ୟମ ଓ ବହୁତ ଖର୍ଚ୍ଚ ମଧ୍ୟ କରିଥିଲେ, କିନ୍ତୁ ସେମାନଙ୍କର ଉଦ୍ୟମ ସଫଳ ହୋଇ ନ ଥିଲା ଓ କାଳକ୍ରମେ ସେମାନେ ଲୋପ ପାଇ ଯାଇଥିଲେ । ୧୯୩୧ ରେ "ଜାତୀୟ" ସରକାର ଗଠନ ବେଳେ ବସ୍ତୁତଃ ଦ୍ୱିଦଳୀୟ ବ୍ୟବସ୍ଥା ଥିଲା । ଏ କଥା ଏଠାରେ ସୂଚାଇ ଦିଆଯାଇ ପାରେ ଯେ ୧୯୩୧ ରେ ଶ୍ରମିକ ଦଳରେ ବିଭେଦ ଦେଖାସିବା ଫଳରେ ୧୯୪୫ ପର୍ଯ୍ୟନ୍ତ ସଂଖ୍ୟାଗରିଷ୍ଠତା ଲାଭ କରି ମନ୍ତ୍ରିମଣ୍ଡଳ ଗଠନ କରିବାକୁ ଶ୍ରମିକ ଦଳ ସମର୍ଥ ହୋଇପାରି ନ ଥିଲା । ଏହି ଦଳ ନିଜ ସଂଗଠନକୁ ସୁଦୃଢ଼ କରି ରଖି ପାରିଥିଲା । ଚର୍ଚ୍ଚିଲଙ୍କ ସରକାର ପଦତ୍ୟାଗ କରିବାବେଳେ ଏହା ଗୋଟିଏ ଦକ୍ଷ ଓ ସୁସଂଗଠିତ ଦଳ ଥିଲା ।

ଇତିହାସରୁ କିଛି ଶିକ୍ଷା ମିଳିଥାଏ । ଗୋଟିଏ ଦଳ ମଧ୍ୟରେ ମତଭେଦ ଦେଖା- ଦେଲେ ଦଳଟି କୋଡ଼ିଏ ବର୍ଷ ପର୍ଯ୍ୟନ୍ତ କ୍ଷମତାର ବାହାରେ ରହିଥାଏ । ଶସ୍ୟ ଆଇନକୁ ବାତିଲ କରିଥିବା କାରଣରୁ ନୁହେଁ ବରଂ ଦଳ ମଧ୍ୟରେ ବିଭେଦ ସୃଷ୍ଟି କରିଥିବା ଯୋଗୁଁ ପୀଲଙ୍କୁ ଉପରେଲ ମୁଖ୍ୟତଃ ସମାଲୋଚନା କରିଥିଲେ । ୧୮୮୬ ରେ ଜୋସେଫ୍ ଚେମ୍ବର- ଲେନ ଓ ଉଦାରବାଦୀ ୟୁନିୟନିଷ୍ଟମାନେ ଉଦାର ଦଳ ମଧ୍ୟରେ ବିଭେଦ ସୃଷ୍ଟି କରିଥିଲେ କିନ୍ତୁ ଉଲ ଜାଠ ହେବା ପରେ ଚେମ୍ବରଲେନ ବିଭିନ୍ନ ପଦବୀରେ ରହି ପାରିଥିଲେ । ୧୯୧୬ ରେ ଲଏଡ଼ ଜର୍ଜ ଉଦାର ଦଳ ମଧ୍ୟରେ ବିଭେଦ ସୃଷ୍ଟି କରି ଛଅ ବର୍ଷ କ୍ଷମତାରେ ରହି ପାରିଥିଲେ; କିନ୍ତୁ ୧୯୨୨ ପରେ ସେ ଆଉ କ୍ଷମତାକୁ ଆସି ପାରି ନ ଥିଲେ । ୧୯୩୧ ରେ ମ୍ୟାକ୍‌ଡୋନାଲଡ୍ ଶ୍ରମିକ ଦଳ ମଧ୍ୟରେ ବିଭେଦ ସୃଷ୍ଟି କରିଥିଲେ । ଟୋରି- ମାନେ "ଜାତୀୟ ସରକାର"ର ଅସ୍ତିତ୍ୱ ବଜାୟ ରଖିବାକୁ ଗ୍ରହୁ ଥିବା ପର୍ଯ୍ୟନ୍ତ ମ୍ୟାକ୍‌ଡୋ- ନାଲଡ୍ "ଟୋରିମାନଙ୍କ ବନ୍ଦୀ" ସ୍ୱରୂପ କ୍ଷମତାରେ ରହିଥିଲେ ।

ଏହି ବିଶ୍ଳେଷଣ ରାଜନୀତିଜ୍ଞମାନଙ୍କ ଉଚ୍ଚାଭିଳାଷ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥାଏ । ଅବଶ୍ୟ ରାଜନୀତିଜ୍ଞମାନେ ଉଚ୍ଚାଭିଳାଷୀ । ଧର୍ମ-କ୍ଲାନ୍ତ ଶିଳ୍ପମାନଙ୍କ ମଧ୍ୟରୁ

ରାଜନୀତି ଏକ ଶିଳ୍ପ ଅଟେ । ଏହା ସଠିକ୍ ରୂପେ ରକ୍ତ, ଅଶ୍ରୁ ଓ ସ୍ୱେଦ ଦ୍ୱାରା ନ କରି କଠିନ ଓ ନିରନ୍ତର ପରିଶ୍ରମ ଦ୍ୱାରା କରିଥାଏ । ଏଠାରେ ଖର୍ଚ୍ଚ ତୁଳନାରେ ଯାହା ପ୍ରାପ୍ୟ ମିଳେ ତାହା ଅତି ନଗଣ୍ୟ । କେବଳ ସମ୍ମାନ ଓ କ୍ଷମତା ଉପଭୋଗ ଦ୍ୱାରା ଏହାର ଯଥାର୍ଥତା ପ୍ରତିପାଦିତ ହୁଏ । ସୁତରାଂ ରାଜନୀତିଜ୍ଞମାନେ ଉଚ୍ଚାଭିଳାଷୀ ନ ହୋଇଥିଲେ ସେମାନେ ରାଜନୀତିଜ୍ଞ ହୋଇ ପାରିବେ ନାହିଁ ।

ନିର୍ବାଚକ ଉଚ୍ଚାଭିଳାଷୀ ନୁହେଁ; କିନ୍ତୁ ସେ ଗୋଟିଏ ସରକାରକୁ ନିର୍ବାଚନ କରୁଛି ବୋଲି ଜାଣିଥାଏ । ଏକ ଉଦାରବାଦୀ ସରକାରକୁ ସମର୍ଥନ କରୁଥିବାରୁ ପୀଲଙ୍କ ସମର୍ଥକବୃନ୍ଦ ଓ ଏକ ଜାତି ସରକାରକୁ ସମର୍ଥନ କରୁଥିବାରୁ ଉଦାରବାଦୀ ୟୁନିୟନିଷ୍ଟମାନେ ନିର୍ବାଚିତ ହୋଇଥିଲେ । ଜାତିଦଳ କିମ୍ବା ଶ୍ରମିକଦଳ ମଧ୍ୟରୁ କୌଣସି ଗୋଟିକୁ ସମର୍ଥନ କରୁ ନ ଥିବାରୁ ଆସକ୍ୱିଥ ଓ ଲଏଡ଼ ଜର୍ଜଙ୍କୁ ସମର୍ଥନ କରୁଥିବା ଉଦାରବାଦୀମାନେ ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଥିଲେ ଓ କ୍ରମଶଃ ସେମାନଙ୍କ ସତ୍ତା ମଧ୍ୟ ଲୋପ ପାଇଗଲା । କେଉଁ ଦଳକୁ ସମର୍ଥନ କଲେ ଲାଭ ହେବ ତାହା ଜାତିସ୍ଥ ଉଦାରବାଦୀମାନେ ଜାଣିଥିଲେ ।

ପାଠକେ ନିଜର ନୀତିକୁ ବଜାୟ ରଖିବା ପାଇଁ ଯଦି ଦଳ ଗଠନ କରିବାକୁ ଚାହିଁବେ, ତେବେ ତାଙ୍କୁ ନିମ୍ନଲିଖିତ ବିଷୟ ବୁଝିବାକୁ ପଡ଼ିବ । ପ୍ରାୟ ଛଅ ଶହ ନିର୍ବାଚନମଣ୍ଡଳୀମାନଙ୍କ ମଧ୍ୟରୁ ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ତାଙ୍କୁ ଗୋଟିଏ ଗୋଟିଏ ସଂଗଠନ ଗଢ଼ିବାକୁ ପଡ଼ିବ । ଏଥିପାଇଁ ଲଣ୍ଡନରେ ତାଙ୍କୁ ଏକ ମୁଖ୍ୟ କାର୍ଯ୍ୟାଳୟ ରଖିବାକୁ ହେବ । ତାଙ୍କୁ ପ୍ରାଚୀରପତ୍ର, ପୁସ୍ତିକା, ବକ୍ତାଙ୍କ ପାଇଁ ଟିପ୍‌ପଣୀ ଓ ଅନ୍ୟାନ୍ୟ ପ୍ରଚାରର ସାହାଯ୍ୟ ନେବାକୁ ପଡ଼ିବ । ଅନ୍ତତଃପକ୍ଷେ ତାଙ୍କୁ ଗୋଟିଏ ଜାତୀୟ ସମ୍ବାଦପତ୍ରର ସାହାଯ୍ୟ ନେବାକୁ ପଡ଼ିବ । ଆସନ୍ତା ନିର୍ବାଚନରେ ତାଙ୍କୁ ଛଅ ଶହ ପ୍ରାର୍ଥୀ ଛିଡ଼ା କରିବାକୁ ପଡ଼ିବ ଓ ସେଥିମଧ୍ୟରୁ ୩୫୦ ପର୍ଯ୍ୟନ୍ତ ପ୍ରାର୍ଥୀ ନିର୍ବାଚିତ ହୋଇ ଆସିବାର ସମ୍ଭାବନା ଅଛି ବୋଲି ଲୋକଙ୍କୁ ପ୍ରବର୍ତ୍ତାଇବାକୁ ପଡ଼ିବ । ସରଳଭାବରେ କହିବାକୁ ଗଲେ, ଏହା କରିବା ଅପେକ୍ଷା ଜାତିଦଳ କିମ୍ବା ଶ୍ରମିକଦଳରେ ଯୋଗଦେବା ସହଜ ଓ ଶସ୍ତା ହେବ ।

---

# ଚତୁର୍ଥ ଅଧ୍ୟାୟ

## ସଂସଦରେ ରାଣୀ

## ( The Queen in Parliament )

**ରାଣୀ (The Queen) :—**

ସାଧାରଣ ଲୋକ "ସଂସଦ" କହିଲେ କମନ୍ସସଭାକୁ ବୁଝାଇଥାଏ । "ସଂସଦ"ର ନିର୍ବାଚନ ଯଥାର୍ଥରେ ଏହି ସଭାର ସଭ୍ୟମାନଙ୍କ ନିର୍ବାଚନ । ସଂସଦର ଜଣେ ସଦସ୍ୟ ଏହି ସଭାର ମଧ୍ୟ ଜଣେ ସଦସ୍ୟ । ଉପରୋକ୍ତ ବ୍ୟାଖ୍ୟାରୁ କମନ୍ସସଭାର ଗୁରୁତ୍ୱ ପ୍ରକାଶ ପାଇଥାଏ । କିନ୍ତୁ ଏହା ବ୍ୟତୀତ ଲର୍ଡ-ସଭା ମଧ୍ୟ ଅଛି ଓ ଏହାର ସଭ୍ୟମାନଙ୍କୁ "ସଂସଦର ଲର୍ଡ଼" ( Lords of Parliament ) କୁହାଯାଏ । ଜଣେ ସାମ୍ବିଧାନିକ ଆଇନଜ୍ଞଙ୍କ ଦୃଷ୍ଟିରେ ସଂସଦ ଅର୍ଥ କେବଳ କୌଣସି ଗୋଟିଏ ସଭା କିମ୍ବା ଉଭୟ ସଭାକୁ ନ ବୁଝାଇ "ସଂସଦରେ ରାଣୀ"ଙ୍କୁ ବୁଝାଇଥାଏ । ଏହା ଏକ ଆନୁଷ୍ଠାନିକ ସଂସ୍ଥା ଓ ଏହାର ଅର୍ଥ ହେଲା ସିଂହାସନାରୂଢ଼ା ରାଣୀ, ତାଙ୍କ ସମ୍ମୁଖାସୀନ ସଂସଦର ଲର୍ଡ଼ ଓ ଦଣ୍ଡାୟମାନ କମନ୍ସ-ସଭାର ସଭ୍ୟବୃନ୍ଦ । ଏହି ବ୍ୟବସ୍ଥା କିପରି ପ୍ରଚଳିତ ହେଲା ତାହାର ସଂକ୍ଷିପ୍ତ ଇତିହାସ ତଳେ ଦିଆଯାଇଛି ।

ପ୍ରଥାନୁସାରେ ଇଂଲଣ୍ଡର ରାଜା ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କରେ ପରାମର୍ଶ କରିବାପାଇଁ ଲର୍ଡ଼ମାନଙ୍କୁ ଡାକୁଥିଲେ । ଏଥିପାଇଁ ସେ "ସଂସଦ"ର ବୈଠକ ଆହ୍ୱାନ କରୁଥିଲେ । ରାଜା ଜନ୍, ରାଜା ତୃତୀୟ ହେନେରୀ, ସାଇମନ୍-ଡ଼-ମଣ୍ଟଫୋର୍ଟ ଓ ରାଜା ପ୍ରଥମ ଏଡ଼ୱାର୍ଡ଼ କମନ୍ସ ବା ଜନସାଧାରଣଙ୍କ ପ୍ରତିନିଧିମାନଙ୍କୁ ଏହି ସଂସଦୀୟ ବୈଠକରେ ଯୋଗ ଦେବାପାଇଁ ଡାକୁଥିଲେ । ସୁତରାଂ ଲର୍ଡ଼ମାନେ ସମ୍ରାଟଙ୍କୁ ବ୍ୟକ୍ତିଗତ ଭାବରେ ଅଲଗା

ପରାମର୍ଶ ଦେଉଥିଲେ ଓ ଲୋକପ୍ରତିନିଧିମାନେ ଅଲଗା ସମୟରେ ସେମାନଙ୍କ ପରାମର୍ଶ ନେଉଥିଲେ । "ସଂସଦ"ରେ ସମ୍ରାଟଙ୍କୁ ଏହି ପରାମର୍ଶ ଦିଆଯାଉଥିଲା । ସୁତରାଂ "ସଂସଦ"ରେ ସମ୍ରାଟ ଆନୁଷ୍ଠାନିକ ନିଷ୍ପତ୍ତି ନେଉଥିଲେ । କିନ୍ତୁ ପ୍ରକୃତ ଆଲୋଚନା ଭିନ୍ନ ଭାବରେ "ଲର୍ଡ଼ମାନଙ୍କ ସଭା ଓ ପ୍ରତିନିଧିମାନ"ଙ୍କ ସଭାରେ ପୃଥକ୍‌ଭାବରେ କରାଯାଉଥିଲା । ଲୋକପ୍ରତିନିଧି ବା "କମନ୍‌ସମାନେ" ( the commons ) ଯେତେବେଳେ କୌଣସି ପିଟିସନ୍ କିମ୍ବା "ବିଧେୟକ" ମାଧ୍ୟମରେ ପ୍ରଚଳିତ ଆଇନରେ ପରିବର୍ତ୍ତନ ଚାହୁଁଥିଲେ, ସେତେବେଳେ ତାହା କରାଯାଉଥିଲା । କମନ୍‌ସମାନେ ବିଧେୟକଟିକୁ ଆଇନ ଆକାରରେ ପରିଣତ କରିବାପାଇଁ ଚାହୁଁଥିଲେ । ଲର୍ଡ଼ମାନଙ୍କର ସମ୍ମତି ପାଇଁ ଏହା ପଠା ଯାଉଥିଲା । ଉଭୟ "ସଭା"ରେ ଏହା ଗୃହୀତ ହେବା ପରେ ସଂସଦରେ ସମ୍ରାଟଙ୍କ ସମ୍ମୁଖକୁ ଅଣାଯାଉଥିଲା । ସମ୍ରାଟ ତାହା ଅନୁମୋଦନ କଲେ ସଂସଦର କ୍ଲର୍କ ( The clerk of Parliament ) ତାହା ସମ୍ରାଟଙ୍କ ଦ୍ୱାରା ଗୃହୀତ ହେଲା ବୋଲି ଘୋଷଣା କରୁଥିଲେ । ତାହା ଅନୁମୋଦନ କରିବାରେ ସମ୍ରାଟଙ୍କର ଦ୍ୱିଧା ଥିଲେ ଅଥବା ତାଙ୍କର ମନାକରିବାକୁ ଇଚ୍ଛା ଥିଲେ ମଧ୍ୟ କେତେକ କାରଣରୁ ତାହା ପ୍ରକାଶ କରିବାକୁ ଚାହୁଁ ନ ଥିଲେ, "ସମ୍ରାଟ ଉକ୍ତ ବିଷୟ ବିଚାର କରୁଛନ୍ତି ବୋଲି" ସଂସଦର କ୍ଲର୍କ ଘୋଷଣା କରୁଥିଲେ । ସମ୍ରାଟମାନଙ୍କ କ୍ଷମତା ହ୍ରାସ ହେବା ସଙ୍ଗେ ସଙ୍ଗେ ସଂସଦରେ ସମ୍ରାଟଙ୍କର ବୈଠକ କେବଳ ଅନୁଷ୍ଠାନିକ ବୈଠକରେ ପରିଣତ ହୋଇଥିଲା । ସଂସଦର ପ୍ରକୃତ କାର୍ଯ୍ୟ ପ୍ରତ୍ୟେକ ସଭାର ଭିନ୍ନ ଭିନ୍ନ ବୈଠକରେ ନିର୍ଣ୍ଣୟ କରାଯାଉଥିଲା ।

ଅଧୁନା ରାଣୀ ବର୍ଷକୁ ଥରେ ମାତ୍ର ସଂସଦର ବୈଠକରେ ଉପସ୍ଥିତ ରହନ୍ତି । ଅନ୍ୟାନ୍ୟ ସମୟରେ ସଂସଦର ବୈଠକରେ ଲର୍ଡ଼ କମିଶନ୍‌ରମାନେ ରାଣୀଙ୍କ ତରଫରୁ ପ୍ରତିନିଧିତ୍ୱ କରିଥାନ୍ତି । ପ୍ରଥମ ଘଟଣାଟି ଏକ ଆନୁଷ୍ଠାନିକ ବ୍ୟାପାରରେ ପରିଣତ ହୋଇଯାଇଛି । ରାଜପ୍ରାସାଦର ଅଶ୍ୱାରୋହୀ ସୈନ୍ୟମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଗୋଟିଏ ସରକାରୀ ଘୋଡ଼ା-ଗାଡ଼ିରେ ବସି ରାଣୀ ଓ୍ୱେଷ୍ଟମିନିଷ୍ଟର ପ୍ରାସାଦ ବା ସଂସଦଗୃହକୁ ଯାଆନ୍ତି । ଲର୍ଡ଼ମାନେ ସେମାନଙ୍କ ପୋଷାକରେ ଆସିଥାଆନ୍ତି ଓ ଲର୍ଡ଼ମାନଙ୍କ ସ୍ତ୍ରୀମାନେ ସେମାନଙ୍କ ପୋଷାକପିନ୍ଧି ଦର୍ଶକ ଗ୍ୟାଲେରୀରେ ବସିଥାନ୍ତି । ବେଶଘରେ ରାଣୀ ରାଜକୀୟ ପୋଷାକ ଓ ରାଜମୁକୁଟ ପରିଧାନ କରନ୍ତି । ସିଂହାସନ ଆରୋହଣ କରିବା ମାତ୍ରକେ ରାଣୀ କମନ୍‌ସମାନଙ୍କୁ ତାଙ୍କ ସମ୍ମୁଖରେ ଉପସ୍ଥିତ ହେବାଲାଗି ଆହ୍ୱାନ କରନ୍ତି । ଦଣ୍ଡଧାରଣ କରିଥିବା ଅଧ୍ୟକ୍ଷଙ୍କ ସହିତ କମନ୍‌ସସଭାର ସଭ୍ୟମାନେ ଉକ୍ତ ବୈଠକରେ ଯୋଗଦିଅନ୍ତି । ରାଣୀ ତାଙ୍କ ପ୍ରସ୍ତୁତ ଅଭିଭାଷଣ ପାଠ କରନ୍ତି ଓ ଏହି ଅଭିଭାଷଣରେ ଚଳିତ ବର୍ଷରେ ସରକାରଙ୍କ କାର୍ଯ୍ୟାବଳୀର ସୂଚନା ଥାଏ । ଏହି ସମସ୍ତ ବିଷୟ ଏକ "ସର୍କସ" ପରି ଜଣାପଡ଼େ; କିନ୍ତୁ ଅନ୍ୟାନ୍ୟ ବ୍ରିଟିଶ୍ ପରମ୍ପରା ପରି ଏହାର ଏକ ଉଦ୍ଦେଶ୍ୟ ଅଛି । ଏହା ଦ୍ୱାରା ଜାତୀୟ ଜୀବନରେ ସଂସଦର ଗୁରୁତ୍ୱପ୍ରତି ଦୃଷ୍ଟି ଆକୃଷ୍ଟ ହୋଇଥାଏ । ତତ୍ତ୍ୱଦୃଷ୍ଟିରୁ କହିଲେ ରାଣୀ ତାଙ୍କ ଭାଷଣ ମାଧ୍ୟମରେ ନିଜେ ଚାହୁଁଥିବା

ବିଷୟମାନଙ୍କୁ ଆଲୋଚନା କରିବା ପାଇଁ ସଂସଦ ସମ୍ମୁଖରେ ଉପସ୍ଥାପିତ କରିଥାଆନ୍ତି । ସଂସଦର ପ୍ରତ୍ୟେକ ଅଧିବେଶନ ଶେଷ ହେବା ବେଳକୁ ରାଣୀ ଆଉ ଥରେ ସଂସଦ ବୈଠକକୁ ଆସିବା କଥା, କିନ୍ତୁ ସେଥର ସେ ନିଜେ ନ ଆସି ତାଙ୍କ ତରଫରୁ ଲର୍ଡ଼ କମିଶନର୍‌ମାନେ ଯୋଗ ଦିଅନ୍ତି ।

"ସଂସଦରେ ରାଣୀ"ଙ୍କ ତରଫରୁ କମିଶନରମାନଙ୍କର ଯେଉଁ ବୈଠକ ହୁଏ ତାହା ବିଭିନ୍ନ ଅବସ୍ଥାରେ ହୋଇଥାଏ । ସଂସଦର ପ୍ରତ୍ୟେକ ବୈଠକକୁ ରାଣୀ ବ୍ୟକ୍ତିଗତ ଭାବେ ଆହ୍ୱାନ କରିଥାଆନ୍ତି । କମନସ୍-ସଭାର ସଭ୍ୟମାନେ ଜଣେ ଅଧ୍ୟକ୍ଷ ବାଛନ୍ତି । ପରବର୍ତ୍ତୀ ବୈଠକରେ ରାଣୀଙ୍କ ତରଫରୁ କମିଶନରମାନେ ଏହାକୁ ଅନୁମୋଦନ କରିଥାଆନ୍ତି । କମନ୍‌ସ ସଭା ଓ ଲର୍ଡ଼ ସଭାରେ ଯେଉଁ "ବିଧେୟକ" ଆଲୋଚିତ ହୋଇଥାଏ, ତାହା ପ୍ରକୃତରେ ରାଣୀଙ୍କୁ ଏକ ଆବେଦନ ପତ୍ର ମାତ୍ର । ସଂସଦରେ ରାଣୀ ତାହା ମଞ୍ଜୁର କଲେ ତାହା ଅଧିନିୟମ ବା ଆଇନରେ ପରିଣତ ହୋଇ କାର୍ଯ୍ୟକାରୀ ହୁଏ । ସୁତରାଂ ସଂସଦରେ ବସୁଥିବା ଲର୍ଡ଼ କମିଶନରମାନଙ୍କୁ ରାଣୀ ନିଯୁକ୍ତ କରନ୍ତି ଏବଂ ସେମାନେ ରାଣୀଙ୍କ ତରଫରୁ ସଂସଦରେ ବିଭିନ୍ନ କାର୍ଯ୍ୟ ସଂପାଦନ କରିଥାଆନ୍ତି । ଏତଦ୍ଦ୍ୱାରା ସମ୍ବିଧାନର ତତ୍ତ୍ୱ ଉପରେ ଗୁରୁତ୍ୱ ଆରୋପିତ ହୁଏ । କେବଳ କମନସ୍ ସଭା ଓ ଲର୍ଡ଼ ସଭା ଆଇନ ପ୍ରଣୟନ କରନ୍ତି ନାହିଁ; ବରଂ "ସଂସଦରେ ରାଣୀ"ଙ୍କ ଦ୍ୱାରା ଆଇନ ପ୍ରଣୀତ ହୋଇଥାଏ ।

ସେ ଯାହାହେଉ ନା କାହିଁକି କମନ୍‌ସ ସଭା ଓ ଲର୍ଡ଼ ସଭା ଆଜି ରାଣୀଙ୍କ ବ୍ୟକ୍ତିଗତ ବୈଠକ ନ ହୋଇ, ସାମ୍ବିଧାନିକ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କଲେଣି । ଆନୁଷ୍ଠାନିକ ଭାବରେ ଓ ଆଇନ ଦୃଷ୍ଟିରୁ "ସଂସଦରେ ରାଣୀ" ସବୁ ନିଷ୍ପତ୍ତି କରୁଥିଲେ ବି ବାସ୍ତବ କ୍ଷେତ୍ରରେ ସଂସଦର ଉଭୟ ସଭାରେ ଏହି ନିଷ୍ପତ୍ତି ଗୃହୀତ ହୋଇଥାଏ । ଜଣେ ଓ୍ୱେଷ୍ଟମିନିଷ୍ଟର ରାଜପ୍ରାସାଦ ପାଖରେ ବସ୍‌ରେ ଗଲାବେଳେ ପ୍ରାସାଦ ଉପରେ ୟୁନିୟନ-ଜ୍ୟାକ୍ ଉଡ଼ୁଥିବାର କିମ୍ବା ଆଲୋକ ସଜା ହୋଇଥିବାର ଦେଖିଲେ ସଂସଦର ଅଧିବେଶନ ଚାଲିଛି ବୋଲି ଜାଣିଥାଏ । ଆଇନ ଦୃଷ୍ଟିରୁ ଏହା ଭୁଲ, କାରଣ ରାଣୀ ସଂସଦର ବୈଠକରେ ଥିବା ସମୟରେ ଉକ୍ତ ଅଟ୍ଟାଳିକା ଉପରେ ରାଜକୀୟ ପତାକା ଉଡ଼ିଥାଏ । କିନ୍ତୁ ବାସ୍ତବ ଦୃଷ୍ଟିକୋଣରୁ ଏହା ଠିକ୍ । କାରଣ କମନ୍‌ସ ସଭା ହିଁ ସଂସଦର ବିଶିଷ୍ଟ ସଦନ ଅଟେ । ସୁତରାଂ ଏହି ସଦନର ଅଧିବେଶନ ଚାଲିଥିବାବେଳେ ସଂସଦର ଅଧିବେଶନ ହେଉଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ତଥାପି ଆମେ ଆମ ଇତିହାସକୁ ଭୁଲିଯିବା ଉଚିତ ନୁହେଁ, କାରଣ ଇତିହାସର ପ୍ରଭାବକୁ ଏଡ଼ାଇ ଦିଆଯାଇ ପାରିବ ନାହିଁ । ରାଣୀ ଓ ତାଙ୍କ ପୂର୍ବପୁରୁଷମାନେ ବିଗତ ସାତଶହ ବର୍ଷଧରି ସଂସଦର ବୈଠକରେ ବସିଆସିଛନ୍ତି । ରାଣୀ ଓ ତାଙ୍କ ଉତ୍ତରାଧିକାରୀମାନେ ସାତ ହଜାର ବର୍ଷ ପର୍ଯ୍ୟନ୍ତ ସଂସଦର ବୈଠକରେ ବସିବେ ବୋଲି ଧରି ନିଆଯାଇ ପାରେ ।

ବ୍ରିଟିଶ ସମ୍ବିଧାନକୁ ଇଂଲଣ୍ଡର ସମ୍ବିଧାନ କୁହାଯାଏ । ପ୍ରତ୍ୟେକ ଯୁଗରେ ଏହା ନୂତନ ଅବସ୍ଥା ସହିତ ମେଳରକ୍ଷି ଚାଲିଥାଏ ଓ ଏହାର ଇତିହାସ ନିରବଚ୍ଛିନ୍ନ । ଏହି ବ୍ୟବସ୍ଥାର କେନ୍ଦ୍ର ସ୍ଥଳରେ ସଂସଦ ଅବସ୍ଥିତ । ପୁରୁଷକୁ ପୁରୁଷ ବିଭିନ୍ନ ସଂସଦର ବୈଠକ ବସିଥିଲେ ମଧ୍ୟ ସଂସଦର ଗୁଣରେ କୌଣସି ପରିବର୍ତ୍ତନ ହୋଇ ନାହିଁ । ୧୨୧୫ରେ "ମାଗ୍ନାକାର୍ଟା" ବା ମହାସନନ୍ଦ ସଂସଦ ଦ୍ୱାରା ଗୃହୀତ ହୋଇ ନ ଥିଲା; ବରଂ ପରବର୍ତ୍ତୀ ସଂସଦମାନଙ୍କ ଦ୍ୱାରା ଏହା ଅନେକ ଥର ଅନୁମୋଦିତ ହୋଇଛି । ଶତବର୍ଷୀ ଯୁଦ୍ଧ, ରୋଜେସ୍ ଯୁଦ୍ଧ, ସ୍ପାନିସ ଆର୍ମାଡ଼ା, ଗୃହ-ଯୁଦ୍ଧ, ଫରାସୀ ବିପ୍ଳବ ଓ ନେପୋଲିୟନ, କାର୍ଲମାର୍କସ ଓ ରୁଷିଆ ବିପ୍ଳବ, ହିଟଲର୍ ଓ ଅଣବୌଦ୍ଧିକ ପ୍ରତିବିପ୍ଳବ ସମୟରେ ମଧ୍ୟ ସଂସଦ ବଞ୍ଚି ରହିଥିଲା । ସର୍ବୋପରି ଆମ୍ଭେମାନେ ଜାଣି ନ ପାରିଲେ ବି ସଂସଦ ସବୁଦିନ ପାଇଁ ବଞ୍ଚି ରହିବ । ଜନସାଧାରଣଙ୍କ ବିଶ୍ୱାସରେ ହିଁ ସଂସଦର ଶକ୍ତି ନିହିତ । ଅବଶ୍ୟ ଏହା କ୍ୱଚିତ ପ୍ରକାଶ ଲାଭ କରିଥାଏ । "ବିଗ୍ ବେନ୍" **(Big Ben)** (ୱେଷ୍ଟମିନିଷ୍ଟର-ପ୍ରାସାଦ ଉପରେ ଥିବା ଘଡ଼ି ) ଓ ତାର ଅଧିବାସିମାନେ ନ ରହିଲେ ବି ସଂସଦ ବଞ୍ଚିରହିବ । ଶେଷ ସମୟ ପର୍ଯ୍ୟନ୍ତ "ବିଗ୍‌ବେନ୍" ଚାଲୁ ରହି ସମୟ ନିର୍ଦ୍ଧାରଣ କରୁଥିବ ।

ଆଜିକାଲି କମନ୍ସ ସଭାର ପ୍ରାଧାନ୍ୟ ରହିଛି । ବ୍ରିଟେନରେ ପ୍ରତ୍ୟେକ ଜନତାର ବିକାଶ ପରି କମନ୍ସ ସଭାର ପ୍ରାଧାନ୍ୟର ମୂଳ ଇତିହାସରେ ନିହିତ । "ରୋଜେସ୍ ଯୁଦ୍ଧ"ରେ ଲର୍ଡ଼ ବା ସାମନ୍ତମାନେ ଧ୍ୱଂସ ହୋଇଯାଇଥିଲେ । ଟିଉଡ଼ର ରାଜତ୍ୱ ସମୟରେ ଲର୍ଡ଼ ବ୍ୟବସ୍ଥାର ନୂତନ ବିକାଶ ହୋଇଥିଲେ ମଧ୍ୟ କମନ୍ସ ସଭା ହିଁ ପ୍ରଥମ ଚାର୍ଲସଙ୍କ ରାଜତ୍ୱ କାଳରେ ଯୁଦ୍ଧ ଘୋଷଣା କରିଥିଲା । ଟିଉଡର ରାଜତ୍ୱ ସମୟରେ ପ୍ରଭୂତ ଅର୍ଥନୈତିକ ବିକାଶ ସାଧିତ ହେବା ଫଳରେ ଜମିମାଲିକ ଓ ବ୍ୟବସାୟୀ ଗୋଷ୍ଠୀ ହାତକୁ କ୍ଷମତା ଆସିଥିଲା । ଷ୍ଟୁଆର୍ଟ ରାଜତ୍ୱ ସମୟରେ ପ୍ୟୁରିଟାନ୍‌ମାନେ ମଧ୍ୟବିତ୍ତ ଶ୍ରେଣୀର ଲୋକ ଥିଲେ ଓ ସେମାନଙ୍କ ମଧ୍ୟରେ ପାଇମସ୍, ହ୍ୟାମ୍ପଡ଼େନ୍ ଓ କ୍ରମୱେଲ ପ୍ରଧାନ ଥିଲେ । ସେମାନଙ୍କ ଚେଷ୍ଟା ଫଳରେ କମନ୍ସ ସଭାର ଗୁରୁତ୍ୱ ବୃଦ୍ଧି ପାଇଥିଲା । ଏ କଥା ସତ୍ୟ ଯେ, ଅଷ୍ଟାଦଶ ଶତାବ୍ଦୀରେ ଲର୍ଡ଼ ସଭାର କ୍ଷମତା ବୃଦ୍ଧି ପାଇଥିଲା । ପ୍ରଧାନ ଲର୍ଡ଼ମାନେ ବଡ଼ ବଡ଼ ଜମି ମାଲିକ ହୋଇଥିବାରୁ ସେମାନଙ୍କ ପ୍ରଭାବ କମନ୍ସ ସଭା ଉପରେ ବି ପଡ଼ିଥିଲା । ମୋଟ ଉପରେ ସେମାନେ ଶାସନ ଭାର ସେମାନଙ୍କ ସମର୍ଥକମାନଙ୍କ ହାତରେ ଛାଡ଼ି ଦେଇଥିଲେ । ବିଶେଷତଃ ଏହି ଶତାବ୍ଦୀର ଶେଷ ଆଡ଼କୁ ଏହା ପରିଲକ୍ଷିତ ହୋଇଥିଲା; ପିଟ୍ ଓ ଫକ୍ସଙ୍କ ପରି ବ୍ୟକ୍ତିମାନେ କ୍ଷମତାର ଶୀର୍ଷ ସ୍ଥାନକୁ ଆସିଥିଲେ । ସେ ସମୟରେ ବି କମନ୍ସ ସଭାକୁ ଏକ ବ୍ୟକ୍ତିଗତ ସଭା ରୂପେ ବିଚାର କରାଯାଉଥିଲା ଓ ଏହାର ବିବରଣୀ ପ୍ରକାଶ କରିବା ବେଆଇନ ଧରାଯାଉଥିଲା । ଡକ୍ଟର ଜନ୍‌ସନ୍ ନିଜର ପ୍ରସିଦ୍ଧ ଭାଷଣ ପାଇଁ ସୁଖ୍ୟାତି ଅର୍ଜନ କରିଥିଲେ । ସେ ସଭ୍ୟମାନଙ୍କୁ ତାଙ୍କ ଭାଷା ପ୍ରୟୋଗ କରିବା ପାଇଁ ପ୍ରେରଣା ଦେଉଥିଲେ । ସେ ଉପସ୍ଥିତ ନ ଥିଲା ବେଳେ କମନ୍ସ ସଭାର ବିବରଣୀକୁ ଲିଲିପୁଟ ସିନେଟର ବିବରଣୀ ସହିତ ତୁଳନା କରୁଥିଲେ ।

୧୮୩୨ର ସଂସ୍କାର ଆଇନ ପରେ କମନ୍ସ ସଭାର କ୍ଷମତା ବଢ଼ି ଯାଇଥିଲା । ସରକାର ସ୍ୱଳ୍ପ ସଂଖ୍ୟକ ବଡ଼ ବଡ଼ ଲର୍ଡ଼ମାନଙ୍କ ଉପରେ ନିର୍ଭର ନକରି ଦ୍ରୁତ ଭାବରେ ବୃଦ୍ଧି ପାଉଥିବା ମଧ୍ୟବିତ୍ତ ଶ୍ରେଣୀର ନିର୍ବାଚକମାନଙ୍କ ଉପରେ ନିର୍ଭର କରିବାକୁ ଆରମ୍ଭ କଲେ । ୧୮୩୪ର ପ୍ରସିଦ୍ଧ ଟାମୱର୍ଥ ଘୋଷଣା ପତ୍ରରେ ସାର୍ ରବର୍ଟ ପିଲ୍ ଏହି ପରିବର୍ତ୍ତନର ସୂଚନା ଦେଇଥିଲେ । ଏହି ଘୋଷଣା ପତ୍ରରେ ତାଙ୍କ ନିର୍ବାଚକମାନଙ୍କ ମାଧ୍ୟମରେ ଦେଶର ଜନସାଧାରଣଙ୍କୁ ଜଣାଇ ଦିଆଯାଇଥିଲା ଯେ ତାଙ୍କ ଦଳ ସଂଖ୍ୟା ଗରିଷ୍ଠତା ଲାଭକଲେ ଉପରୋକ୍ତ ନୀତି ଅନୁସରଣ କରିବ । କମନ୍ସ ସଭାର ବିବରଣୀ ଛପାଇବାରେ କୌଣସି ଅସୁବିଧା ନ ଥିଲା । "ହାନସାର୍ଡ଼" (Hansard) କମ୍ପାନୀ ସହିତ ଏକ ଚୁକ୍ତିଦ୍ୱାରା ତାହା ଛପାଇବା ପାଇଁ ବ୍ୟବସ୍ଥା କରାଯାଇଥିଲା । ଏପର୍ଯ୍ୟନ୍ତ ସଂସଦ ବିବରଣୀର ସରକାରୀ ରିପୋର୍ଟକୁ 'ହାନସାର୍ଡ଼' କୁହାଯାଉଛି । ବର୍ତ୍ତମାନ ହାନସାର୍ଡ଼ କମ୍ପାନୀର ଏହା ସହିତ କୌଣସି ସମ୍ବନ୍ଧ ନାହିଁ, କାରଣ ୧୯୦୯ଠାରୁ ଏହାକୁ ଛପାଇବା ଦାୟିତ୍ୱ ମହାମାନ୍ୟା ରାଣୀଙ୍କ ଷ୍ଟେସନାରୀ ଅଫିସ ବା ମୁଦ୍ରଣ ବିଭାଗ ବହନ କରୁଛି ।

ଉପରୋକ୍ତ ପରିବର୍ତ୍ତନ ଧୀରେ ଧୀରେ ଘଟିଥିଲା । ରାଣୀଙ୍କ ନିଜ ପରିଚାରିକାମାନଙ୍କୁ ବଦଳି କରିବା ବିଷୟରେ ତାଙ୍କ ଉପରେ ରାଣୀଙ୍କର "ଆସ୍ଥା" ନ ଥିବାରୁ ୧୮୩୯ରେ ସାର୍ ରବର୍ଟ ପିଲ୍ ପ୍ରଧାନ ମନ୍ତ୍ରୀ ପଦ ଗ୍ରହଣ କରିବାକୁ ମନା କରିଥିଲେ । ୧୮୪୧ ପର୍ଯ୍ୟନ୍ତ ଏକଥା ଜଣାଥିଲା ଯେ ସଂସଦ ଭଙ୍ଗ ହେଲେ ତାଙ୍କ ସରକାରଙ୍କୁ ସମର୍ଥନ କରିବା ଲାଗି ରାଣୀ ଜନସାଧାରଣଙ୍କୁ ନିବେଦନ କରି ଆଆନ୍ତି । ନିର୍ବାଚନରେ ଟୋରୀମାନେ ସଂଖ୍ୟା ଗରିଷ୍ଠତା ଲାଭ କରିବା ଫଳରେ ଓ ପରେ ହ୍ୱିଗ୍‌ମାନେ ସଂସଦରେ ହାରିଯିବା ଫଳରେ ରାଣୀ ସଙ୍ଗେ ସଙ୍ଗେ ପ୍ରଧାନ ମନ୍ତ୍ରୀ ହେବା ପାଇଁ ସାର୍ ରବର୍ଟ ପିଲଙ୍କୁ ଆହ୍ୱାନ କରିଥିଲେ ଓ ପରିଚାରିକାମାନଙ୍କ ବଦଳି ସମ୍ବନ୍ଧରେ କୌଣସି ଅସୁବିଧା ସୃଷ୍ଟି ହୋଇ ନ ଥିଲା । ଲୋକମାନେ ଏହାକୁ ସମର୍ଥନ କରିଥିଲେ ଓ ଏହା କମନ୍ସ ସଭାରେ ଗୃହୀତ ହୋଇଥିଲା । ରାଣୀ ପିଲଙ୍କ ବିଷୟରେ ଯାହା ଭାବୁଥିଲେ କିମ୍ବା ଲର୍ଡ଼ମାନେ ଯେଉଁ ମତାମତ ପୋଷଣ କରୁଥିଲେ ତା ଉପରେ କୌଣସି ଗୁରୁତ୍ୱ ଦିଆଯାଇ ନ ଥିଲା । ସରକାରଙ୍କୁ କମନ୍ସ ସଭାରେ ସଂଖ୍ୟାଗରିଷ୍ଠତା ରକ୍ଷା କରିବାକୁ ପଡ଼ୁଥିଲା । ୧୮୫୦ରେ ଲର୍ଡ଼ ଜନ୍ ରସେଲଙ୍କ ହ୍ୱିଗ୍ ସରକାରଙ୍କୁ ଏହି ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଲର୍ଡ଼ମାନେ ସରକାରଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଗ୍ରହଣ କରିଥିଲେ । ସରକାର କମନ୍ସ ସଭାର ଆସ୍ଥା ଲୋଡ଼ିଥିଲେ ଓ ଏହି ଆସ୍ଥା ପ୍ରସ୍ତାବ ଗୃହୀତ ହେବା ପରେ ସେମାନେ କ୍ଷମତାରେ ରହିଥିଲେ । ସେହି ସମୟଠାରୁ ସରକାରଙ୍କ ସଂପର୍କରେ ଲର୍ଡ଼ ସଭାର ଆସ୍ଥା ବା ଅନାସ୍ଥା ପ୍ରସ୍ତାବ ଉପରେ କୌଣସି ଗୁରୁତ୍ୱ ଦିଆଯାଉ ନାହିଁ । ୧୮୬୮ ମସିହା ନିର୍ବାଚନରେ ଟୋରୀମାନେ ହାରିଗଲା ପରେ ଡିସ୍‌ରେଲି କମନ୍ସ ସଭାରେ ଅନାସ୍ଥା ପ୍ରସ୍ତାବ ଗୃହୀତ ହେବା ପର୍ଯ୍ୟନ୍ତ ଅପେକ୍ଷା ନ କରି ସଙ୍ଗେ ସଙ୍ଗେ ଇସ୍ତଫା ଦେଇଥିଲେ । ନିର୍ବାଚକମାନେ ଉଦାର-ବାଦୀମାନଙ୍କୁ କମନ୍ସ ସଭାର ସଂଖ୍ୟାଗରିଷ୍ଠ ଦଳରୂପେ ନିର୍ବାଚିତ କରିଥିବାରୁ ଉଦାରବାଦୀ-

ସରକାର ପ୍ରତଷ୍ଠା ହେବା ନଶ୍ଚିତ ଥିଲା । ସୁତରାଂ ସରକାରକୁ ପୁନର୍ଗଠନ କରି ରାଣୀଙ୍କ ଭାଷଣ ଠଠା କରିବା ଓ ତା'ପରେ ପରାଜିତ ହେବା ପର୍ଯ୍ୟନ୍ତ ଡିସ୍‌ରେଲୀ ଅପେକ୍ଷା କରିଥିଲେ ଏହା କେବଳ ସମୟର ଅପବ୍ୟୟ ହୋଇଥାନ୍ତା । ୧୮୬୮, ୧୮୮୪, ୧୯୧୮, ୧୯୨୮ ଓ ୧୯୪୮ର ସଂସ୍କାର ଆଇନ ଗୁଡ଼ିକ ଏହି ବିଷୟକୁ ଆହୁରି ସ୍ପଷ୍ଟ କରି ଦେଇଥିଲା । ସରକାର ନଦ୍ଦିଷ୍ଟ ଭାବରେ ସଂସଦ ପାଖରେ ଦାୟୀ କିନ୍ତୁ ଏଠାରେ ସଂସଦର ଅର୍ଥ "ସଂସଦରେ ରାଣୀ", କିମ୍ବା "ରାଣୀ, ଲର୍ଡ଼ ସଭା ଓ କମନ୍‌ସ ସଭାକୁ" ନ ବୁଝାଇ କେବଳ ମାତ୍ର କମନ୍‌ସ ସଭାକୁ ହିଁ ବୁଝାଏ । କମନ୍‌ସ ସଭା ସରକାରଙ୍କୁ ସମର୍ଥନ କରୁଥିବା ଓ ବିରୋଧ କରୁଥିବା ଦଳମାନଙ୍କୁ ନେଇ ଗଠିତ ହୋଇଥିବାରୁ, ଯେଉଁ ଦଳ ସଂଖ୍ୟା ଗରିଷ୍ଠତା ଲାଭ କରେ ସେହି ଦଳ ହିଁ ସରକାର ଗଠନ କରେ । ଏହି ବିଷୟ (ସାଧାରଣତଃ) ସାଧାରଣ ନର୍ବାଚନ ଦ୍ୱାରା ନର୍ଣ୍ଣୟ କରାଯାଇ ଥାଏ । ସୁତରାଂ କେଉଁ ଦଳ କ୍ଷମତାକୁ ଆସିବ ତାହା ଜନସାଧାରଣ ନର୍ବାଚନ ବେଳେ ନଷ୍ପତ୍ତି କରିଦଅନ୍ତି ।

କେବଳ କେତେକ ଆନୁଷ୍ଠାନିକ କାର୍ଯ୍ୟ ବ୍ୟତୀତ ରାଣୀଙ୍କର ସଂସଦରେ ଅନ୍ୟ କୌଣସି କାର୍ଯ୍ୟ ନ ଥାଏ । ୧୮୪୧ ମସିହାରେ ରାଣୀ ଭିକ୍ଟୋରିଆ ଏହା ସମ୍ପୂର୍ଣ୍ଣଭାବେ ଜାଣି ନ ଥିଲେ । ୧୮୩୭ ରୁ ୧୮୪୧ ପର୍ଯ୍ୟନ୍ତ କ୍ଷମତାରେ ରହିଥିବା ହ୍ୱିଗ୍-ସରକାରଙ୍କୁ ସେ ନଜ ସରକାର ବୋଲି ଭାବୁଥିଲେ ଓ ଟୋରୀମାନେ ହ୍ୱିଗ୍-ମାନଙ୍କୁ ସମାଲୋଚନା କଲେ ସେମାନେ ରାଣୀଙ୍କୁ ସମାଲୋଚନା କଲେ ବୋଲି ସେ ଭାବୁଥିଲେ । ନର୍ବାଚକ-ମାନେ ହ୍ୱିଗ୍‌ମାନଙ୍କୁ ନର୍ବାଚନ କରିବା ଅର୍ଥ ତାଙ୍କୁ ସମର୍ଥନ କରିବା ବୁଝାଉଥିଲା । କିନ୍ତୁ ସେମାନେ ଟୋରୀମାନଙ୍କୁ ନର୍ବାଚିତ କରୁଥିବା ସମୟରେ ତାଙ୍କୁ ବିରୋଧ କରୁଥିବା ବୁଝାଉଥିଲା । ୧୮୪୧ ପରେ ଏହି ଚିନ୍ତାଧାରା ଲୋପ ପାଇଯାଇ ଥିଲା । ନର୍ବାଚକମାନେ ହ୍ୱିଗ୍‌ମାନଙ୍କୁ (ଯେଉଁମାନେ ଶୀଘ୍ର ଉଦାରବାଦୀ ନାମରେ ପରିଚିତ ହେଲେ) ସମର୍ଥନ କରିବା ଅର୍ଥ ହେଲା, ହ୍ୱିଗ୍‌ମାନେ ସରକାର ଗଠନ କରିବେ ଓ ସେମାନେ ଟୋରୀମାନଙ୍କୁ (ଯେଉଁମାନେ ଶୀଘ୍ର ଜାତି ନାମରେ ପରିଚିତ ହେଲେ) ସମର୍ଥନ କଲେ ସେମାନେ ସରକାର ଗଠନ କରିବେ ବୋଲି ଧାରଣା ସୃଷ୍ଟି ହେଲା । ରାଣୀ ଭିକ୍ଟୋରିଆ ତାଙ୍କ ଦୃଢ଼ମତାମତ ଯୋଗୁଁ ବେଳେ-ବେଳେ ଗ୍ଲାଡ଼ଷ୍ଟୋନ୍ ଓ ଡିସରେଲୀଙ୍କ ମଧ୍ୟରେ ଦେଖାଦେଉଥିବା ଦ୍ୱନ୍ଦ୍ୱ ସହିତ ସଂପୃକ୍ତ ହୋଇ ଯାଉଥିଲେ । କିନ୍ତୁ ରାଣୀ ସର୍ବସାଧାରଣଙ୍କ ସମ୍ମୁଖକୁ ନ ଆସି ସର୍ବଦା ପଛରେ ରହୁଥିଲେ । ତାଙ୍କ ରାଜତ୍ୱ ପରି ଠାରୁ ସମ୍ରାଟ ରାଜନୀତିଠାରୁ ଉର୍ଦ୍ଧ୍ୱରେ ରହିବେ ବୋଲି ନଃସନ୍ଦେହରେ ଧରି ନଆଗଲା । ବିଧେୟକ-ଗୁଡ଼ିକୁ ସ୍ୱୀକୃତ ଦେବା ରାଣୀଙ୍କର ସମ୍ପୂର୍ଣ୍ଣରୂପେ ଏକ ଆନୁଷ୍ଠାନିକ କାର୍ଯ୍ୟ ମାତ୍ର, କାରଣ ରାଣୀ ଅନେକଙ୍କ ଠାରୁ "ମୁଁ ଏହା ସହ ଏକମତ" ସୂତ୍ର ବ୍ୟବହାର କରାଯାଇ ଅଛି । ଉଭୟ ସଭାରେ ଯେ କୌଣସି ବିଧେୟକ ଗୃହୀତ ହୋଇଥିଲେ ତାହା ଆଇନରେ ପରିଣତ ହୋଇଥାଏ । ମହାମାନ୍ୟା ରାଣୀଙ୍କ ସରକାରଙ୍କ ନୀତିକୁ ରାଣୀ ନଜେ ପ୍ରଭାବିତ କରିପାରନ୍ତି । ଅବଶ୍ୟ ଏହା କମନ୍‌ସ ସଭାର ଅନୁମୋଦନ ଉପରେ ନର୍ଭର କରେ ।

**ଲର୍ଡ଼ ସଭା ( The House of Lords ) :—**

ଲର୍ଡ଼ସଭା ସଂସଦରୁ ବିଚ୍ଛିନ୍ନ ହୋଇପାରି ନାହିଁ । ଏହା ସଂସଦର ଗୋଟିଏ ଅଂଶ ଅଟେ । କିନ୍ତୁ ଏହାର ପ୍ରଭାବ ଦ୍ରୁତ ଭାବରେ ହ୍ରାସ ପାଇଅଛି । 'ଲୋକପ୍ରିୟ ସରକାର' ଧାରଣାର ବିକାଶ ସଙ୍ଗେ ସଙ୍ଗେ ଏହା ଅନିବାର୍ଯ୍ୟ ହୋଇ ପଡ଼ିଲା । ଗଣତନ୍ତ୍ରକୁ ଏକ ଗୃହୀତ ନୀତି ହିସାବରେ ଗ୍ରହଣ କରିବା ପୂର୍ବରୁ ମଧ୍ୟ ଏହା ଦେଖାଯାଇଥିଲା । ପ୍ରତିନିଧିମୂଳକ ଗୃହର ପ୍ରଭାବ ପ୍ରତିନିଧିମୂଳକ ହୋଇ ନ ଥିବା ଗୃହର ପ୍ରଭାବ ଅପେକ୍ଷା ଅଧିକ ହେବା ସ୍ୱାଭାବିକ । ନିମ୍ନଲିଖିତ ଦୁଇଟି କାରଣ ନ ଥିଲେ ଏହି ବିକାଶର ଗତି ବହୁତ କମ୍ ହୋଇଥାନ୍ତା । ଏହି ଦୁଇଟି କାରଣ ହେଲା, ପ୍ରଥମରେ ଲର୍ଡ଼ସଭାର ଗଠନ ଅସାଧାରଣ ଥିଲା, ଦ୍ୱିତୀୟରେ ଏଥିରେ ଥିବା ବହୁ ସଭ୍ୟଙ୍କର କୌଣସି ରାଜନୈତିକ ଅଭିଜ୍ଞତା ନ ଥିଲା । ଲର୍ଡ଼ସଭା ଦୁଇଟି ଗୋଷ୍ଠୀକୁ ନେଇ ଗଠିତ ଯଥା - ଦୁଇଜଣ ଆର୍ଚ୍ଚବିଶପ ବା ପ୍ରଧାନ ଧର୍ମଯାଜକ ଓ ଚର୍ଚ୍ଚ ଅଫ୍ ଇଂଲଣ୍ଡର ଅନ୍ୟ ଚବିଶ ଜଣ ନିର୍ବାଚିତ ବିଶପ୍ ବା ଧର୍ମଯାଜକ ( ଡ଼ିଏଲସର ବିଶପଙ୍କୁ ବାଦ୍‌ଦେଇ ) ଏବଂ ବଂଶାନୁକ୍ରମିକ ଓ ଆଜୀବନ ଲର୍ଡ଼ବୃନ୍ଦ ।

ଇଂଲଣ୍ଡରେ ଚର୍ଚ୍ଚ ଅଫ୍ ଇଂଲଣ୍ଡ ସଂସଦୀୟ ଆଇନ ଅନୁସାରେ ଗୋଟିଏ ପ୍ରତିଷ୍ଠିତ ଚର୍ଚ୍ଚ । ଏହାର ସ୍ଥାନୀୟ ବିଶେଷତ୍ୱ ଥିବାରୁ ଏହାର ନେତୃବୃନ୍ଦ ସରକାରଙ୍କ ସହିତ ସଂପୃକ୍ତ ହେବା ମୁକ୍ତିଯୁକ୍ତ । ଅପରପକ୍ଷରେ ଓ୍ୱେଲ୍‌ସ, ସ୍କଟଲଣ୍ଡ ଓ ଆୟରଲଣ୍ଡରେ ଧର୍ମୀୟ "ଲର୍ଡ଼-ମାନଙ୍କ" ପ୍ରଭାବ କମ୍ ଥାଏ । ପୁନଶ୍ଚ, ଊନବିଂଶ ଶତାବ୍ଦୀରେ ଅଧିକାଂଶ ନନ୍‌କନ୍-ଫରମିଷ୍ଟଙ୍କୁ ମତାଧିକାର ଦିଆଯାଇଥିଲା ଓ ସେମାନେ ଉଦାରଦଳର ବଡ଼ ସମର୍ଥକ ଥିଲେ । ଅପରପକ୍ଷରେ ଚର୍ଚ୍ଚ ଅଫ୍ ଇଂଲଣ୍ଡର ସାଧାରଣ ସଭ୍ୟମାନେ ଉଦାରବାଦୀ ନ ହୋଇ ରକ୍ଷଣଶୀଳ ଥିଲେ । ସାଧାରଣତଃ, ଆର୍ଚ୍ଚବିଶପ ଓ ବିଶପମାନେ ସେମାନଙ୍କ ରାଜନୈତିକ କ୍ଷମତାକୁ ବିଶେଷ ପ୍ରୟୋଗ କରୁ ନ ଥିଲେ । ଚଳିତ ଶତାବ୍ଦୀରେ ମଧ୍ୟ ସେମାନେ ସମ୍ପୂର୍ଣ୍ଣ ରାଜନୈତିକ ବିଷୟମାନଙ୍କରେ କ୍ୱଚିତ୍ ହସ୍ତକ୍ଷେପ କରିଥାଆନ୍ତି । କିନ୍ତୁ ସେତେବେଳେ ସେମାନଙ୍କର ସ୍ଥିତି ଅସ୍ପଷ୍ଟ ଥିଲା । ଫଳରେ ବିଶପମାନଙ୍କ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଲର୍ଡ଼ ସଭାରେ ସେମାନଙ୍କ ସ୍ଥାନ ସଂଖ୍ୟା ବୃଦ୍ଧିପାଇ ନ ଥିଲା । କେବଳ ଦୁଇଜଣ ଆର୍ଚ୍ଚବିଶପ ଲଣ୍ଡନ, ଡରହାମ, ଉଇଞ୍ଚେଷ୍ଟରର ବିଶପମାନେ ଓ ଅନ୍ୟାନ୍ୟ ୨୧ ଜଣ ବିଶପ ଲର୍ଡ଼ସଭାର ସଭ୍ୟ ଅଛନ୍ତି ।

କେତେକଙ୍କ ମତରେ ବଂଶାନୁକ୍ରମିକ ଲର୍ଡ଼ପଦ ଅସଙ୍ଗତ ଅଟେ । ମୋଟ ଉପରେ ବର୍ତ୍ତମାନ ଏ କଥାରେ ସମସ୍ତେ ଏକମତ ଯେ, ବଂଶାନୁକ୍ରମିକ ଲର୍ଡ଼ପଦ ସହ ରାଣୀ ଦେଉଥିବା ବିଭିନ୍ନ ଉପାଧି ଯୋଗୁ କୌଣସି କ୍ଷତି ନ ହୋଇ ବରଂ ଲାଭ ହେଉଛି । ଜଣକର ପୂର୍ବପୁରୁଷ ଆୟରଲଣ୍ଡ ସଂସଦରୁ ରକ୍ଷା ପାଇବେ ବୋଲି କିମ୍ବା ଗ୍ଲାଡ଼ଷ୍ଟୋନଙ୍କ ଅଦୃଶ୍ୟ ସମର୍ଥକ ଥିଲେ ବୋଲି, ତାଙ୍କୁ ଲର୍ଡ଼ ପଦ ଦିଆଯାଇଥିବା କଥା ଅସଙ୍ଗତ ମନେ ହୋଇ ପାରେ, କିନ୍ତୁ

ଲର୍ଡ଼ସଭାର ସଭ୍ୟ ହୋଇ ଜଣେ ଲର୍ଡ଼ ସାଧାରଣ ନୀତି ସମ୍ବନ୍ଧରେ ଭାଷଣ ଦେଇପାରନ୍ତି ଓ ଏଥିପାଇଁ ଭୋଟ ମଧ୍ୟ ଦେଇପାରନ୍ତି । କମନ୍ସ ସଭା ମାଧ୍ୟମରେ ପ୍ରକାଶ ପାଇଥିବା ଜନମତକୁ ଲର୍ଡ଼ସଭା ବାଧା ନ ଦେଲେ ବି ଲର୍ଡ଼ସଭାର ଆବଶ୍ୟକତା ଅନୁଭୂତ ହୋଇଥାଏ । ରାଜନୀତିଜ୍ଞ ରାଷ୍ଟ୍ରଦୂତ, ବିଚାରକ ଓ ଅନ୍ୟାନ୍ୟମାନଙ୍କୁ ଲର୍ଡ଼ସଭାର ସଭ୍ୟ କରାଯାଇ ଥାଏ । ଏମାନଙ୍କୁ ପ୍ରଥମପୁରୁଷର ଲର୍ଡ଼ ବୋଲି କୁହାଯାଇଥାଏ । ପରବର୍ତ୍ତୀ ପୁରୁଷରେ ଏହି ଲର୍ଡ଼ମାନେ ସାଧାରଣତଃ "ରକ୍ଷଣଶୀଳ" ହୋଇଥାନ୍ତି ଏବଂ ଏମାନେ ଖୁବ୍ କ୍ୱଚିତ ସଭାଗୃହରେ ଦେଖା-ଯାଆନ୍ତି । କେବଳ ଖୁବ୍ ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ବିଷୟରେ ମତବ୍ୟକ୍ତ କଲାବେଳେ ସେମାନେ ଲର୍ଡ଼ସଭାକୁ ଆସିଥାଆନ୍ତି ।

ଊନବିଂଶ ଶତାବ୍ଦୀରେ ଅଧିକାଂଶ ଲର୍ଡ଼ପଦ ଉଦାରବାଦୀ—ସରକାର ସୃଷ୍ଟି କରିଥିଲେ କିନ୍ତୁ ଅଧିକାଂଶ ଲର୍ଡ଼ ରକ୍ଷଣଶୀଳ ଥିଲେ । ୧୮୮୫ର ସ୍ୱଶାସନ ନିୟମ ଉପରେ ବିଭେଦ ଦେଖାଗଲା ପରେ ଏହା ଜଣା ପଡ଼ିଥିଲା । ଫଳରେ ସରକାର ଉଦାରବାଦୀ ଦଳ କିମ୍ବା ଶ୍ରମିକଦଳ ହସ୍ତରେ ରହିଲେ ତାହା ବିରୁଦ୍ଧରେ ସଂଖ୍ୟାଗରିଷ୍ଠତା ସୃଷ୍ଟି କରିବା ଲର୍ଡ଼-ମାନଙ୍କର ଲକ୍ଷ୍ୟ ଥିଲା । ଜାତିଦଳୀୟ-ସରକାର ସମୟରେ ଲର୍ଡ଼ମାନଙ୍କର ଭୂମିକା ସହଜ ଥିଲା । ଲର୍ଡ଼ ସଭା ଜାତିଦଳୀୟ ବ୍ୟବସ୍ଥାଗୁଡ଼ିକୁ ସମର୍ଥନ କରିବା ସ୍ଥଳେ ଉଦାରବାଦୀ କିମ୍ବା ଶ୍ରମିକଦଳର ବ୍ୟବସ୍ଥାଗୁଡ଼ିକ ପାଇଁ ଏହା "ସଂଶୋଧକ ସଭା" ରୂପେ କାର୍ଯ୍ୟ କରୁଥିଲା । ଲର୍ଡ଼ସଭା କେବେହେଲେ ଚରମ ପଦକ୍ଷେପ ନେଉ ନ ଥିଲା । ସେମାନଙ୍କ ଦ୍ୱାରା ବିଧେୟକ-ଗୁଡ଼ିକୁ ଗୃହୀତ କରାଇବା ପାଇଁ ଉଦାରବାଦୀ ଓ ଶ୍ରମିକସରକାର-ମାନେ ବେଳେ ବେଳେ ବିଧେୟକଗୁଡ଼ିକୁ ସଂଶୋଧନ କରୁଥିଲେ । "ଦ୍ୱି-ସଦନୀୟ" ବ୍ୟବସ୍ଥା ଆବଶ୍ୟକ ଥିଲା କି ନାହିଁ ସେ ପ୍ରଶ୍ନ ନ ଥିଲା; ବରଂ ଏକ ରକ୍ଷଣଶୀଳ ଦ୍ୱିତୀୟ ସଦନର ଆବଶ୍ୟକତା ଥିଲା କି ନାହିଁ ତାହା ହିଁ ପ୍ରକୃତ ପ୍ରଶ୍ନ ଥିଲା ।

ନିର୍ଦ୍ଦଳୀୟ ଦୃଷ୍ଟିକୋଣରୁ ବିଚାର କଲେ ଏ କଥା କୁହାଯାଇପାରେ ଯେ କମନ୍ସ ସଭା ଅପେକ୍ଷା ଲର୍ଡ଼ସଭା ଅଧିକ ରକ୍ଷଣଶୀଳ ହେବା ଉଚିତ । ଥରେ କୌଣସି ନୀତି ଗୃହୀତ ହେଲେ ତାହାକୁ ପରିବର୍ତ୍ତନ କରିବା ସହଜ ନୁହେଁ । ସେଥିପାଇଁ କୌଣସି ନୀତି ହେବା ପୂର୍ବରୁ ସେହି ବିଷୟରେ ଅନ୍ତତଃ ଦୁଇଥର ଚିନ୍ତା କରିବା ଉଚିତ । ସାମୟିକ ଭାବରେ ଦଳକୁ ସୁହାଇଲା ଭଳି କୌଣସି ସରକାର ଯେ କୌଣସି ନୀତି ଗୃହୀତ କରାଇ ନେଇ ପାରନ୍ତି କିନ୍ତୁ କାଳକ୍ରମେ ଏହା ଦେଶ ପକ୍ଷରେ କ୍ଷତିକର ହୋଇପାରେ । ଦୁର୍ଭାଗ୍ୟ ବଶତଃ ଲର୍ଡ଼ସଭା କେବଳ ରକ୍ଷଣଶୀଳ ନୁହେଁ, ବରଂ ଏହା ଯେଉଁ ରକ୍ଷଣଶୀଳ ରାଜନୀତିଜ୍ଞମାନଙ୍କୁ ନେଇ ଗଠିତ, ସେମାନେ ହୁଏତ ଉଦାରବାଦୀ କିଅବା କିମ୍ବା ଶ୍ରମିକ ସରକାରଙ୍କ ପାଇଁ ଠିକ୍‌ରେ ହେଉ ବା ଭୁଲରେ ହେଉ ପ୍ରତିବନ୍ଧକ ସୃଷ୍ଟି କରନ୍ତି । ଗ୍ଲାଡ଼ଷ୍ଟୋନଙ୍କ ସ୍ୱଶାସନ ନୀତି ଠିକ୍ ଥିଲା ବୋଲି ବର୍ତ୍ତମାନ ସନ୍ଦେହର ଅବକାଶ ନାହିଁ । ଶେଷରେ ରକ୍ଷଣଶୀଳ ରାଜନୀତିଜ୍ଞ-

ମାନେ ଆୟର୍‌ଲଣ୍ଡକୁ ସ୍ୱଶାସନ ନୀତଠାରୁ ଅଧିକ କିଛି ଦେଇଥିଲେ । ସ୍ୱ-ଶାସନ-ନୀତି ଗୃହୀତ ହୋଇଥିଲେ ଆୟର୍‌ଲାଣ୍ଡରେ ବୋଧହୁଏ ଏକ ସ୍ୱାଧୀନ ଗଣରାଜ୍ୟ ପ୍ରତିଷ୍ଠା ହୋଇପାରି ଥାଆନ୍ତା; ଶେଷରେ ଲର୍ଡ଼ସଭାର ବିରୋଧ ଯୋଗୁଁ ତାହାହିଁ ହୋଇଥିଲା । ୧୯୦୯ ର ବଜେଟକୁ ଲର୍ଡ଼ସଭା ବିରୋଧ କରିଥିଲା । ଏହାକୁ ସାଧାରଣତଃ କେହି ସମର୍ଥନ କରୁ ନ ଥିଲେ ଓ ଲୟଡ଼ ଜର୍ଜଙ୍କ ଭୂମିକର ସଫଳ ହୋଇ ନ ଥିଲା । ଲର୍ଡ଼ମାନେ ଏହି ବ୍ୟବସ୍ଥାକୁ ବିରୋଧ କରିଥିଲେ । ଅଧିକାଂଶ ଲର୍ଡ଼ ଭୂମିମାଲିକ ନ ଥିବାରୁ ଏହାକୁ ବିରୋଧ କରି ନ ଥିଲେ, ବରଂ ଏହା ସଫଳ ହେବ ନାହିଁ ଭାବି ବିରୋଧ କରିଥିଲେ । ପ୍ରକୃତରେ ଜନମଙ୍ଗଳରାଷ୍ଟ୍ରର ଅଗ୍ରିମାରମ୍ଭ ଯୋଗୁଁ ମୁଖ୍ୟତଃ ଏହାକୁ ବିରୋଧ କରାଯାଇଥିଲା ( ୧୯୦୮ ର ବାର୍ଦ୍ଧକ୍ୟ ଓ ଅବସରକାଳୀନ ଅଧିନିୟମ ଓ ୧୯୧୧ ର ଜାତୀୟବୀମା ଅଧିନିୟମର ଆଭିମୁଖ୍ୟ ) । ଏହି ବିରୋଧ ମୁଖ୍ୟତଃ ରକ୍ଷଣଶୀଳ ରାଜନୀତିଜ୍ଞମାନଙ୍କ ଦ୍ୱାରା ହୋଇଥାଏ ବୋଲି କୁହାଯାଏ ।

ଲୟଡ଼ ଜର୍ଜଙ୍କ ବଜେଟକୁ ଲର୍ଡ଼ମାନେ ପ୍ରତ୍ୟାଖ୍ୟାନ କଲା ପରେ ୧୯୧୧ ରେ ଲର୍ଡ଼-ସଭାର କ୍ଷମତା ସଂକୁଚିତ ହୋଇଥିଲା ଓ ଏହାର ଗଠନକୁ ପରିବର୍ତ୍ତନ କରିବା ପାଇଁ ପ୍ରସ୍ତାବମାନ ଦିଆଯାଇଥିଲା । ୧୯୪୯ରେ ଉକ୍ତ କ୍ଷମତା ଆହୁରି ହ୍ରାସ ପାଇଥିଲା । ବର୍ତ୍ତମାନ ଲର୍ଡ଼ସଭା ଗୋଟିଏ "ଅର୍ଥବିଧେୟକ"କୁ ଏକମାସ ପର୍ଯ୍ୟନ୍ତ ଓ ଏକ "ସାଧାରଣ ବିଧେୟକ"କୁ ଏକବର୍ଷ ପର୍ଯ୍ୟନ୍ତ ଅଟକାଇ ରଖିପାରେ (ସଂସଦର କାର୍ଯ୍ୟକାଳ ସଂପ୍ରସାରଣ ବିଧେୟକକୁ ଏଠାରେ ବାଦ୍ ଦିଆଯାଇ ଥାଏ ) । ଏହା ଉଦାରବାଦୀ କିମ୍ବା ଶ୍ରମିକ ସରକାରଙ୍କୁ ଆହୁରି ଭାବିବା ପାଇଁ ସୁଯୋଗ ଦେଇଥାଏ ( ଏହା ଜାତି ଦଳୀୟ ବ୍ୟବସ୍ଥା-ଗୁଡ଼ିକୁ ତୀବ୍ର ବିରୋଧ କରି ନ ଥାଏ ) । ସୁତରାଂ ସଂସଦୀୟ ସଂଖ୍ୟାଗରିଷ୍ଠତା ପଥରେ ଏହା ପ୍ରକୃତ ପ୍ରତିବନ୍ଧକ ରୂପେ ଛିଡ଼ା ହୋଇ ନ ଥାଏ । ଏହାର ଆଉ କେତେଗୁଡ଼ିଏ ଦରକାରୀ ଭୂମିକା ମଧ୍ୟ ଅଛି । ବିବାଦୀୟ ନ ଥିବା କିମ୍ବା ସବୁଦଳ ଏକମତ ହୋଇଥିବା ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକରେ ଆଲୋଚନା ଆରମ୍ଭ କରିପାରେ । ଉଦାହରଣ ସ୍ୱରୂପ, ରାଜ୍ୟଗୋଷ୍ଠୀ ଦେଶ-ମାନଙ୍କ ସହିତ ସମ୍ବନ୍ଧ, ବୈଦେଶିକ ବ୍ୟାପାରର ନିର୍ବିବାଦୀୟ ବିଷୟ, ଉପନିବେଶ ନୀତି, ସାମାଜିକ ସମ୍ବନ୍ଧ, ଆଇନ ସଂସ୍କାର ଇତ୍ୟାଦି ବିଷୟରେ ଆଲୋଚନା ଆରମ୍ଭ କରିଥାଏ । କୌଣସି ଆଲୋଚନାର ବିସ୍ତୃତ ବିବରଣୀ ପାଇଁ କମନ୍‌ସସଭାର ବିବରଣୀ ଦେଖିବାକୁ ପଡ଼ିଥାଏ, କିନ୍ତୁ ଲର୍ଡ଼ସଭାରେ ଅଧିକ ବୌଦ୍ଧିକ ଆଲୋଚନା ହୋଇଥାଏ । ଲର୍ଡ଼ମାନେ ରକ୍ଷଣଶୀଳ ବୋଲି ଏପରି ହୁଏ ନାହିଁ; ବରଂ ପ୍ରଥମ ପୁରୁଷ ଲର୍ଡ଼ମାନଙ୍କ ମଧ୍ୟରେ ମହାମାନ୍ୟା ରାଣୀଙ୍କ ସେବାରେ ଅଭିଜ୍ଞ ଦାୟିତ୍ୱ ସମ୍ପନ୍ନ ପ୍ରଶାସକ ବୃନ୍ଦ ଥିବା ଫଳରେ ଏପରି ଆଲୋଚନା ସମ୍ଭବପର ହୋଇଥାଏ । ଲର୍ଡ଼ ସଭାରେ ଆଲୋଚନା ପାଇଁ ବିଭିନ୍ନ ଯୁକ୍ତିର ଆବଶ୍ୟକତା ନ ଥାଏ, ସୁତରାଂ ବିଭିନ୍ନ ବିଷୟରେ କମନ୍‌ସ ସଭା ଅପେକ୍ଷା ଲର୍ଡ଼ ସଭାର ଆଲୋଚନା ଉଚ୍ଚଧରଣର ହୋଇଥାଏ ।

ଅତ୍ୟଧିକ ବିବାଦୀୟ ବିଧେୟକର ନବ-ଦଶମାଂଶ ତର୍କପୂର୍ଣ୍ଣ ନୁହେଁ ବୋଲି କୁହାଯାଇ ପାରିବ ନାହିଁ । ଯଦିଓ କୌଣସି ମାତ୍ର କମନ୍ସ ସଭାରେ ଗୃହୀତ ହେଲା ପରେ ଲର୍ଡ଼ମାନେ କହିପାରନ୍ତି, "ଏପରି ଜିନିଷକୁ କାହିଁକି ଏପରି ଭାବରେ ପ୍ରକାଶ କରାଯାଇଛି" ? ଅଧିକାଂଶ ସମୟରେ ବିଧେୟକଟି ଗୃହୀତ ହେବାରେ ବାଧା ନ ଦେଇ ତାହାକୁ ଯଥାସମ୍ଭବ ପରିମାର୍ଜିତ ଭାବରେ ଗ୍ରହଣ କରିବା ପାଇଁ ଚେଷ୍ଟା କରାଯାଇଥାଏ । କମନ୍ସ ସଭାରେ ବିବାଦୀୟ ବିଷୟ ଉପରେ ସଂଗ୍ରାମ ଚାଲେ ବୋଲି ବିଧେୟକଟିର ଦୋଷ ତ୍ରୁଟି ସୁଧାରିବା ପାଇଁ ସେଠାରେ ସମୟ ନ ଥାଏ । ଅଧିକାଂଶ ଦୋଷତ୍ରୁଟି ସରକାରଙ୍କ ଦ୍ୱାରା ସଂଶୋଧିତ ହୋଇଥିବା କଥା ସତ୍ୟ । ସାଧାରଣ ସେବାକ୍ଷେତ୍ର ଭିତରେ ଓ ବାହାରେ ଥିବା ଅଭିଜ୍ଞ ବ୍ୟକ୍ତିମାନେ ବିଧେୟକର ଦୋଷ-ତ୍ରୁଟି ଦର୍ଶାଇଥାନ୍ତି ଓ ତଦନୁସାରେ ଲର୍ଡ଼ ସଭାରେ ଆବଶ୍ୟକୀୟ ସଂଶୋଧନ ପ୍ରସ୍ତାବ ଆସିଥାଏ । ଏଠାରେ ଲର୍ଡ଼ମାନଙ୍କ ଭୂମିକା ଆନୁଷ୍ଠାନିକ ମାତ୍ର, କିନ୍ତୁ ସଂସଦର ଯେକୌଣସି ଅବସ୍ଥାରେ ଏହି ବ୍ୟବସ୍ଥା ଥିବା ଉଚିତ ।

ଏତଦ୍ ବ୍ୟତୀତ ସମିତି ମାଧ୍ୟମରେ ଅନେକ କାର୍ଯ୍ୟ ସମ୍ପାଦନ କରାଯାଇଥାଏ । ସାଧାରଣତଃ ବେସରକାରୀ ବିଧେୟକ ଓ ନିର୍ଦ୍ଦେଶ ଗୁଡ଼ିକ ଉପରେ ଏହି ବ୍ୟବସ୍ଥା କରାଯାଇ-ଥାଏ । କମନ୍ସ ସଭା ଅପେକ୍ଷା ଲର୍ଡ ସଭାରେ ଏହି ବ୍ୟବସ୍ଥା ଅଧିକ ଭଲ ଭାବରେ କରାଯାଏ । ସଂସଦର ଅଧିକାଂଶ ସଦସ୍ୟ ସକ୍ରିୟ ରାଜନୀତିଜ୍ଞ ଅଟନ୍ତି । ସେମାନେ ସର୍ବସାଧାରଣ ବିବାଦୀୟ ବିଷୟମାନଙ୍କରେ ସକ୍ରିୟଭାଗ ନେଇଥିବାରୁ, ବିଭିନ୍ନ ସଭାମଞ୍ଚରେ ସେ ବିଷୟରେ ଭାଷଣ ପ୍ରଦାନ କରିଥିବାରୁ ଓ ନାନା ସମ୍ମିଳନୀରେ ଯୋଗଦାନ କରି ବିଭିନ୍ନ ପ୍ରସ୍ତାବ ଗୃହୀତ କରାଇ ଥିବାରୁ ଜନସାଧାରଣଙ୍କ ଦ୍ୱାରା ସେମାନେ ନିର୍ବାଚିତ ହୋଇଥାଆନ୍ତି । କୌଣସି ବିଷୟରେ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ନ କରି ସେମାନେ ସାଧାରଣ ଭାବରେ ନିଜ ମତ ପ୍ରକାଶ କରିଥାଆନ୍ତି। ସର୍ବୋପରି ନିଜର ପ୍ରଚାର ଚାହିଁ ଥାଆନ୍ତି । ସମିତିରେ ଏପରି ପ୍ରଚାର ହୋଇପାରେ ନାହିଁ । କମନ୍ସ-ସଭାରେ ବହୁତ କାର୍ଯ୍ୟ ସମ୍ପାଦନ କରିବାକୁ ଥିବାରୁ ଏଠାରେ ସମିତି କାର୍ଯ୍ୟ ସୁଚାରୁ-ରୂପେ ସମ୍ପାଦନ କରିବା ସମ୍ଭବ ନୁହେଁ । ଅପର ପକ୍ଷରେ ଲର୍ଡ଼ମାନେ ଯେ କୌଣସି ବିଷୟରେ ଟିକିନିଖି ଆଲୋଚନା କରିବାକୁ ପ୍ରସ୍ତୁତ ଥାଆନ୍ତି । ସଂସଦର ପ୍ରାୟ ଅର୍ଦ୍ଧେକ ସମିତି କାର୍ଯ୍ୟ ଲର୍ଡ଼ମାନଙ୍କ ଦ୍ୱାରା କରାଯାଇଥାଏ । କିନ୍ତୁ ଲର୍ଡ଼ମାନେ କମନ୍ସସଭାର ସଭ୍ୟମାନଙ୍କ ଅପେକ୍ଷା ଖୁବ୍ କମ୍ ଉପସ୍ଥାନ ଭତ୍ତା ପାଆନ୍ତି ।

ସଂସଦ ଦୁଇଟି ଭିନ୍ନଧରଣର କାର୍ଯ୍ୟ ସମ୍ପାଦନ କରେ । ଅବଶ୍ୟ ଏହି ଦୁଇଟି କାର୍ଯ୍ୟ ବେଳେ ବେଳେ ମିଶିଯାଇଥାଏ । ବିଶିଷ୍ଟ ସମସ୍ୟାଗୁଡ଼ିକ ଉପରେ ସାଧାରଣ ଆଲୋଚନା ଗୋଟିଏ କାର୍ଯ୍ୟ । ଏହି ସମସ୍ୟାଗୁଡ଼ିକ ବିବାଦୀୟ ହୋଇଥିଲେ କମନ୍ସ ସଭାର ସଭ୍ୟମାନେ ଅଧିକ ସକ୍ରିୟ ଅଂଶ ଗ୍ରହଣ କରନ୍ତି । ଅପର ପକ୍ଷରେ ସମସ୍ୟାଗୁଡ଼ିକ ବିବାଦୀୟ ହୋଇ ନ ଥିଲେ, ଲର୍ଡ଼-ସଭାର ସଭ୍ୟମାନେ ଅଧିକ ସକ୍ରିୟ ଅଂଶ ଗ୍ରହଣ କରିଥାଆନ୍ତି । ବିଧେୟକ, ବ୍ୟକ୍ତିଗତ-

ବିଧାନ, ଆୟବ୍ୟୟ ଅଟକଳ ଓ ହିସାବ ସମୀକ୍ଷା ବିଷୟରେ ବିଶଦ ଆଲୋଚନା ସମିତିଗୁଡ଼ିକର ଅନ୍ୟ ଏକ କାର୍ଯ୍ୟ ଅଟେ । କମନ୍‌ସ ସଭା ଆର୍ଥିକ ବିଷୟ ବୁଝାସୁଝା କରେ । ଲର୍ଡ଼ସଭାର ଆର୍ଥିକ ବିଷୟ ସହିତ କୌଣସି ସମ୍ପର୍କ ନ ଥାଏ, କିନ୍ତୁ ଅନ୍ୟାନ୍ୟ ବିଷୟରେ ଲର୍ଡ଼ସଭା ବହୁତ ସାହାଯ୍ୟ କରିଥାଏ ।

ଫଳରେ ଦ୍ୱିତୀୟ ସଦନ ରଖିବା ନ ରଖିବା ସମ୍ବନ୍ଧରେ ଯେଉଁ ପୁରାତନ ଯୁକ୍ତିତର୍କ ଶୁଣା ଯାଉଥିଲା ତାହା ପ୍ରାୟ ଅନ୍ତର୍ଦ୍ଧାନ ହୋଇ ଗଲାଣି । ଲର୍ଡ଼ସଭା ସପକ୍ଷରେ ଓ ବିପକ୍ଷରେ ଯେ କୌଣସି ତାତ୍ତ୍ୱିକ ଯୁକ୍ତିତର୍କ ଉପସ୍ଥାପନ କରାଯାଉନା କାହିଁକି ଲର୍ଡ଼ସଭା ଅତି ଦରକାରୀ କାର୍ଯ୍ୟ କରିଥାଏ । ବର୍ତ୍ତମାନ ଲର୍ଡ଼ମାନେ ସରକାରୀ ମନ୍ତ୍ରିମାନଙ୍କ ବିରୁଦ୍ଧରେ ପ୍ରତିବନ୍ଧକ ରୂପେ ଠିଆ ନ ହେବାରୁ ଶ୍ରମିକଦଳ ମଧ୍ୟ ଲର୍ଡ଼ସଭାକୁ ଉଠାଇ ଦେବା ବିଷୟ ନିଜ କାର୍ଯ୍ୟକ୍ରମରୁ ଉଠାଇ ଦେଲେଣି । ଲର୍ଡ଼ସଭା ରହିବା ବିଷୟରେ ବର୍ତ୍ତମାନ ସବୁଦଳ ଏକମତ, କିନ୍ତୁ ଏହାର ଗଠନରେ ଦୋଷତ୍ରୁଟି ଥିବା କଥା ସ୍ୱୀକାର କରାଯାଏ । ଏବେ କେତେକ ପରିବର୍ତ୍ତନ ଘଟିଛି କିନ୍ତୁ ଏହି ପରିବର୍ତ୍ତନ ଯଥେଷ୍ଟ ନୁହେଁ । ୧୭୦୭ ପୂର୍ବରୁ ସୃଷ୍ଟି ହୋଇଥିବା ସ୍କଟଲଣ୍ଡର ବଂଶାନୁକ୍ରମିକ ଲର୍ଡ଼ମାନେ ଲର୍ଡ଼ସଭାର ସଦସ୍ୟ ହୋଇ ପାରନ୍ତି । ଅପର ପକ୍ଷରେ ବାରନ୍‌ମାନଙ୍କୁ ଆଜୀବନ ଲର୍ଡ଼ପଦ ଦିଆଯାଇପାରେ ଏବଂ ସେମାନେ ଲର୍ଡ଼ସଭାରେ ବସିପାରନ୍ତି । କିନ୍ତୁ ବଂଶାନୁକ୍ରମିକ ଲର୍ଡ଼ପଦ ହ୍ରାସ ପାଇ ନାହିଁ; ବିଶେଷତଃ ଜାତୀୟଦଳୀୟ ସରକାରଙ୍କ ଶାସନକାଳରେ ଏହା ହ୍ରାସପାଇ ନ ଥାଏ । ଏହି ପରିବର୍ତ୍ତନ ଫଳରେ ଲର୍ଡ଼ସଭାର ସଭ୍ୟ ସଂଖ୍ୟା ବୃଦ୍ଧି ପାଇଅଛି ଏବଂ ଏହା ବର୍ତ୍ତମାନ ଏକ-ହଜାର ପାଖାପାଖି ହେଲାଣି । ୧୯୬୩ରେ ଲର୍ଡ଼ମାନଙ୍କୁ ୧୨ ମାସ ମଧ୍ୟରେ ସେମାନଙ୍କ ଲର୍ଡ଼ପଦ ତ୍ୟାଗ କରିବାର ସୁଯୋଗ ଦିଆଯାଇ ଥିଲା, କିନ୍ତୁ ପ୍ରକୃତରେ ମାତ୍ର ସ୍ୱଳ୍ପଜଣ ଲର୍ଡ଼ପଦ ତ୍ୟାଗ କରିଥିଲେ । ଲର୍ଡ଼ପଦ ଲାଭକରିଥିବା ବ୍ୟକ୍ତିମାନଙ୍କୁ ବାରମାସ ମଧ୍ୟରେ ତାହା ତ୍ୟାଗ କରିବାକୁ ସୁବିଧା ଦିଆଯାଇଥିଲା, କିନ୍ତୁ କ୍ୱଚିତ୍ ଏହା କାର୍ଯ୍ୟକାରୀ ହୋଇଥିଲା । ବଂଶାନୁକ୍ରମିକ ଲର୍ଡ଼ମାନଙ୍କୁ ଲର୍ଡ଼ ସଭାରେ ବସିବା ଅଧିକାରରୁ ବଞ୍ଚିତ କରିବା ଓ ଲର୍ଡ଼ସଭାର ବିବରଣୀରେ ଯେଉଁମାନେ ସକ୍ରିୟ ଅଂଶ ଗ୍ରହଣ କରିବା କଥା ସେମାନଙ୍କୁ ଲର୍ଡ଼ପଦରେ ରଖିବା ପାଇଁ ଆଦେଶନାମା ଦିଆଯିବା ଉପରୋକ୍ତ ସମସ୍ୟାର ଏକ ସରଳ ସମାଧାନ ଅଟେ ।

**କମନ୍‌ସ ସଭା ( The House of Commons ) :**

"ସଂସଦ" ଓ "କମନ୍‌ସସଭା"—ଉଭୟ ସମାନାର୍ଥବୋଧକ ଶବ୍ଦରୂପେ ଗୃହୀତ ହୋଇଥାଏ । ଏହା ରାଜନୈତିକ ବାସ୍ତବତା ଉପରେ ପର୍ଯ୍ୟବସିତ । କେବଳ କେତେକ ଆନୁଷ୍ଠାନିକ କାର୍ଯ୍ୟକୁ ବାଦ୍ ଦେଲେ ଅନ୍ୟ ସବୁ କାର୍ଯ୍ୟରୁ ରାଣୀ ସଂସଦଠାରୁ ଅଲଗା ଥା'ନ୍ତି । ଲର୍ଡ଼ସଭା କେତେକ ଦରକାରୀ କାର୍ଯ୍ୟ ସମ୍ପାଦନ କରୁଥିଲେ ମଧ୍ୟ ଏହାର ଭୂମିକା ଉଲ୍ଲେଖ

ଯୋଗ୍ୟ ବା ଗୁରୁତ୍ୱପୂର୍ଣ୍ଣ ନୁହେଁ । କମନ୍‌ସସଭା ହିଁ ସଂସଦର ପ୍ରକୃତ କାର୍ଯ୍ୟ ନିର୍ବାହ କରିଥାଏ । ଏହା ପ୍ରତିନିଧିମୂଳକ ସଭା ଥିବାରୁ ଏହାର ଗୁରୁତ୍ୱ ଅଧିକ ।

"ପ୍ରତିନିଧିମୂଳକ" ଶବ୍ଦଟିର ବିଭିନ୍ନ ଅର୍ଥ ହୋଇପାରେ । ବ୍ରିଟେନ୍‌ରେ ଏହି ଶବ୍ଦର ଅର୍ଥ ଯାହା ତାହା ତଳେ ବର୍ଣ୍ଣିତ କରାଯାଉଥିବା କେତେକ ଧାରଣା ଉପରେ ପର୍ଯ୍ୟବସିତ । କେତେକ ସମାଜରେ ପ୍ରକୃତ ପ୍ରତିନିଧି ନିର୍ବାଚିତ ହୋଇ ନ ଥାନ୍ତି; ସେମାନେ ବଂଶାନୁକ୍ରମିକ ଅଧିକାର ବଳରେ ନିଜ ସ୍ଥାନ ଦଖଲ କରିଥାଆନ୍ତି । ସାକସନ୍ ଉପଜାତିର ମୁଖ୍ୟ ତାଙ୍କ ନିଜ ଲୋକମାନଙ୍କ ପ୍ରତିନିଧି ରୂପେ ଥିଲେ । ଏ ପର୍ଯ୍ୟନ୍ତ ମଧ୍ୟ ଆଫ୍ରିକାର କେତେକ ଅଞ୍ଚଳରେ ଏହିପରି ବ୍ୟବସ୍ଥା ଅଛି । ଖ୍ରୀ. ଅଳ୍ପଦିନ ତଳେ ଭାରତରେ ଜଣେ ମହାରାଜା ନିଜକୁ ଲୋକମାନଙ୍କ ପିତା ସ୍ୱରୂପ ଜ୍ଞାନ କରୁଥିଲେ । ସେହି ଲୋକମାନଙ୍କୁ ଜଣେ ପ୍ରତିନିଧି ବାଛିବାକୁ କୁହାଯାଇ ଥିଲେ ସେମାନେ ତାଙ୍କୁ ହିଁ ବାଛି ଥାଆନ୍ତେ । ବ୍ରିଟିଶ୍ ଭାରତ ଓ ସିଂହଳରେ କେତେଗୋଟି ଜାତିର "ଜାତି" ନେତା ଥିଲେ ଓ ସେମାନେ ନିଜ ଜାତିର ଲୋକମାନଙ୍କ-ପାଇଁ କହୁଥିଲେ । ଜର୍ମାନୀରେ ନାଜିମାନେ ନେତୃତ୍ୱ ବିଷୟରେ ଏହି ନୀତି ଅନୁସରଣ କରୁଥିଲେ । ସେଠାରେ ସେମାନେ ଶକ୍ତି ଓ ଛଳନା ବଳରେ କ୍ଷମତା ଲାଭ କରିବା ଘଟଣା ସତ୍ୟ ଥିଲା । ସେମାନେ କ୍ଷମତାରେ ଥିଲାବେଳେ ଜର୍ମାନମାନଙ୍କ ସହିତ ସେମାନଙ୍କର ମତ-ଭେଦ ନ ଥିଲା । ବିଶେଷତଃ ରୋମାନ୍ କ୍ୟାଥଲିକ୍ ଚର୍ଚ୍ଚ ଓ ବିଶପଶାସିତ ଚର୍ଚ୍ଚଗୁଡ଼ିକ ଏହି ନୀତି ଅନୁସରଣ କରନ୍ତି । ସେମାନେ ଅବଶ୍ୟ ଏଥିପାଇଁ ଧର୍ମନୈତିକ କାରଣ ଉପସ୍ଥାପନ କରିଥାଆନ୍ତି । କମ୍ୟୁନିଷ୍ଟ ଦେଶମାନଙ୍କରେ ନେତୃତ୍ୱ ସମ୍ବନ୍ଧରେ ସେମାନଙ୍କର ନିଜନୀତି ଥାଏ ଓ ଏହା ମୁଖ୍ୟତଃ ଶିଳ୍ପଭିତ୍ତିକ ଶ୍ରମିକଶ୍ରେଣୀ ଉପରେ ନିର୍ଭର କରିଥାଏ ।

ବ୍ରିଟେନ୍‌ରେ ଦେଶକୁ ଭାଗ ଭାଗ କରି ନିର୍ବାଚନ ମଣ୍ଡଳୀ ଗଠନ କରିବା ଓ ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ରହୁଥିବା ସାବାଳକ ବ୍ୟକ୍ତିମାନେ ଭୋଟଦ୍ୱାରା ଜଣେ ପ୍ରତିନିଧି ବାଛିବା ପ୍ରଥା ଆଜିକାଲି ପ୍ରଚଳିତ ହୋଇଅଛି । କମନ୍‌ସସଭାର ନାମକରଣରୁ ଏ କଥା ସୂଚିତ ହୁଏ ଯେ ଏହା ସାଧାରଣ ଜନତା ଏବଂ ସାୟାର ଓ ବୁରୋ ଗୁଡ଼ିକର ପ୍ରତିନିଧିଙ୍କୁ ନେଇ ଗଠିତ ହୁଏ । ସାୟାରର ସ୍ୱାଧୀନ ବ୍ୟକ୍ତି ଅର୍ଥାତ୍ ସ୍ୱାଧୀନ ଜମି ମାଲିକମାନେ ଏକତ୍ର ମିଳିତ ହୋଇ ନିଜ ତରଫରୁ ଦୁଇଜଣ ନାଇଟ୍‌ଙ୍କୁ ବାଛୁଥିଲେ । ବୁରୋରେ ବସବାସ କରୁଥିବା ଲୋକମାନଙ୍କ ସଂଖ୍ୟା ବେଶି ବା କମ୍ ହେଲେ ମଧ୍ୟ ସେମାନେ ଏକତ୍ର ମିଳିତ ହୋଇ ସେମାନଙ୍କ ପ୍ରତିନିଧି-ମାନଙ୍କୁ ମନୋନୀତ କରୁଥିଲେ । ସାଧାରଣ ଲୋକମାନେ ଏଥିରେ ଅଧିକ ଭାଗ ନିଅନ୍ତୁ ବୋଲି କେହି ସୂଚନା ଦେଇ ନ ଥିଲେ, କାରଣ ଲର୍ଡ, ନାଇଟ୍ ଓ ବରଜେସ୍‌ମାନେ ସେମାନଙ୍କ ତରଫରୁ ଯଥେଷ୍ଟ ପ୍ରତିନିଧିତ୍ୱ କରୁଥିଲେ ।

ପ୍ରତିନିଧିମୂଳକ ଗଣତାନ୍ତ୍ରିକ ଚିନ୍ତାଧାରା ବର୍ତ୍ତମାନ ଦୃଢ଼ଭାବରେ ଗୃହୀତ ହୋଇଛି । ଏହି ଚିନ୍ତାଧାରା ବିଭିନ୍ନ ସୂତ୍ରରୁ ଉଦ୍‌ଭୂତ । ପ୍ରଥମତଃ ଏହା ଖ୍ରୀଷ୍ଟଧର୍ମ, ବିଶେଷତଃ ନନ୍‌କନ୍-

ଫରମିଷ୍ଟମାନଙ୍କ ଖ୍ରୀଷ୍ଟଧର୍ମ ବ୍ୟାଖ୍ୟା ଉପରେ ଆଧାରିତ । ଖ୍ରୀଷ୍ଟଧର୍ମ ଦୁଇଟି ଧାରଣା ଉପରେ ଗୁରୁତ୍ୱ ଦେଇଥାଏ । ତାହା ହେଲା ବ୍ୟକ୍ତି ଓ ଚର୍ଚ୍ଚ ସମ୍ବନ୍ଧରେ ଧାରଣା । ବ୍ୟାଖ୍ୟା ଅନୁସାରେ ଏହାର ଗୁରୁତ୍ୱ ନିର୍ଭର କରେ । ଇଂଲଣ୍ଡର ଚର୍ଚ୍ଚ ( ରୋମ୍‌ର ଚର୍ଚ୍ଚପରି ) ଧର୍ମ ଉପରେ ଗୁରୁତ୍ୱ ଆରୋପ କରେ । ନନ୍‌କନ୍‌ଫର୍‌ମିଷ୍ଟମାନେ ବ୍ୟକ୍ତି ଉପରେ ଗୁରୁତ୍ୱ ଆରୋପ କରନ୍ତି । ଊନବିଂଶ ଶତାବ୍ଦୀ ବ୍ରିଟେନ୍‌ରେ ନନ୍‌କନ୍‌ଫର୍‌ମିଷ୍ଟମାନେ ସଂସଦୀୟ ସଂସ୍କାର ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ଦ୍ୱିତୀୟତଃ, ଜ୍ଞାନର ପୁନରୁତ୍‌ଥାନ ଫଳରେ ଇଉରୋପୀୟ ଚିନ୍ତାଧାରା ଗ୍ରୀକ୍ ରାଜନୈତିକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହୋଇଥିଲା । ଏହା ଫଳରେ ଗଣତାନ୍ତ୍ରିକ ସିଦ୍ଧାନ୍ତ ଜନ୍ମଲାଭ କରିଥିଲା । ଗ୍ରୀକ୍ ଗଣତନ୍ତ୍ର ଗଣରାଜ୍ୟ ପରି କ୍ଷୁଦ୍ର ଜନସମଷ୍ଟି ମଧ୍ୟରେ ସୀମିତ ଥିଲା । ନର୍ମାନ ଆକ୍ରମଣ ପରେ ତାହା ଇଂଲଣ୍ଡର ପ୍ରତିନିଧିମୂଳକ ଚିନ୍ତାଧାରାକୁ ପ୍ରଭାବିତ କରିଥିଲା । ତୃତୀୟତଃ, ଆଦର୍ଶ ଦୃଷ୍ଟିରୁ ଅଭିଜାତତନ୍ତ୍ରର ସୁଖସୁବିଧାକୁ ଲୋପ କରିବା ଓ ଜନତା ମଧ୍ୟରେ ରାଜନୈତିକ ସମତା ପ୍ରତିଷ୍ଠା କରିବା ଫରାସୀ ବିପ୍ଳବର ଉଦ୍ଦେଶ୍ୟ ଥିଲା । ଅଳ୍ପ ସମୟ ପାଇଁ ଏହି ବିପ୍ଳବ ବ୍ରିଟେନରେ ପ୍ରତିକ୍ରିୟା ସୃଷ୍ଟି କରି ସଂସଦୀୟ ସଂସ୍କାର-ମୂଳକ ଚିନ୍ତାଧାରାକୁ ପରିପୁଷ୍ଟ କରିଥିଲା । କିନ୍ତୁ ବହୁ ପରେ ଏହା ସେହି ଚିନ୍ତାଧାରାର ବିକାଶରେ ଯଥେଷ୍ଟ ସାହାଯ୍ୟ କରିଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏଡ୍‌ମଣ୍ଡବର୍କଙ୍କ ରକ୍ଷଣଶୀଳ ଚିନ୍ତାଧାରା ପ୍ରାଧାନ୍ୟ ବିସ୍ତାର କରିଥିଲା । କିନ୍ତୁ ଏହି ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଜନ୍ ଷ୍ଟୁଆର୍ଟ ମିଲ୍‌ଙ୍କ ପ୍ରଭାବ ଯଥେଷ୍ଟ ଥିଲା । ମିଲ୍ ତାଙ୍କ ଚିନ୍ତାଧାରାକୁ ଫରାସୀ ବିପ୍ଳବ ମାଧ୍ୟମରେ ବେନ୍‌ଥାମ୍‌ଙ୍କଠାରୁ ପାଇଥିଲେ ।

ଅର୍ଥନୈତିକ ଓ ସାମାଜିକ ପରିବର୍ତ୍ତନ ଅନୁସାରେ ଚିନ୍ତାଧାରାର ବିକାଶ ହୋଇଥାଏ । ତଥାକଥିତ "ଶିଳ୍ପ ବିପ୍ଳବ" ହିଁ ଏହାକୁ ଯଥେଷ୍ଟ ପ୍ରଭାବିତ କରିଥିଲା । ଏଠାରେ "ବିପ୍ଳବ" ଶବ୍ଦଟି ଅପ୍ରାସଙ୍ଗିକ ମନେହୁଏ, କାରଣ ବିପ୍ଳବ ଅର୍ଥ ଆକସ୍ମିକ ପରିବର୍ତ୍ତନ । କିନ୍ତୁ ଶିଳ୍ପ ବିପ୍ଳବ ଫଳରେ ହୋଇଥିବା ପରିବର୍ତ୍ତନ ଶହେ ବର୍ଷ ମଧ୍ୟରେ ଧୀର ଓ ନିରବଚ୍ଛିନ୍ନ ଭାବରେ ହୋଇଥିଲା । ବ୍ୟବସାୟ ଉପରେ ନିର୍ଭର ନ କରି ଶିଳ୍ପ ଉପରେ ନିର୍ଭର କରୁଥିବା ସହରାଞ୍ଚଳରେ ଜନ ସଂଖ୍ୟା ବୃଦ୍ଧି ପାଇଥିଲା । ଶିଳ୍ପ ବିପ୍ଳବର ଏହା ଥିଲା ପ୍ରଧାନ ପରିଣାମ । ଭୂମିହୀନ ଶ୍ରମିକଠାରୁ ଆରମ୍ଭ କରି ସ୍କୋୟାର ଓ ଜମିମାଲିକ ପର୍ଯ୍ୟନ୍ତ ନାନା ଶ୍ରେଣୀ ସୃଷ୍ଟି ହୋଇ ଇଂଲଣ୍ଡର ଗ୍ରାମ୍ୟ ଜୀବନରେ ସାମାଜିକ ସ୍ଥିରତା ଆଣିଥିଲା । ବ୍ୟାବସାୟିକ ସହର-ମାନଙ୍କରେ ବ୍ୟବସାୟୀ ଓ କାରିଗର ଶ୍ରେଣୀର ପ୍ରାଧାନ୍ୟ ଥିଲା । କାରଖାନାରେ କାମ କରୁଥିବା ଶ୍ରମିକ ତାର ଗ୍ରାମ୍ୟ ଶ୍ରେଣୀକୁ ପରିତ୍ୟାଗ କରିଥିଲେ ମଧ୍ୟ ବ୍ୟାବସାୟିକ ଶ୍ରେଣୀରେ ଯୋଗ ଦେଇ ନ ଥିଲା । ସେ ତାର ଶ୍ରମିକ ସଙ୍ଘ ଓ ନନ୍‌କନ୍‌ଫରମିଷ୍ଟ ବିଶ୍ୱାସ ଫଳରେ ନିଜ ଶକ୍ତି ବୃଦ୍ଧି କରିଥିଲା । ଶିଳ୍ପପ୍ରଧାନ ସହରମାନଙ୍କରେ କେବଳ ମାତ୍ର ଏକକ ପରିବାର ସ୍ଥାୟୀ ସଂସ୍ଥା ଥିଲା । କାଉଣ୍ଟିର ସ୍ୱାଧୀନ ଭୂମ୍ୟଧିକାରୀ କିମ୍ବା ସହରର ବରଜେସ୍‌ମାନେ ଏଥିରେ ପ୍ରତିନିଧିତ୍ୱ କରି ନ ଥିଲେ । ଏହି ଶତାବ୍ଦୀର ଚତୁର୍ଥ ଦଶକରେ "ଚାର୍ଟର" ବା ସନନ୍ଦ

ପାଇଁ ହୋଇଥିବା ଆନ୍ଦୋଳନ ସଫଳ ହୋଇପାରି ନ ଥିଲା କିନ୍ତୁ ସହରାଞ୍ଚଳର ଶ୍ରମିକ ସଂଘରେ ପ୍ରତିନିଧିତ୍ୱ କରିବା ଚିନ୍ତାଧାରା ବିକଶିତ ହୋଇଥିଲା । ଆଶ୍ଚର୍ଯ୍ୟର କଥା ଯେ ୧୮୬୭ର ସଂସ୍କାର ଆଇନ ସହରାଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କୁ ମତାଧିକାର ପ୍ରଦାନ କରିଥିଲା । ଏହା ମଧ୍ୟରେ ଗ୍ରାମ୍ୟ ଇଂଲଣ୍ଡର ରୂପ ମଧ୍ୟ ପରିବର୍ତ୍ତିତ ହୋଇଯାଇ ଥିଲା । ରେଲଚଳାଚଳ ଓ ପିଚୁରାସ୍ତା ତିଆରି ହେବା ଫଳରେ ଓ ମଟର ବସ୍ ଚାଲିବା ଫଳରେ ଗ୍ରାମ୍ୟ ଶ୍ରେଣୀ-ବିଭାଗ ଧ୍ୱଂସ ପାଇଥିଲା । ୧୮୮୪ର ସଂସ୍କାର ଆଇନ ଗ୍ରାମ୍ୟାଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କୁ ମତାଧିକାର ପ୍ରଦାନ କରିଥିଲା ।

ଉପରୋକ୍ତ ଚିନ୍ତାଧାରାଗୁଡ଼ିକ ଧାରାବାହିକ ଭାବେ ବିକଶିତ ହୋଇ ଆଇନ-ପ୍ରଣୟନ ବ୍ୟବସ୍ଥାକୁ ପ୍ରଭାବିତ କରିଥିଲା ବୋଲି କୁହାଯାଇ ପାରିବ ନାହିଁ । ରାଜନୀତିକ-ଦାର୍ଶନିକମାନଙ୍କ ପରିବର୍ତ୍ତେ ରାଜନୀତିଜ୍ଞମାନେ ଆଇନ ପ୍ରଣୟନ କରନ୍ତି । ରାଜନୀତିଜ୍ଞମାନେ ଭୋଟ ପାଇବା ପାଇଁ ଆଗ୍ରହୀ ଥାଆନ୍ତି । ୧୮୬୬ରେ ଗ୍ଲାଡ଼ଷ୍ଟୋନଙ୍କ ପାଇଁ ତାହାର ଆବଶ୍ୟକତା ଥିଲା କି ନାହିଁ କିମ୍ବା ଉଦାର ଦଳ ଅଧିକ ସ୍ଥାନ ହାସଲ କରିବେ ବୋଲି ଗ୍ଲାଡ଼ଷ୍ଟୋନ୍ ଭାବିଥିଲେ କି ନାହିଁ, ତାହା ବିବାଦୀୟ ବିଷୟ ହୋଇପାରେ । ଗ୍ଲାଡ଼ଷ୍ଟୋନ୍ ଏଥିରେ ସଫଳତା ହାସଲ କରି ନପାରିବାରୁ ବିନା ଦ୍ୱିଧାରେ ଡିଜ୍‌ରେଲି ନୂତନ ବିଧେୟକ ଉପସ୍ଥାପନ କରିଥିଲେ ଓ ଏହା ୧୮୬୭ର ସଂସ୍କାର ଆଇନରୂପେ ବିଖ୍ୟାତ ଥିଲା । ଡିସ୍‌ରେଲି ହ୍ୱିଗ୍‌ମାନଙ୍କ ପରାଜୟର ସୁବିଧା ନେଇ ଟୋରି ଦଳ ପାଇଁ ଅଧିକ ସ୍ଥାନ ହାସଲ କରିବାକୁ ଚିନ୍ତା କରିଥିଲେ । କିନ୍ତୁ ପରିଶେଷରେ ଉଦାରବାଦୀମାନେ ବିଜୟ ହାସଲ କରିଥିଲେ । ଗ୍ରାମାଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କୁ ୧୮୮୪ରେ ମତାଧିକାର ପ୍ରଦାନ କରାଯାଇଥିଲେ ଉଦାରବାଦୀମାନେ ପୁନଶ୍ଚ ବିଜୟ ହାସଲ କରିପାରି ଥାଆନ୍ତେ ବୋଲି ଏଥିରୁ ସୂଚିତ ହୋଇଥାଏ । ତଥାପି ସମୟ ଦେଖି ରାଜନୀତିଜ୍ଞମାନେ ବିଭିନ୍ନ ବ୍ୟବସ୍ଥା ଗ୍ରହଣ କରନ୍ତି ଓ ଉପଯୁକ୍ତ ବାତାବରଣ ସୃଷ୍ଟି ହେଲେ ସେମାନେ ତାହାର ସୁଯୋଗ ନିଅନ୍ତି ।

୧୮୮୪ରେ ରାଜନୈତିକ ସମାନତା ବିଷୟରେ ଉପଯୁକ୍ତ ବାତାବରଣ ସୃଷ୍ଟି ହୋଇଥିଲା । ଲୋକମାନେ ସାମାଜିକ ସ୍ଥିତି, ସାମର୍ଥ୍ୟ କିମ୍ବା ଶିକ୍ଷା କ୍ଷେତ୍ରରେ ସମାନତା କଥା କହୁ ନ ଥିଲେ, ଏପରିକି ମାଲିକ ଓ ଶ୍ରମିକମାନେ ସରକାର ବାଛିବା ପାଇଁ ସମାନ ଭାବେ ହକ୍‌ଦାର ବୋଲି ମଧ୍ୟ କୁହାଯାଉ ନ ଥିଲା । ଜଣେ ସେନାଧ୍ୟକ୍ଷଙ୍କ ସ୍ତ୍ରୀ ଓ ଜଣେ ସାଧାରଣ-ଲୋକର ସ୍ତ୍ରୀ ଦୁଇ ଭଉଣୀ ହୋଇଥିଲେ ସେମାନଙ୍କ ସ୍ୱାମୀମାନଙ୍କୁ ସମାନ ଭାବରେ ମତାଧିକାର ପ୍ରଦାନ କରିବା ପାଇଁ ଯୁକ୍ତି କରାଯାଇଥିଲା । ଅଧିକ ଲୋକଙ୍କର ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟ ବ୍ୟବସ୍ଥା କରିବା ସରକାରଙ୍କ କାର୍ଯ୍ୟ ଥିବା କଥା ବେନଥାମ୍ ଯୁକ୍ତି ଦର୍ଶାଇ ଥିଲେ । ବାସ୍ତବ ରାଜନୀତିରେ ଜଣେ ଦାର୍ଶନିକଙ୍କ ଅପେକ୍ଷା ଜଣେ ସୈନିକଙ୍କ କଥାକୁ ଗୁରୁତ୍ୱ ଦିଆ-ଯାଇଥାଏ । ସେତେବେଳେ ସାଧାରଣ ଲୋକେ ସୁଖବାଦ ଆଦର୍ଶକୁ ଗ୍ରହଣ କରି ନେଇଥିଲେ ।

ଜମିମାଲିକ ପାଇଁ କଣ ହିତକାରକ ତାହା ଜମିମାଲିକଙ୍କୁ ଜଣାଥିଲା ଓ ଶ୍ରମିକ ପାଇଁ କଣ ମଙ୍ଗଳକର ତାହା ଶ୍ରମିକ ହିଁ ଜାଣିଥିଲା । ସେମାନେ ଉଭୟ ଥିଲେ ମଣିଷ; ଭଗବାନଙ୍କ ଦୃଷ୍ଟିରେ ସେମାନେ ସମାନ; ସେମାନଙ୍କ ଦୈହିକ ଓ ଐଶ୍ୱରିକ ଆବଶ୍ୟକତା ସମାନ ଥିଲା । ସୁତରାଂ ରାଜନୈତିକ ସୁବିଧା ସମସ୍ତଙ୍କୁ ଦେବା ପାଇଁ ଯୁକ୍ତି କରାଯାଇଥିଲା । ଫରାସୀ ବିପ୍ଳବ ଫଳରେ କୌଣସି ଏକ ନିର୍ଦ୍ଦିଷ୍ଟ ଶ୍ରେଣୀକୁ ରାଜନୈତିକ ସୁବିଧା ପ୍ରଦାନ କରିବା ଚିନ୍ତାଧାରା ଲୋପ ପାଇଥିଲା । ଅବଶ୍ୟ ଏହି ଶତାବ୍ଦୀର ପରବର୍ତ୍ତୀ ଭାଗରେ ମାର୍କସବାଦ ସୃଷ୍ଟି ହେବା ଫଳରେ ଉପରୋକ୍ତ ଚିନ୍ତାଧାରା ଆହୁରି ସୁଦୃଢ଼ ହୋଇଥିଲା । ସୁତରାଂ ଶ୍ରମିକ ଓ ମାଲିକ ଉଭୟଙ୍କୁ ମତାଧିକାର ପ୍ରଦାନ କରିବା ଏହାର ଏକମାତ୍ର ସମାଧାନ ଥିଲା । ଜମି ମାଲିକ ନିଜ ବିଷୟରେ ବୁଝା ସୁଝା କରିପାରୁଥିବାରୁ ଜମିମାଲିକ ଅପେକ୍ଷା ବସ୍ତି ଅଞ୍ଚଳର ଲୋକଙ୍କୁ ମତାଧିକାର ଦେବା ଅଧିକ ଆବଶ୍ୟକ ବୋଲି ଯୁକ୍ତି କରାଯାଉଥିଲା । ଅବଶ୍ୟ ଏହି ଚିନ୍ତାଧାରା ବିଂଶ ଶତାବ୍ଦୀରେ ପ୍ରକାଶ ପାଇଥିଲା ।

ବସ୍ତି ଅଞ୍ଚଳର ଲୋକ ବା ମୂର୍ଖ ଶ୍ରମିକ ସ୍ୱର୍ଣ୍ଣ ମାନ କମ୍ବା ବୁଅର ଯୁଦ୍ଧର କାରଣ ସମ୍ବନ୍ଧରେ (ଯଦି କିଛି କାରଣ ଥାଏ) କିଛି ଜାଣି ପାରିବ ନାହିଁ ବୋଲି ଯୁକ୍ତି ଦର୍ଶାଯାଇ ଥିଲା । କିନ୍ତୁ ସେମାନଙ୍କୁ ତାହା ଜାଣିବା ପାଇଁ ସୁବିଧା ନ ଥିଲା ବୋଲି ପ୍ରତିଯୁକ୍ତି କରାଯାଇ ଥିଲା । ଅର୍ଥନୀତି ତଥା ଉପନିବେଶ ବ୍ୟାପାରରେ ଅଭିଜ୍ଞ ଥିବା ଦୁଇ ଜଣ ଉତ୍ତମ ଭଦ୍ରବ୍ୟକ୍ତିମାନଙ୍କ ମଧ୍ୟରୁ ଜଣଙ୍କୁ ବାଛିବା ପାଇଁ ସେମାନଙ୍କୁ କୁହାଯାଉ ଥିଲା । ସେ କେବଳ ବ୍ରିଷ୍ଟଲ ନିର୍ବାଚନମଣ୍ଡଳୀର ପ୍ରତିନିଧିତ୍ୱ ନ କରି ସମଗ୍ର ଦେଶର ପ୍ରତିନିଧିତ୍ୱ କରୁଥିଲେ ବୋଲି ଏଡ଼୍‌ମଣ୍ଡ ବର୍କ ଯେଉଁ ନୀତି ଘୋଷଣା କରିଥିଲେ ତାହା ଯଥାର୍ଥ ଥିଲା । ବର୍କ ତାଙ୍କ ସ୍ଥାନ ହରାଇଥିଲେ ସୁଦ୍ଧା ତାଙ୍କ ଚିନ୍ତାଧାରା କ୍ରମଶଃ ଗୃହୀତ ହୋଇଥିଲା । ଦଳୀୟ ସଂଗଠନ ବିକାଶ ଲାଭ କରିବା ପରେ ଏହି ଚିନ୍ତାଧାରା ଦୃଢ଼ୀଭୂତ ହୋଇଥିଲା । ସ୍ୱର୍ଣ୍ଣମାନ ସପକ୍ଷରେ କମ୍ବା ବୁଅର ଯୁଦ୍ଧ ବିପକ୍ଷରେ ମତଦାନ କରିବା ପାଇଁ କୌଣସି ସଦସ୍ୟଙ୍କୁ ବଛାଯାଇ ନ ଥାଏ । ପ୍ରାର୍ଥୀମାନଙ୍କ ମଧ୍ୟରେ ଅଧିକ ଜନପ୍ରିୟ ପ୍ରାର୍ଥୀଙ୍କୁ ବଛାଯାଉ ଥିଲା ଓ ତାଙ୍କୁ ବିଭିନ୍ନ ବିଷୟରେ ନିଷ୍ପତ୍ତି କରିବାକୁ କୁହାଯାଉ ଥିଲା ।

ବାସ୍ତବିକ ଜଣେ ସାଧାରଣ ବ୍ୟକ୍ତିକୁ ଗଣତାନ୍ତ୍ରିକ ସରକାରର ଆଦର୍ଶ ନିର୍ଣ୍ଣୟ କରିବାକୁ କୁହାଯାଉ ନ ଥିଲା । ବଡ଼ଲୋକମାନଙ୍କ ପରି ତାର ମଧ୍ୟ ମତାଧିକାର ଅଛି ବୋଲି ଭାବି ସେ କେବଳ ଆନନ୍ଦିତ ହେଉଥିଲା । ସାବାଳକ ମତଦାନ ସପକ୍ଷରେ ଏହା ଥିଲା ଯଥାର୍ଥ କାରଣ । ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଗୋଟିଏ ଶତାବ୍ଦୀ ବିତି ଯାଇଥିଲା । ବ୍ରିଟିଶ ପ୍ରଥାନୁସାରେ ହଠାତ୍ କୌଣସି ନୀତିକୁ ଗ୍ରହଣ କରି ତାକୁ କାର୍ଯ୍ୟକାରୀ କରିବା ବ୍ରିଟିଶ ପରଂପରା ନୁହେଁ । ପ୍ରଥମେ ସହରାଞ୍ଚଳରେ ବସବାସ କରୁଥିବା ଲୋକମାନଙ୍କୁ, ପରେ ଗ୍ରାମାଞ୍ଚଳରେ ବାସକରୁଥିବା ଲୋକମାନଙ୍କୁ ଓ ତାପରେ ଶ୍ରମିକ ତଥା ସବୁ ସାବାଳକ ପୁରୁଷମାନଙ୍କୁ ମତାଧିକାର ଦିଆଯାଇଥିଲା । ବହୁ ବାଦବିବାଦ ପରେ ବିଂଶ ଶତାବ୍ଦୀରେ ନାରୀମାନଙ୍କୁ ମତାଧିକାର

ଦିଆଯାଇଥିଲା । ଏହି ଅଧିକାର ଦୁଇଟି ପ୍ରକାରରେ ପ୍ରଦାନ କରାଯାଇଥିଲା । ୧୯୧୮ରେ ୩୦ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କା ନାରୀମାନଙ୍କୁ ଓ ୧୯୨୮ ରେ ୨୧ ବର୍ଷରୁ ଊର୍ଦ୍ଧ୍ୱ ବୟସ୍କା ନାରୀମାନଙ୍କୁ ମତାଧିକାର ଦିଆଯାଇଥିଲା । ସେତେବେଳେ ମଧ୍ୟ ରାଜନୈତିକ ସମତା ସମ୍ପୂର୍ଣ୍ଣଭାବେ କାର୍ଯ୍ୟକାରୀ ହୋଇ ନ ଥିଲା । ସେନାଧ୍ୟକ୍ଷଙ୍କ ସ୍ତ୍ରୀ ଓ ସାଧାରଣଲୋକର ସ୍ତ୍ରୀ ଦୁଇଭଉଣୀ ଥିବାରୁ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ଭୋଟ ଦେବା ଅଧିକାର ଦିଆଯିବା ଉଚିତ୍ ଥିଲା; କିନ୍ତୁ ୧୯୪୮ ପର୍ଯ୍ୟନ୍ତ ବିଭିନ୍ନ ନିର୍ବାଚନମଣ୍ଡଳୀରେ କେତେ ଲୋକଙ୍କର ଦୁଇଥର ମତଦେବାର ଅଧିକାର ଥିଲା ।

ପୁନଶ୍ଚ, ପ୍ରତ୍ୟେକ ଭୋଟକୁ ନିଶ୍ଚିତ ଭାବରେ ସମାନ ମୂଲ୍ୟ ପ୍ରଦାନ କରିବା ରାଜନୈତିକ ସମାନତାର ଅର୍ଥ ଥିଲା । ଯଦି ବାଥ୍ ଓ ବ୍ରିଷ୍ଟଲ୍, ଲଙ୍କାସାୟାର ଓ ରୁଟ୍‌ଲାନ୍-ସାୟାର ନିର୍ବାଚନମଣ୍ଡଳୀ ପାଇଁ ଦୁଇଟି ଲେଖାଏଁ ସ୍ଥାନ ନିର୍ଦ୍ଦିଷ୍ଟ ହୋଇଥାଏ, ତେବେ ଭୋଟଗୁଡ଼ିକର ମୂଲ୍ୟ ସମାନ ବୋଲି କୁହାଯାଇ ପାରେ । ବାଥ୍ ନିର୍ବାଚନ ମଣ୍ଡଳୀରେ ନିର୍ବାଚକମାନଙ୍କ ସଂଖ୍ୟା ବ୍ରିଷ୍ଟଲ ନିର୍ବାଚନମଣ୍ଡଳୀର ନିର୍ବାଚକମାନଙ୍କ ସଂଖ୍ୟାର ଚାରିଗୁଣ ହୋଇ ଥିଲେ ବାଥ୍‌ର ଗୋଟିଏ ଭୋଟ୍ ବ୍ରିଷ୍ଟଲର ଗୋଟିଏ ଭୋଟଠାରୁ ଚାରିଗୁଣ ବେଶୀ । ସୁତରାଂ ସାଧାରଣ ଜନତାର ପ୍ରତିନିଧିତ୍ୱ କରିବା ଚିନ୍ତାଧାରା ଏଠାରେ ସମ୍ଭବପର ହୋଇ ନ ଥାଏ । ବଡ଼ ବଡ଼ କାଉଣ୍ଟି ଓ ବରୋଗୁଡ଼ିକୁ ଗୋଟିଏ ଲେଖାଏଁ ନିର୍ବାଚନ ମଣ୍ଡଳୀରେ ବିଭକ୍ତ କରିବାକୁ ପଡ଼ିଥିଲା । ୧୮୮୫ରୁ ଏହି କାର୍ଯ୍ୟ ଆରମ୍ଭ ହୋଇଥିଲା, କିନ୍ତୁ ୧୯୪୮ ପର୍ଯ୍ୟନ୍ତ ଏହା ସମ୍ପୂର୍ଣ୍ଣ ହୋଇ ନ ଥିଲା । ସେହିଦିନ ଠାରୁ "ଜଣେ ପୁରୁଷ ( ବା ସ୍ତ୍ରୀ ), ଏକ ଭୋଟ ଓ ଏକ ମୂଲ୍ୟ" ନୀତି ଅନୁସରଣ କରି ହୋଇ ଆସୁଛି ( ଅବଶ୍ୟ ଏହା ସମ୍ପୂର୍ଣ୍ଣ ଭାବରେ ନୁହେଁ ) ।

ଜନ୍ ଷ୍ଟୁଆର୍ଟ ମିଲ ୧୮୬୧ରେ "ପ୍ରତିନିଧିମୂଳକ ଶାସନ" ( Representative Government ) ନାମକ ଗୋଟିଏ ପୁସ୍ତକ ପ୍ରକାଶ କରିଥିଲେ । ଏହି ପୁସ୍ତକରେ ପ୍ରତିନିଧିମୂଳକ ଗଣତନ୍ତ୍ର ସମ୍ବନ୍ଧରେ ବିସ୍ତୃତ ବ୍ୟାଖ୍ୟା କରାଯାଇଥିଲେ ମଧ୍ୟ ଦଳ ସମ୍ବନ୍ଧରେ ଏଥିରେ କିଛି କୁହାଯାଇ ନ ଥିଲା । ମିଲ୍‌ଙ୍କଠାରୁ ରାଜନୀତି ବିଷୟରେ ସୌଖିନ କଳ୍ପନା-ଜଳ୍ପନା ପ୍ରକାଶ ପାଇବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇ ପାରୁ ନ ଥିଲା । ମତାଧିକାର ସମ୍ପ୍ରସାରଣ ଫଳରେ ଦଳୀୟ ବ୍ୟବସ୍ଥା ଜନ୍ମଗ୍ରହଣ କରିଥିଲା ଏବଂ ମିଲ୍ ଏ ବିଷୟରେ ବିଶେଷ ଅବଗତ ହୋଇ ନ ଥିଲେ । ଦୃଢ଼ ବାସ୍ତବବାଦୀ ଡିସ୍‌ରେଲି ଯାହା ସହଜରେ ଦେଖି ପାରିଥିଲେ, ତାହା ଦେଖିବା ପାଇଁ ମିଲଙ୍କର ଦୂରଦୃଷ୍ଟି ନ ଥିଲା । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ପ୍ରାୟଶଃ ସମାନ ଆକାରର କ୍ଷୁଦ୍ର ନିର୍ବାଚନମଣ୍ଡଳୀ ସୃଷ୍ଟି ହେବା ଫଳରେ ଜଣେ ପ୍ରାର୍ଥୀ ପ୍ରଭାବଶାଳୀ ଗୋଷ୍ଠୀର ସମର୍ଥନ ଲାଭ କରି ପାରିଲେ ନିର୍ବାଚନରେ ବିଜୟ ହାସଲ କରିବେ ବୋଲି ଆଶା କରୁଥିଲେ । ଗ୍ରାମ୍ୟ ସମାଜ ସ୍ଥାୟୀ ଓ ସାମାଜିକ ଶ୍ରେଣୀ ବିଭାଗ ଉପରେ

ପ୍ରତିଷ୍ଠିତ ହୋଇ ଥିବାରୁ ସେଠାକାର ଅଧିକାଂଶ ନିର୍ବାଚକ ବଡ଼ ବଡ଼ ଜମିଦାରମାନଙ୍କ ଯଥା :—ଡ୍ୟୁକ୍ ଅଫ ବେଡଫୋର୍ଡ଼, ଅର୍ଲ ଅଫ ଡର୍‌ବୀ କିମ୍ବା ଅର୍ଲ ଅଫ ଲିନ୍‌ସ ଡେଲଙ୍କ କିମ୍ବା ତାଙ୍କ ଦ୍ୱାରା ମନୋନୀତ ବ୍ୟକ୍ତିଙ୍କୁ ସମର୍ଥନ କରୁଥିଲେ । କେତେକ ନିର୍ବାଚନ ମଣ୍ଡଳୀରେ ଏହି ଭୂମିମାଲିକ କିମ୍ବା ଅନ୍ୟ ଭୂମିମାଲିକଙ୍କର "ପ୍ରଭାବ" ଥିଲି ବୋଲି ସଂସଦୀୟ ପୁସ୍ତିକାରେ ବର୍ଣ୍ଣନା କରାଯାଇ ଅଛି । ଅନ୍ୟାନ୍ୟ ନିର୍ବାଚନମଣ୍ଡଳୀମାନଙ୍କରେ ନିର୍ବାଚକମାନଙ୍କ ସଂଖ୍ୟା ବେଶୀ ଥିଲି ବୋଲି ସେଠାରେ ସେମାନଙ୍କର ବିଶେଷ "ପ୍ରଭାବ" ନ ଥିଲି । ଡିକେନ୍‌ସ ତାଙ୍କ ଗଳ୍ପରେ ଇଟାନ ୱିଲ୍ ନିର୍ବାଚନ ସମ୍ବନ୍ଧରେ ଯେଉଁ ବ୍ୟଙ୍ଗ ମନ୍ତବ୍ୟ ପ୍ରକାଶ କରିଥିଲେ, ସେହିପରି ଦୁର୍ନୀତିଗ୍ରସ୍ତ ପ୍ରଣାଳୀ ପ୍ରଚଳିତ ଥିଲି । ନିର୍ବାଚକ-ମାନଙ୍କ ସଂଖ୍ୟା ବୃଦ୍ଧି ପାଇବା ଫଳରେ "ପ୍ରଭାବ" ହ୍ରାସ ପାଇଥିଲି ଏବଂ ଦୁର୍ନୀତି ଅଧିକ କଷ୍ଟକର ଓ ବ୍ୟୟସାପେକ୍ଷ ହୋଇଗଲି । ଅଧିକାଂଶ ସଂସଦୀୟ ପ୍ରାର୍ଥୀମାନେ ଅପେକ୍ଷାକୃତ ଅଜଣା ବ୍ୟକ୍ତି ଥିଲେ ଏବଂ ଗୋଟିଏ ବଡ଼ ନିର୍ବାଚନ ମଣ୍ଡଳୀରେ ମୁକ୍ତ ଓ ସ୍ୱାଧୀନ ନିର୍ବାଚକ-ମାନଙ୍କୁ ନିବେଦନ କରିବା ପାଇଁ ସେମାନେ କେଉଁ ପନ୍ଥାର ଆଶ୍ରୟ ନେବେ ତାହାହିଁ ପ୍ରଶ୍ନ ଥିଲି । ମାଞ୍ଚେଷ୍ଟର ଅଧିବାସୀମାନଙ୍କ ଉପରେ ଅର୍ଲ ଅଫ୍ ଡର୍ବୀଙ୍କର "ପ୍ରଭାବ" ବିସ୍ତାର ଲାଭ କରି ନ ଥିଲି । କେତେକ କଡ଼ା ଆଇନ ଦ୍ୱାରା ଲାଞ୍ଚ ଓ ଦୁର୍ନୀତିର ମୁକାବିଲା କରାଯାଇ ଥିଲେ ମଧ୍ୟ ସଂସଦୀୟ ନିର୍ବାଚନ ଏତେ ବ୍ୟୟ ସାପେକ୍ଷ ଥିଲି ଯେ, ଜଣେ ବ୍ୟକ୍ତି ପକ୍ଷରେ ଏହା ପୂରଣ କରିବା ସହଜ ସାଧ୍ୟ ନ ଥିଲି । ଜଣେ ଭଲ ଦଳୀୟ ଲୋକ ହୋଇଥିଲେ ଓ ସେ ଡିସରେଲି କିମ୍ବା ଗ୍ଲାଡଷ୍ଟୋନ୍‌ଙ୍କୁ ସମର୍ଥନ କରୁଥିଲେ ସେ କେବଳ ବିରାଟ ନିର୍ବଚନମଣ୍ଡଳୀର ବିଭିନ୍ନ ନିର୍ବାଚକମାନଙ୍କୁ ପ୍ରବର୍ତ୍ତାଇବାକୁ କ୍ଷମ ଥିଲେ ।

ଅଷ୍ଟାଦଶ ଶତାବ୍ଦୀରେ ଦଳ ଥିଲି, କିନ୍ତୁ ସଂସଦରେ ରାଜନୈତିକ ବନ୍ଧୁମାନଙ୍କ ମଧ୍ୟରେ ଏହା ବିଭିନ୍ନ ଗୋଷ୍ଠୀ ଆକାରରେ ଥିଲି । ବିରାଟ ହ୍ୱିଗଲର୍ଡଙ୍କ "ପ୍ରଭାବ" ଫଳରେ ନିର୍ବାଚିତ ହେଉଥିବା ପ୍ରାର୍ଥୀମାନେ ହ୍ୱିଗ୍ ଥିଲେ । ଅବଶ୍ୟ ଏହି ସମ୍ପର୍କ ଅନେକାଂଶରେ ବ୍ୟକ୍ତିଗତ ଥିଲି । ସମ୍ପୃକ୍ତ ବିରାଟ ଲର୍ଡ ଗାର୍ଟର ନ ପାଇଲେ କିମ୍ବା ତାଙ୍କର କନିଷ୍ଠ ପୁତ୍ର ନିଜର ଯୋଗ୍ୟତା ଅନୁସାରେ ଉପନିବେଶରେ ନିମୁକ୍ତ ନ ପାଇଲେ ହ୍ୱିଗମାନଙ୍କ ମଧ୍ୟରେ ମତଭେଦ ଦେଖା ଦେଉଥିଲି ଓ ଟୋରିମାନଙ୍କର ବିଜୟର ସମ୍ଭାବନା ବୃଦ୍ଧି ପାଉଥିଲି । ଦଳର ସଭ୍ୟ-ମାନଙ୍କୁ "ଚଳାଇନେବା" ଓ ସେମାନଙ୍କୁ ସମର୍ଥନ କରି ସଂଖ୍ୟା ଗରିଷ୍ଠତା ହାସଲ କରିବା କଥା ପ୍ରଥମେ ସାର ରବର୍ଟ ପୀଲ ୧୮୩୨ ପରେ ଅନୁଭବ କରିଥିଲେ । ସେ ନିଜେ ୧୮୩୪ ରେ ଟାମ୍‌ବର୍ଥଠାରେ ନିର୍ବାଚକ-ମାନଙ୍କୁ ଦଳୀୟ ନୀତି ଉପରେ ନିବେଦନ କରିଥିଲେ । ସର୍ବୋପରି ସେ ସ୍ଥାନୀୟ ସଂଗଠନ ପ୍ରତିଷ୍ଠା କରିବା ଆରମ୍ଭ କରିଥିଲେ । ସେତେବେଳେ ନିର୍ବାଚକମାନଙ୍କ ନାମ ପଞ୍ଜୀଭୁକ୍ତ କରିବା ପାଇଁ ସ୍ୱୟଂଗୃହୀତ ବ୍ୟବସ୍ଥା ନ ଥିଲି । ଏଥିପାଇଁ ଯୋଗ୍ୟତା ଥିବା ସଙ୍ଗେ ସଙ୍ଗେ ଦାବୀ ମଧ୍ୟ କରିବାକୁ ପଡ଼ୁଥିଲି । ଅତଏବ ଜାତିଦଳ ସଂଖ୍ୟା ଗରିଷ୍ଠତା ଲାଭ କରିବାକୁ ଚାହିଁଲେ ଜାତି ସମର୍ଥକମାନଙ୍କର ନାମ ବୁଥ୍‌କୁ ନିର୍ବାଚନ

ତାଲିକାରେ ଲେଖାଇବାକୁ ପଡ଼ୁଥିଲା । ବିଭିନ୍ନ ନିର୍ବାଚନ ମଣ୍ଡଳୀମାନଙ୍କରେ ଏହା କରିବାକୁ ପଡ଼ୁଥିଲା । ୧୮୬୮ରେ ହ୍ୱିଗ୍‌ମାନଙ୍କୁ ବିରୋଧ କରିବା ପାଇଁ ଡିସରେଲି ସମର୍ଥ ହୋଇ ନ ଥିଲେ । ସେତେବେଳେ ସହରାଞ୍ଚଳରେ ଦୃଢ଼ ସ୍ଥାନୀୟ ସଂଗଠନ ପ୍ରତିଷ୍ଠା କରିବାର ଆବଶ୍ୟକତା ସେ ଅନୁଭବ କରିଥିଲେ । ୧୮୬୭ର ସଂସ୍କାର ଆଇନ ଫଳରେ ଗୃହ ମାଲିକମାନଙ୍କୁ ମତଦାନ ଅଧିକାର ଦିଆଯାଇ ଥିଲା । ଯାହାହେଉ ଜୋସେଫ୍ ଚେମ୍ବରଲେନ ବରମିଙ୍ଗହାମ୍‌ରେ ଦୃଢ଼ଦଳୀୟ ସଂଗଠନ ପ୍ରତିଷ୍ଠା କରିପାରି ଥିଲେ । ରାଜନୈତିକ ଦଳର ଏହି କ୍ଷୁଦ୍ରଗୋଷ୍ଠୀ ପ୍ରଥା ବିରୁଦ୍ଧରେ ସେତେବେଳେ ସମାଲୋଚନା ହୋଇଥିଲା । ଉଦାରଦଳ ସମ୍ପୂର୍ଣ୍ଣ ଭାବରେ ଓ ଟୋରି ଦଳ ମଧ୍ୟ ଆଂଶିକ ଭାବରେ ଏହି ପ୍ରଥାକୁ ଅନୁକରଣ କରି ଚେମ୍ବରଲେନଙ୍କ ପ୍ରତି କୃତଜ୍ଞତା ଜ୍ଞାପନ କରିଥିଲେ ।

ଉପରୋକ୍ତ ବ୍ୟବସ୍ଥା ଗୁଡ଼ିକ ଫଳରେ ଗଣତାନ୍ତ୍ରିକ ନୀତିରେ ପରିବର୍ତ୍ତନ ଘଟିଥିଲା । ଓ୍ୱେଷ୍ଟବର୍ମିଂହାମ୍‌ର ନିର୍ବାଚକମାନେ ସଂସଦରେ ସେମାନଙ୍କ ମତ ଓ ସ୍ୱାର୍ଥର ପ୍ରତିନିଧିତ୍ୱ କରିବା ପାଇଁ କିଏ ସବୁଠାରୁ ଯୋଗ୍ୟ ପ୍ରାର୍ଥୀ ତାହା ଦେଖୁ ନ ଥିଲେ । ଗ୍ଲାଡଷ୍ଟୋନଙ୍କୁ ସମର୍ଥନ କରିବା ପାଇଁ ଏକ ଉଦାରବାଦୀ ସଂଗଠନ ଗଠିତ ହୋଇଥିଲା । ସେହିପରି ଡିସରେଲିଙ୍କୁ ସମର୍ଥନ କରିବା ପାଇଁ ଗୋଟିଏ ଟୋରି ସଂଗଠନ ଗଢ଼ା ଯାଇଥିଲା । ପ୍ରାର୍ଥୀ "ଡୋ" କିମ୍ବା "ରୋ" ଙ୍କ ସମ୍ବନ୍ଧରେ ଖୁବ୍ କ୍ୱଚିତ୍ ନିର୍ବାଚକ କିଛି ଜାଣିଥିଲେ, କିନ୍ତୁ ସମସ୍ତେ ଗ୍ଲାଡ଼ଷ୍ଟୋନ ଓ ଡିସରେଲିଙ୍କ ବିଷୟରେ ଜାଣିଥିଲେ । "ଡୋ" ଗ୍ଲାଡ଼ଷ୍ଟୋନଙ୍କୁ ଓ "ରୋ" ଡିସରେଲିଙ୍କୁ ସମର୍ଥନ କରୁଥିଲେ । ସାଧାରଣ ନିର୍ବାଚକ କାହାକୁ ଭୋଟ ଦେବ ତାହା ସେ ଜାଣି ପାରୁଥିଲା ।

"ବ୍ଲାଙ୍କ" ନାମଧେୟ ଜଣେ ପ୍ରାର୍ଥୀ କୌଣସି ଦଳୀୟ ସଙ୍କେତରେ କିମ୍ବା ନିଜ ସଙ୍କେତରେ ପ୍ରତିଯୋଗିତା କରି ପାରେ । ଟୋରିଦଳ ଓ ଉଦାରଦଳର ସଙ୍କେତ ତୁଳନାରେ ବ୍ଲାଙ୍କଙ୍କ ସଙ୍କେତକୁ ଖୁବ୍ କମ ଲୋକ ଜାଣି ଥାଆନ୍ତି । ସମଗ୍ର ଦେଶରେ ଉଦାରବାଦୀ ଓ ଟୋରି-ମାନଙ୍କ ମଧ୍ୟରେ ପ୍ରତିଯୋଗିତା ହୋଇ ଥାଏ । କ୍ୱଚିତ୍ ଜଣେ ସ୍ୱାଧୀନ ପ୍ରାର୍ଥୀ କିମ୍ବା ଏକ କ୍ଷୁଦ୍ର ଦଳର ପ୍ରାର୍ଥୀ ପ୍ରତିଦ୍ୱନ୍ଦିତା କରୁ ଥିବାର ଦେଖାଯାଇ ଥାଏ । ଏହି ଚିନ୍ତାଧାରାର ବିକାଶ ହେତୁ ବର୍କଙ୍କ ନୀତି କାର୍ଯ୍ୟକାରୀ ହୋଇଥିଲା । ଯଦି "ଡୋ" ନିର୍ବାଚିତ ହେଉଥିଲେ ସେ ପଶ୍ଚିମ ବର୍ମିଂହାମ୍‌ର ଜନସାଧାରଣଙ୍କ ସ୍ୱାର୍ଥକୁ ରକ୍ଷା ନ କରି, ଉଦାରବାଦୀ ସଂସଦୀୟ ଦଳର ନୀତିକୁ ସମର୍ଥନ କରୁଥିଲେ । ସ୍ୱାଭାବିକ ଭାବରେ ସେ ନିଜ ନିର୍ବାଚକ-ମାନଙ୍କର ସ୍ୱାର୍ଥ ଓ ଧାରଣା-ଗୁଡ଼ିକୁ ବିଚାରକୁ ନେଉ ଥିଲେ ସତ୍ୟ କିନ୍ତୁ ଏହା ଦ୍ୱାରା ସେ ଉଦାର ଦଳର ସ୍ୱାର୍ଥ ଓ ଧାରଣାକୁ ପ୍ରତିହତ କରୁ ନ ଥିଲେ । ଅନ୍ୟାନ୍ୟ ନିର୍ବାଚନ ମଣ୍ଡଳୀରେ କୌଣସି ସୁଖ ସୁବିଧା ବ୍ୟବସ୍ଥା କରି ନ ଗଲେ ପଶ୍ଚିମ ବର୍ମିଂହାମ ନିର୍ବାଚନ-ମଣ୍ଡଳୀରେ କୌଣସି ସୁଖ ସୁବିଧା ବ୍ୟବସ୍ଥା କରିବା ସମ୍ଭବପର ନ ଥିଲା । ଦଳଗୁଡ଼ିକ ଜାତୀୟ ସଂଗଠନ ହୋଇ-ଥିବାରୁ ଜାତୀୟ ସ୍ୱାର୍ଥ ହିଁ ପ୍ରାଧାନ୍ୟ ଲଭ କରୁଥିଲା । କୌଣସି ଗୋଷ୍ଠୀ ବଡ଼ ଥିଲେ ସେହି

ଗୋଷ୍ଠୀର ସ୍ୱାର୍ଥକୁ ସମର୍ଥନ କରିବା ସମ୍ଭବପର ଥିଲା । ଅଧିକାଂଶ ନନ୍‌କନଫର୍ମିଷ୍ଟମାନେ ଉଦାରଦଳକୁ ସମର୍ଥନ କରୁଥିବାରୁ ଉକ୍ତ ଦଳ ସ୍ୱାଭାବିକ ଭାବରେ ନନ୍‌କନଫର୍ମିଷ୍ଟମାନଙ୍କ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ହେଉଥିଲା । ମଦ ବିକ୍ରୀକୁ ନିୟନ୍ତ୍ରଣ କରିବା ପାଇଁ ନନ୍‌କନଫର୍ମିଷ୍ଟ-ମାନଙ୍କ ନୀତିକୁ ଅବାଧ ବ୍ୟବସାୟରେ ବିଶ୍ୱାସ କରୁଥିବା ଜାତିଦଳ ହୃଏତ ସମର୍ଥନ କରି ପାରୁ ନ ଥିଲା । ଅବଶ୍ୟ ସୀମିତ ଭାବରେ ଗୋଷ୍ଠୀଗତ ସ୍ୱାର୍ଥ ରକ୍ଷା କରାଯାଉ ଥିଲା । ଗ୍ରାମାଞ୍ଚଳର ଅଧିକାଂଶ ସଭ୍ୟ ଅମଦାନୀ କରାଯାଉ ଥିବା ଶସ୍ୟ ଉପରେ କର ନିର୍ଦ୍ଧାରଣ କରିବା ପାଇଁ ଚାହୁଁ ଥିଲେ । ଏହାଦ୍ୱାରା ବ୍ରିଟେନ୍‌ରେ କୃଷି ବ୍ୟବସ୍ଥାର ଉନ୍ନତି ହେବ ବୋଲି କେତେକ କହୁଥିଲା ବେଳେ ଅନ୍ୟ କେତେକଙ୍କ ମତରେ ଏହା ଦ୍ୱାରା ଭୂମିମାଲିକ-ମାନଙ୍କ ଆୟ ବୃଦ୍ଧି ହେବ ବୋଲି ଯୁକ୍ତି ଦର୍ଶାଯାଉ ଥିଲା । ସହରାଞ୍ଚଳର ଶ୍ରମିକମାନଙ୍କ ସମର୍ଥନ ଲାଭ ନ କଲେ ଜାତିଦଳ ଏହି ସମ୍ବନ୍ଧରେ କୌଣସି ନୀତି ଗ୍ରହଣ କରିବାକୁ କ୍ଷମ ନ ଥିଲା ।

ଏହି ଶତାବ୍ଦୀର ଅଗ୍ରଗତି ସଙ୍ଗେ ସଙ୍ଗେ ଉଦାରଦଳ ସ୍ଥାନରେ ଶ୍ରମିକଦଳ ସୃଷ୍ଟି ହୋଇ ଏହା ଜାତିଦଳର ମୁଖ୍ୟ ବିରୋଧୀ ଦଳ ହୋଇ ଥିଲା । ଏହି ବିବର୍ତ୍ତନ ସତ୍ତ୍ୱେ ସେହି ପୁରୁଣା ନୀତି ଚାଲିଛି । ନିର୍ବାଚକମାନେ ଜାତି ସରକାର କିମ୍ବା ଶ୍ରମିକ ସରକାର ଚାହାଁନ୍ତି ବୋଲି ପ୍ରଶ୍ନ ପଚରା ଯାଇଥାଏ । ଏହି ବ୍ୟବସ୍ଥା ଏତେ ସରଳ ହୋଇଯାଇ ଥିଲା ଯେ, ୧୮୬୮ରେ ଉଦାରବାଦୀମାନେ ସଂଖ୍ୟାଗରିଷ୍ଠତା ହାସଲ କରିବା ଫଳରେ ସଂସଦରେ ପରାଜୟକୁ ଅପେକ୍ଷା ନ କରି ଡିସରେଲି ସଙ୍ଗେ ସଙ୍ଗେ ଇସ୍ତଫା ଦେଇଥିଲେ । ସେହି-ଦିନଠାରୁ ଏହି ପରମ୍ପରା ଅନୁସୃତ ହୋଇ ଆସୁଅଛି ।

କମନ୍‌ସ ସଭାରେ ଦଳୀୟ ବିବାଦ ପ୍ରାଧାନ୍ୟ ଲାଭ କରି ଥାଏ । ଏହି ସଭାରେ କ୍ଷମତାରେ ଥିବା ଓ କ୍ଷମତାରେ ନ ଥିବା—ଏହି ପରି ଦୁଇଦଳର ଲୋକ ଥାଆନ୍ତି । ବାଚସ୍ପତିଙ୍କ ଦକ୍ଷିଣରେ ସରକାରୀ ଦଳ ଓ ବାମରେ ବିରୋଧୀଦଳ ଆସନ ଗ୍ରହଣ କରିଥାଆନ୍ତି । ଦଳର ନେତାମାନେ ଆଗ ଧାଡ଼ିରେ ବସି ଥାଆନ୍ତି ଓ ସେମାନଙ୍କ ମଧ୍ୟରେ କ୍ଲର୍କମାନଙ୍କ ଟେବୁଲ ରହିଥାଏ । କୌଣସି ସଭ୍ୟ ଦଳ ପରିବର୍ତ୍ତନ କଲେ ତାହାକୁ "ଦଳବଦଳ" କୁହା ଯାଇଥାଏ । ଏହି ଦୁଇଦଳ ମଧ୍ୟରୁ କାହାକୁ ସମର୍ଥନ କରୁ ନ ଥିବା କ୍ଷୁଦ୍ରଗୋଷ୍ଠୀ ବା "ସ୍ୱାଧୀନ" ସଭ୍ୟ ଥାଇ ପାରନ୍ତି । କିନ୍ତୁ ଉଲ୍ଲିଖିତ ବର୍ଣ୍ଣନା ଅନୁସାରେ ନିର୍ବାଚକମାନେ ଦୁଇଟି ଦଳ ମଧ୍ୟରୁ ଗୋଟିଏ ଦଳର ପ୍ରାର୍ଥୀଙ୍କୁ ବାଛି ଥାଆନ୍ତି । କେଉଁ ଦଳ ସରକାର ଗଠନ କରିବ ତାହା ନିର୍ଣ୍ଣୟ କରିବା ନିଜର କର୍ତ୍ତବ୍ୟ ବୋଲି ନିର୍ବାଚକ ଜାଣିଥାଏ ଓ ତଦନୁସାରେ ସେ ଯେ କୌଣସି ଗୋଟିଏ ଦଳ ସପକ୍ଷରେ ମତ ଦେଇଥାଏ ।

ସଂସଦରେ ସରକାର ରହିବା କଥା ବ୍ରିଟିଶ୍ ସମ୍ବିଧାନର ଏକ ବିଶେଷତ୍ୱ । ଏହି ନୀତି ବ୍ରିଟେନ୍‌ରେ ହିଁ ଉଦ୍ଭାବିତ ହୋଇଥିଲା । ଫରାସୀ ଲୋକମାନେ ଅଷ୍ଟାଦଶ ଶତାବ୍ଦୀରେ ବ୍ରିଟିଶ୍ ସମ୍ବିଧାନ ଅଧ୍ୟୟନ କଲାବେଳେ ଉପରୋକ୍ତ ବିଶେଷତ୍ୱ ପ୍ରତି ଗୁରୁତ୍ୱ ଦେଇ ନ ଥିଲେ ।

ଅପରପକ୍ଷରେ ସେତେବେଳେ ରାଜା ହିଁ ସରକାରର ପ୍ରକୃତ ମୁଖ୍ୟ ଥିଲେ ଓ ସେ ନିଜ ଇଚ୍ଛାନୁସାରେ ମନ୍ତ୍ରୀମାନଙ୍କୁ ବାଛୁଥିଲେ । ସେ କିମ୍ବା ତାଙ୍କ ମନ୍ତ୍ରୀମାନେ କମନ୍ସସଭାରେ ଅର୍ଥ ପ୍ରସ୍ତାବ ଗୁଡ଼ିକୁ ଗୃହୀତ କରାଇବା ପାଇଁ ସଂଖ୍ୟା ଗରିଷ୍ଠ ସଭ୍ୟଙ୍କ ସମର୍ଥନ ଲୋଡ଼ୁଥିଲେ । ସେତେବେଳେ କମନ୍ସସଭାରେ ଏପରି କେତେକ ସଭ୍ୟ ଥିଲେ । ଯେଉଁମାନେ ସର୍ବଦା ରାଜାଙ୍କୁ ସମର୍ଥନ କରୁଥିଲେ । ଏତଦ୍ ବ୍ୟତୀତ କମନ୍ସ ସଭାର ସଭ୍ୟମାନଙ୍କ ଉପରେ କେତେ ଜଣ ଲର୍ଡ଼ଙ୍କର ମଧ୍ୟ ପ୍ରଭାବ ଥିଲା । ଫଳରେ ରାଜା ସାଧାରଣତଃ ସଂଖ୍ୟା ଗରିଷ୍ଠ ସଭ୍ୟଙ୍କ ସମର୍ଥନ ପାଉଥିଲେ । ଏପରିକି ୧୭୮୩ରେ ରାଜା ତୃତୀୟ ଜର୍ଜ ଫକ୍ସ ଓ ନର୍ଥଙ୍କ ମିଳିତ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିପାରିଥିଲେ ଓ ଉଇଲିୟମ ପିଟ୍ ନାମକ ଜଣେ ଯୁବକଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ଆହ୍ୱାନ କରିଥିଲେ । ସେତେବେଳେ ନିତାନ୍ତ ପକ୍ଷେ ମନ୍ତ୍ରିମଣ୍ଡଳ ଦଳୀୟ ନ ଥିଲା । ମନ୍ତ୍ରିମାନେ ସାଧାରଣତଃ ସେମାନଙ୍କ ରାଜନୈତିକ "ବନ୍ଧୁମାନଙ୍କ" ସହିତ କାର୍ଯ୍ୟ କରିବା ପାଇଁ ଚାହୁଁଥିଲେ । ଜଣେ ବ୍ୟକ୍ତି କିମ୍ବା ଗୋଟିଏ ଗୋଷ୍ଠୀ ଗୋଟିଏ ମନ୍ତ୍ରିମଣ୍ଡଳ ପରେ ଆଉ ଗୋଟିଏ ମନ୍ତ୍ରିମଣ୍ଡଳରେ ସ୍ଥାନ ପାଇବା ଅସମ୍ଭବ ନ ଥିଲା । ରାଜାଙ୍କ ସରକାର ସଂସଦକୁ ନିୟନ୍ତ୍ରଣ କରିବା ବ୍ୟବସ୍ଥା ଫରାସୀ ସମାଲୋଚକମାନଙ୍କୁ ଅଭିଭୂତ କରି ନ ଥିଲା; ସେମାନଙ୍କୁ ସଂସଦର ସ୍ୱାଧୀନ ବ୍ୟବସ୍ଥା, ବରଂ ଅଭିଭୂତ କରିଥିଲା । ଫରାସୀ ବିପ୍ଳବ ପୂର୍ବରୁ ଇଂରେଜମାନଙ୍କ ସ୍ୱାଧୀନତା ଏକ ଉଲ୍ଲେଖ ଯୋଗ୍ୟ ବିଷୟ ଥିଲା । ଫରାସୀ ଲେଖକମାନଙ୍କ ମତରେ ଇଂରେଜମାନଙ୍କ ସ୍ୱାଧୀନତା ନିମ୍ନଲିଖିତ ବ୍ୟବସ୍ଥା ଯୋଗୁଁ ସମ୍ଭବପର ହୋଇଥିଲା । ରାଜା ଶାସନ କରୁଥିଲେ ବି ସେ ଆଇନ ଅନୁସାରେ ଶାସନ କରୁଥିଲେ । ସ୍ୱାଧୀନ କ୍ଷମତା ଉପଭୋଗ କରୁଥିବା ସଂସଦରେ ହିଁ ଆଇନର ପରିବର୍ତ୍ତନ ହେଉଥିଲା । ଆଇନର ବ୍ୟାଖ୍ୟା ବିଚାରପତିମାନଙ୍କ ଉପରେ ଛାଡ଼ି ଦିଆଯାଉ ଥିଲା । ରାଜା ବିଚାରପତିମାନଙ୍କୁ ନିଯୁକ୍ତ କରୁଥିଲେ ମଧ୍ୟ ଆକ୍ଟ ଅଫ୍ ସେଟଲମେଣ୍ଟ ବ୍ୟବସ୍ଥା ଅନୁଯାୟୀ ସେମାନଙ୍କର ସ୍ୱାଧୀନସ୍ଥିତି ଅକ୍ଷୁଣ୍ଣ ଥିଲା । ଇଉରୋପର ଅଧିକାଂଶ ସ୍ଥାନରେ ସମ୍ରାଟଙ୍କଠାରେ କ୍ଷମତା କେନ୍ଦ୍ରୀଭୂତ ହୋଇଥିବାରୁ ସ୍ୱେଚ୍ଛାଚାରତନ୍ତ୍ର ପ୍ରତିଷ୍ଠା ହୋଇଥିଲା କିନ୍ତୁ ବ୍ରିଟେନ୍‌ରେ ତିନୋଟି ସଂସ୍ଥା ମଧ୍ୟରେ କ୍ଷମତା ପୃଥକ୍‌କରଣ ହୋଇଥିବାରୁ ସୁପ୍ରସିଦ୍ଧ ବ୍ରିଟିଶ୍ ସ୍ୱାଧୀନତା ସମ୍ଭବ ହୋଇଥିଲା ।

ଆମେରିକାର ଉପନିବେଶବାସୀମାନେ ଉପରୋକ୍ତ ଯୁକ୍ତି ଦ୍ୱାରା ପ୍ରଭାବିତ ହୋଇଥିଲେ । ବାସ୍ତବିକ ସେମାନେ ସମ୍ରାଟଙ୍କ ବିରୁଦ୍ଧରେ ବିଦ୍ରୋହ କରିବାକୁ ଚାହିଁଥିଲେ । ସେତେବେଳେ ସମ୍ରାଟ ସଂସଦ କାର୍ଯ୍ୟରେ ବହୁତ ହସ୍ତକ୍ଷେପ କରୁଥିଲେ । ସଂସଦର ସଭ୍ୟମାନଙ୍କୁ ସମ୍ରାଟ ବିଭିନ୍ନ ସରକାରୀ କ୍ଷେତ୍ରରେ ନିଯୁକ୍ତି ଦେବା ଦ୍ୱାରା ସଂସଦର ସ୍ୱାଧୀନତା ବିପନ୍ନ ହୋଇଥିଲା । ଆମେରିକାର ତେରଗୋଟି ସ୍ୱାଧୀନ ଉପନିବେଶ ମିଳିତ ହେବା ଫଳରେ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ପ୍ରଣୀତ ହୋଇଥିଲା । କେବଳ ରାଷ୍ଟ୍ରସଂଘୀୟ ବ୍ୟବସ୍ଥାକୁ ବାଦଦେଲେ ଏହି ସମ୍ବିଧାନର ଅନ୍ୟାନ୍ୟ ବ୍ୟବସ୍ଥା ଗୁଡ଼ିକ ଆମେରିକାର ଲୋକମାନେ ବ୍ରିଟିଶ୍ ସମ୍ବିଧାନରୁ

ଭୁକ୍ତିଥିବା ମାଡ ଉପରେ ପର୍ଯ୍ୟବସିତ ଥିଲା । ରାଜା ତୃତୀୟ ଜର୍ଜଙ୍କ ସ୍ଥାନରେ ଜଣେ ନିର୍ବାଚିତ ସଭାପତି ରହିଲେ । ଲୋକଙ୍କ ଦ୍ୱାରା ନିର୍ବାଚିତ ଦୁଇଗୋଟି ସଭାକୁ ନେଇ କଂଗ୍ରେସ ଗଠିତ ହୋଇଥିଲା । ଉଚ୍ଚତମ ନ୍ୟାୟାଳୟର ବିଚାରପତିମାନଙ୍କୁ ସ୍ୱାଧୀନ କରାଯାଇଥିଲା । ରାଷ୍ଟ୍ରପତିଙ୍କ ମନ୍ତ୍ରୀମାନଙ୍କୁ (କିମ୍ବା ସେକ୍ରେଟାରୀମାନଙ୍କୁ) କଂଗ୍ରେସରେ ବସିବା ପାଇଁ ନିଷେଧ କରାଯାଇ ଥିଲା ।

ବ୍ରିଟିଶ୍ ସମ୍ବିଧାନ ଗୋଟିଏ ଭିନ୍ନ ପ୍ରକାରରେ ବିକାଶ ଲାଭ କରିଥିଲା । ୧୮୮୩ରେ ରାଜା ତୃତୀୟ ଜର୍ଜ ଉଇଲିୟମ ପିଟଙ୍କୁ ନିଯୁକ୍ତ ଦେଇଥିଲେ ସିନା, ପିଟ୍ ନିର୍ବାଚକ-ମାନଙ୍କୁ ନିବେଦନ କରି ସଂସଦକୁ ଆସିଥିଲେ । ସଂଖ୍ୟାଗରିଷ୍ଠତା ହାସଲ କରିବା ପାଇଁ ସମ୍ରାଟ ଅବଶ୍ୟ ତାଙ୍କୁ ସାହାଯ୍ୟ କରିଥିଲେ । ପିଟଙ୍କ କ୍ଷମତା ସଂଖ୍ୟାଗରିଷ୍ଠତା ଓ ସମ୍ରାଟଙ୍କ ସମର୍ଥନ, ଉଭୟ ଉପରେ ସମାନ ଭାବରେ ନିର୍ଭର କରୁଥିଲା । ସେତେବେଳେ ମଧ୍ୟ ସମ୍ରାଟ ମାଡକୁ ପ୍ରଭାବିତ କରି ପାରୁଥିଲେ ଓ ନିଜ ମନ୍ତ୍ରିମାନଙ୍କୁ ପରିବର୍ତ୍ତନ କରିପାରୁ ଥିଲେ; ପରବର୍ତ୍ତୀ ଚାଳିଶି ବର୍ଷ ମଧ୍ୟରେ ଏହି କ୍ଷମତା କ୍ରମଶଃ ପରିବର୍ତ୍ତିତ ହୋଇଯାଇଥିଲା । କ୍ଷମତା କ୍ରମଶଃ ସମ୍ରାଟଙ୍କଠାରୁ ମନ୍ତ୍ରିମାନଙ୍କ ହାତକୁ ଆସିଥିଲା । ଆରମ୍ଭରେ ରାଜା ତୃତୀୟ ଜର୍ଜଙ୍କର ସାମୟିକ ବାତୁଳତା ଏଥିପାଇଁ ଦାୟୀ ଥିଲା । କାର୍ଯ୍ୟପାଳିକା କ୍ଷମତା ସମ୍ରାଟଙ୍କ ପାଖରେ ନ ଥାଇ ସରକାରଙ୍କ ପାଖରେ ରହିଲା । ଏହି ସରକାର କମନ୍‌ସସଭାର ସଂଖ୍ୟାଗରିଷ୍ଠ ଦଳ ଦ୍ୱାରା ବଞ୍ଚୁଥାଉଥିଲା । ଅବଶ୍ୟ ୧୮୪୧ ପର୍ଯ୍ୟନ୍ତ ରାଣୀ ଭିକ୍ଟୋରିଆ ଏହା ହୃଦୟଙ୍ଗମ କରିପାରି ନ ଥିଲେ । ୧୮୪୧ରେ ଆନୁଷ୍ଠାନିକ ଭାବରେ ପିଲଙ୍କ କ୍ଷମତା ରାଣୀଙ୍କ ଉପରେ ନିର୍ଭର ନ କରି ସାଧାରଣ ନିର୍ବାଚନରେ ନିର୍ବାଚିତ ହୋଇଥିବା ଟୋରି ସଂଖ୍ୟାଗରିଷ୍ଠତା ଉପରେ ନିର୍ଭର କରିଥିଲା । ରାଣୀ ଆଉ ସରକାରଙ୍କ ମୁଖ୍ୟ ନ ରହି ରାଣୀଙ୍କର ପ୍ରଧାନ ସହାୟକ ରୂପେ କାର୍ଯ୍ୟ କରୁଥିବା ପ୍ରଧାନମନ୍ତ୍ରୀ ସରକାରଙ୍କ ମୁଖ୍ୟ ହେଲେ । ପ୍ରଧାନମନ୍ତ୍ରୀ ସଂସଦରେ ଥିବା ନିଜ ଦଳର ସମର୍ଥକମାନଙ୍କ ମଧ୍ୟରୁ ନିଜ ସହକର୍ମୀମାନଙ୍କୁ ବାଛୁଥିଲେ ଏବଂ ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ସମର୍ଥନ ଥିଲା ପର୍ଯ୍ୟନ୍ତ କ୍ଷମତାରେ ରହୁଥିଲେ । ୧୮୪୬ରେ ସେ ନିଜ ସଂଖ୍ୟାଗରିଷ୍ଠତା ହରାଇବା ପରେ ସଙ୍ଗେ ସଙ୍ଗେ ଇସ୍ତଫା ପ୍ରଦାନ କରିଥିଲେ ।

ପ୍ରଧାନମନ୍ତ୍ରୀ କମନ୍‌ସସଭାର ସଭ୍ୟ ହେବା ପାଇଁ କୌଣସି ଆଇନରେ ବ୍ୟବସ୍ଥା କରାଯାଇ ନାହିଁ । ବିଗତ ୧୩୦ ବର୍ଷ ମଧ୍ୟରେ ୧୮୩୨ର ସଂସ୍କାର ଆଇନ ଗୃହୀତ ହେବା ପରଠାରୁ ଆଠ ଜଣ ପ୍ରଧାନମନ୍ତ୍ରୀ ଲର୍ଡସଭାର ସଭ୍ୟ ଥିଲେ । ମାର୍କ୍ୱିଇସ୍ ଅଫ୍ ସାଲିସ୍‌ବେରୀ ସେମାନଙ୍କ ମଧ୍ୟରୁ ଶେଷ ପ୍ରଧାନମନ୍ତ୍ରୀ ଥିଲେ ଓ ୧୮୯୫ରୁ ୧୯୦୨ ମଧ୍ୟରେ ସେ ତୃତୀୟ ଥର ପାଇଁ ଏହି ପଦ ମଣ୍ଡନ କରିଥିଲେ । ବୋନାର ଲ ଜଣେ ଲର୍ଡ ଥିଲେ ଓ ୧୯୨୩ରେ ତାଙ୍କ ଇସ୍ତଫା ପରେ ଲର୍ଡ କର୍ଜନ ପ୍ରଧାନମନ୍ତ୍ରୀ ପଦ ପାଇଁ ପ୍ରାର୍ଥୀ ଥିଲେ । ସମ୍ରାଟ ପଞ୍ଚମଜର୍ଜ ତାଙ୍କ ଦାବୀକୁ ଅଗ୍ରାହ୍ୟ କରି କମନ୍‌ସସଭାର ସଦସ୍ୟ ଥିବା ବାଲଡ୍‌ୱିନ୍‌ଙ୍କୁ ପ୍ରଧାନମନ୍ତ୍ରୀ ରୂପେ

ନିଯୁକ୍ତ କରିଥିଲେ । ଶ୍ରମିକ ଦଳର ଆବିର୍ଭାବ ଫଳରେ ଦଳୀୟ ବିବାଦ କମନ୍‌ସସଭାରେ କେନ୍ଦ୍ରୀଭୂତ ହୋଇଥିବା, ଏହାର କାରଣ ଥିଲା । ବୋଧହୁଏ ଏହି ଅପରିହାର୍ଯ୍ୟ ବିବର୍ତ୍ତନକୁ ଶ୍ରମିକଦଳ କେବଳ ମାତ୍ର ତ୍ୱରାନ୍ୱିତ କରିଥିଲା । ଏହା ଫଳରେ ଲର୍ଡ଼ସଭା ଆଉ ରାଜନୈତିକ ସାର କେନ୍ଦ୍ର ହୋଇ ରହିଲା ନାହିଁ । ବେଳେ ବେଳେ ଏଥିରେ ବ୍ୟତିକ୍ରମ ଦେଖା ଯାଇଛି, ଗତ ପଚିଶ ବର୍ଷ ମଧ୍ୟରେ ଲର୍ଡମାନେ କୌଣସି ଗୁରୁତ୍ୱପୂର୍ଣ୍ଣ ମନ୍ତ୍ରୀଭାବେ ରହି ନାହାନ୍ତି । ଉଦାହରଣ ସ୍ୱରୂପ, ବୈଦେଶିକ ମନ୍ତ୍ରୀ ଲର୍ଡସଭାର ସଭ୍ୟ ଥିବାରୁ ଦୁଇଥର ଏହାର ପ୍ରତିବାଦ କରାଯାଇ ଥିଲା । ସେତେବେଳେ ବୈଦେଶିକ ମନ୍ତ୍ରଣାଳୟ ପକ୍ଷରୁ ପ୍ରଧାନମନ୍ତ୍ରୀ ନିଜେ କମନ୍‌ସସଭାରେ ପ୍ରଶ୍ନୋତ୍ତର କରୁଥିଲେ ମଧ୍ୟ ଏହି ପ୍ରତିବାଦ କରା ଯାଇଥିଲା ।

ସୁତରାଂ କମନ୍‌ସସଭାର ସଂଖ୍ୟାଗରିଷ୍ଠ ସଭ୍ୟମାନଙ୍କ ଦ୍ୱାରା ବଛା ଯାଇଥିବା ବ୍ୟକ୍ତି-ମାନଙ୍କୁ ନେଇ ସରକାର ଗଠିତ ହୋଇଥାଏ । ବିରୋଧୀ ଦଳରେ ମଧ୍ୟ ଏକ ଛାୟା ସରକାର ଥାଏ । ଏହି ଛାୟା ସରକାର ଆସନ୍ତା ନିର୍ବାଚନରେ କ୍ଷମତାକୁ ଆସିବା ପାଇଁ ଆଶା କରିଥାଏ । ଗୋଟିଏ ପକ୍ଷରେ ପ୍ରଧାନମନ୍ତ୍ରୀ ଥିବା ସ୍ଥଳେ ଅନ୍ୟ ପକ୍ଷରେ ବିରୋଧୀ ଦଳର ନେତା ଥାଆନ୍ତି; ଗୋଟିଏ ପକ୍ଷରେ ବୈଦେଶିକ ବ୍ୟାପାର ମନ୍ତ୍ରୀ ଥିବା ବେଳେ ଅନ୍ୟ ପକ୍ଷରେ ବିରୋଧୀ ଦଳରୁ ବୈଦେଶିକ ମନ୍ତ୍ରୀ ହେବାକୁ ଆଶାୟୀ ଥିବା ବ୍ୟକ୍ତି ଥାଆନ୍ତି । ଗୋଟିଏ ପକ୍ଷରେ ଶିକ୍ଷାମନ୍ତ୍ରୀ ଥିବା ସ୍ଥଳେ ଅନ୍ୟ ପକ୍ଷରେ ଛାୟା ସରକାରଙ୍କ ଶିକ୍ଷାମନ୍ତ୍ରୀ ରହି ଥାଆନ୍ତି । ସଭାରେ ବହୁ ତର୍କ ବିତର୍କ ସହ ଆଲୋଚନା କରାଯାଇ ଥାଏ ।

ଦଳୀୟ ବିବାଦ ଆପାତତଃ ଖରାପ ଦିଶୁଥିଲେ ମଧ୍ୟ ଏହା ବ୍ରିଟେନ୍ ବିଶ୍ୱାସ କରୁଥିବା ମୌଳିକ ନୀତିର ପକ୍ଷପାତୀ ଅଟେ । ରାଜନୀତି କ୍ଷେତ୍ରରେ ମତ ପାର୍ଥକ୍ୟ ରହିବା ଗୋଟିଏ ମୌଳିକନୀତି, ଏହାକୁ ହୁଏତ ଧର୍ମକ୍ଷେତ୍ରରେ ପ୍ରୟୋଗ କରାଯାଇ ପାରେ । କେଉଁ ଚିନ୍ତାଧାରା ଠିକ୍ ଓ କେଉଁ ଚିନ୍ତାଧାରା ଭୁଲ ତାହା ପ୍ରକାଶ କରିବା କ୍ୱଚିତ୍ ସମ୍ଭବ ହୋଇ-ଥାଏ । ଦୁଇ ଗୋଟି ଚିନ୍ତାଧାରା ମଧ୍ୟରୁ ଜଣେ ଯେ କୌଣସି ଗୋଟିଏ ଚିନ୍ତାଧାରାକୁ ବାଛି ପାରେ । ଜଣେ ସଚ୍ଚୋଟ ଲୋକ ଭଲଟିକୁ ବାଛିବ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇ ନ ପାରେ । ସେ ହୁଏତ ଯୁକ୍ତି ଦର୍ଶାଇ ପାରେ ଯେ ସେ ଯେ କୌଣସି ଗୋଟିଏ ସିଦ୍ଧାନ୍ତରେ ପହଞ୍ଚି ପାରେ ଏବଂ ତା ସହିତ ଏକମତ ହେଉ ନ ଥିବା ବ୍ୟକ୍ତିମାନଙ୍କୁ ରାଜି ହେବା ପାଇଁ ପ୍ରବର୍ତ୍ତାଇ ପାରେ । ଅନ୍ୟ ଜଣେ ବ୍ୟକ୍ତି ଭିନ୍ନ ଧରଣର ଯୁକ୍ତି ଦର୍ଶାଇ ଆଉ ଏକ ସିଦ୍ଧାନ୍ତରେ ଉପନୀତ ହେବାକୁ ହକ୍‌ଦାର ବୋଲି ସେ ସ୍ୱୀକାର କରିଥାଏ । ବାସ୍ତବିକ୍ ଯେଉଁମାନେ ସମିତିଗୁଡ଼ିକର ସଭ୍ୟ ଥାଆନ୍ତି ସେମାନେ ଜାଣି ଥାଆନ୍ତି ଯେ ଆଲୋଚନା ଦ୍ୱାରା ବିଭିନ୍ନ ମତ ସୃଷ୍ଟି ହୋଇଥାଏ । ଜଣେ ଆପାତତଃ ଗୋଟିଏ ନୀତିରେ ଆରମ୍ଭ କରି-ଥିଲେ ଶେଷରେ ଆଉ ଏକ ନୀତିରେ ପହଞ୍ଚି ଥାଏ । ଏପରି ଘଟୁ ନ ଥିଲେ ଆଲୋଚନା ବିଫଳ ହୁଅନ୍ତା । ଆଲୋଚନା ଶେଷରେ କେତେକ ବିଷୟରେ ମତଭେଦ ଦେଖା ଯାଇ ପାରେ ଓ ଏପରି ସ୍ଥଳେ ମତ ନେବା ଦ୍ୱାରା ସମାଧାନ ହୋଇଥାଏ ।

ଗ୍ରୀକ୍ ସହରରର ସ୍ୱାଧୀନ ନାଗରିକମାନେ ଗୋଟିଏ ବଡ଼ ସମିତି ପରି କୌଣସି ଗୋଟିଏ ଜାଗାରେ ମିଳିତ ହୋଇ ବିଭିନ୍ନ ବିଷୟରେ ନିଷ୍ପତ୍ତି କରୁଥିଲେ । ସଂଯୁକ୍ତ ରାଜ୍ୟର ତିନି କୋଟି ସାବାଳକ ନାଗରିକ ଏକତ୍ର ଗୋଟିଏ ଜାଗାରେ ମିଳିତ ହୋଇ ପାରିବେ ନାହିଁ। ଏହି ସମସ୍ୟାର ସମାଧାନ ପାଇଁ ତିନୋଟି ଉପାୟ ଅଛି । ପ୍ରଥମ ଉପାୟ ହେଉଛି, ଜଣେ ସମ୍ରାଟ କିମ୍ବା ଏକଛତ୍ରବାଦୀ ଶାସକଙ୍କୁ ନିର୍ବାଚିତ କରିବା ଓ ସିଜାରଙ୍କ ପରି ସବୁ ବିଷୟରେ ନିଷ୍ପତ୍ତି କରିବା ଦାୟିତ୍ୱ ତାଙ୍କ ହାତରେ ଛାଡ଼ିଦେବା । ମୁସୋଲିନିଙ୍କ କଥା ଅନୁସାରେ ସିଜାର ଯାହା କରୁଛନ୍ତି ତାହା ସର୍ବଦା ଠିକ୍ ବୋଲି ଧରି ନିଆ ଯାଇଥାଏ । ଦ୍ୱିତୀୟ ଉପାୟଟି ହେଉଛି, ଅବାଧ ବ୍ୟବସାୟ ଦ୍ୱାରା ପରିଚାଳିତ ସରକାର କିମ୍ବା କମ୍ୟୁନିଷ୍ଟ ସରକାର ପ୍ରତିଷ୍ଠା କରିବା । ଯେଉଁମାନେ ଏହି ସିଦ୍ଧାନ୍ତକୁ ସମର୍ଥନ କରୁଥାନ୍ତି ସେମାନେ ଏହି ବିଷୟରେ ନିଷ୍ପତ୍ତି ନିଅନ୍ତି । ସୋଭିଏଟ୍ ରୁଷିଆରେ ଏହାର ଉଦାହରଣ ଦେଖିବାକୁ ମିଳେ । ସେଠାରେ ଦଳ ଯାହା କରୁଛି ତାହା ଠିକ୍ ବୋଲି ଧରି ନିଆଯାଇ ଥାଏ । ଦଳଠାରୁ ଭିନ୍ନ ମତ ପୋଷଣ କରୁଥିବା ମତ ଠିକ୍ ନୁହେଁ ବୋଲି କୁହାଯାଇ ଥାଏ । ତୃତୀୟ ଉପାୟଟି ହେଉଛି ବ୍ରିଟିଶ ପ୍ରଣାଳୀ । ବରଂ ଏହା ଇଂଲଣ୍ଡରେ ଉଦ୍ଭାବିତ ହୋଇ ଥିବାରୁ ଏହାକୁ ଇଂରେଜ ପ୍ରଣାଳୀ କହିବା ଭଲ । ଏହି ବ୍ୟବସ୍ଥା ଫଳରେ ବିଭିନ୍ନ ମତବାଦର ବ୍ୟକ୍ତିମାନଙ୍କୁ ନିର୍ବାଚିତ କରାଯାଇ ଥାଏ ଓ ସେମାନଙ୍କୁ ଅନ୍ତତଃ ପକ୍ଷେ କମ ସମୟ ପାଇଁ ବିଭିନ୍ନ ବିଷୟରେ ନିଷ୍ପତ୍ତି ନେବା ପାଇଁ ଦାୟିତ୍ୱ ଦିଆଯାଇ ଥାଏ ।

ସାଧାରଣ ସ୍ନାନାଗାର ଉଦ୍‌ଘାଟନ କିମ୍ବା ଏକ ସାଧାରଣ ପାଠାଗାରରେ ବାଳକମାନଙ୍କ ପାଇଁ ପଠନ ବ୍ୟବସ୍ଥା କରିବା ପରି କମ୍ ଗୁରୁତ୍ୱପୂର୍ଣ୍ଣ ବିଷୟମାନଙ୍କରେ ନିର୍ବିଘ୍ନ ଆଲୋଚନା ଦ୍ୱାରା ଯଥାର୍ଥ ସିଦ୍ଧାନ୍ତରେ ପହଞ୍ଚିବାର ଆବଶ୍ୟକତା ନ ଥାଏ । ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକ ଜଣକର ମନୋଭାବ କିମ୍ବା ଯେଉଁ ଲକ୍ଷ୍ୟ ରଖି ଜଣେ କାର୍ଯ୍ୟ କରୁଥାଏ ଅଥବା ଯେଉଁ ପ୍ରଣାଳୀରେ ସେ କାର୍ଯ୍ୟ କରୁଥାଏ ତାହା ଉପରେ ନିର୍ଭର କରେ । ସେଥିପାଇଁ ପ୍ରତିନିଧିମାନେ ବିଭିନ୍ନ ଦଳରେ ଯୋଗ ଦେଇଥାନ୍ତି । ନିର୍ବାଚନ ପାଇଁ ସେମାନେ ବିଭିନ୍ନ ଦଳରେ ଯୋଗଦେବା ଉଚିତ, କାରଣ କୌଣସି ନୀତିଗତ ପ୍ରଶ୍ନ ଉପରେ ରାମା, ଦାମା ଓ ଶାମା ଯେଉଁ ନିଷ୍ପତ୍ତି ନେଇ ଥାଆନ୍ତି ସେଥି ସହିତ ସେ ଏକମତ ନ ହୋଇ ପାରନ୍ତି । ଏଥିରୁ କେବଳ ଦୁଇଟି ଦଳ ଥିବା କଥା ସୂଚୀତ ହୁଏ ନାହିଁ, କିନ୍ତୁ ଦୁଇଟି ଦଳ ଥିଲେ ସରକାରୀ ଦଳ ଭଲ ଭାବରେ କାର୍ଯ୍ୟ କରେ । ଗୋଟିଏ ଦଳର ତୀବ୍ର ସମାଲୋଚନା ମଧ୍ୟରେ ଆଉ ଗୋଟିଏ ଦଳ ନିଷ୍ପତ୍ତି ନେଇଥାଏ । ସରକାର ନିଷ୍ପତ୍ତି ନିଅନ୍ତି ଓ ବିରୋଧୀଦଳ ସମାଲୋଚନା କରନ୍ତି । ଉଭୟ ଦଳ ପ୍ରତିନିଧିତ୍ୱ କରୁଥିବା ଜନସାଧାରଣଙ୍କ ମତାମତ ଜାଣିବା ପାଇଁ ନିବେଦନ କରି ଥାଆନ୍ତି ।

ସୁତରାଂ କମନ୍‌ସସଭାରେ ବିରୋଧୀଦଳ ଏକ ଅପରିହାର୍ଯ୍ୟ ଅଙ୍ଗ । "ବିରୋଧୀଦଳ କେବଳ ବିରୋଧ କରିବ ବୋଲି" ସାର୍ ଉଇଲିୟମ୍ ହାର୍‌କୋର୍ଟ ଯାହା କହିଥିଲେ ତାହା

ସମ୍ପୂର୍ଣ୍ଣଭାବେ ଠିକ୍ ନୁହେଁ । ସାଧାରଣ ମତୈକ୍ୟ ଥିଲେ ସରକାରଙ୍କର ବହୁ ପ୍ରସ୍ତାବକୁ ବିରୋଧ କରାଯାଇ ନ ଥାଏ । ନୀତିଗତ ଭାବରେ ଗୋଟିଏ ଯୋଜନା ଭଲ ହୋଇଥିଲେ ମଧ୍ୟ ଏହାର ଟିକିନିଖି କାର୍ଯ୍ୟକାରିତାରେ ଦୋଷ-ଦୁର୍ବଳତା ଥିଲେ ସମାଲୋଚନା କରାଯାଇ ପାରେ । ଗୋଟିଏ ପ୍ରସ୍ତାବକୁ ବିରୋଧ ନ କରି ମଧ୍ୟ ସମାଲୋଚନା କରିବା ସମ୍ଭବ । ଅସ୍ତ୍ରଶସ୍ତ୍ର ବୃଦ୍ଧି କରିବାର ଆବଶ୍ୟକତା ପାଇଁ ବିରୋଧୀଦଳ ରାଜିହୋଇ ପାରନ୍ତି, କିନ୍ତୁ ସରକାରଙ୍କ ଦୁର୍ବଳ ବୈଦେଶିକ ନୀତି ଯୋଗୁ ଏହା ଆବଶ୍ୟକ ହେଉଛି ବୋଲି ସମାଲୋଚନା କରିପାରନ୍ତି । କୌଣସି ଗୋଟିଏ ଯୋଜନାର ବିରୋଧ କରାଗଲେ ତାହାର ସମସ୍ତ ବ୍ୟବସ୍ଥାର ବିରୋଧ କରାଯାଇ ନ ଥାଏ । ପରିଶେଷରେ ବିରୋଧ ଏକ ଆନୁଷ୍ଠାନିକ ମତପ୍ରକାଶ ବୋଲି କୁହାଯାଇପାରେ । ସରକାରଙ୍କୁ କାର୍ଯ୍ୟକରିବା ପାଇଁ ସୁଯୋଗ ନ ଦେବା ବିରୋଧୀଦଳର ନୀତି ନୁହେଁ, ଏହା କେବଳ ସରକାରୀ ନୀତିର ସମାଲୋଚନା କରିଥାଏ ଏବଂ ଆସନ୍ତା ଥର ନିର୍ବାଚକମାନେ ଆଉ ଏକ ସରକାରଙ୍କୁ ବାଛିବେ ବୋଲି ଆଶା କରିଥାଏ । ଗ୍ରଣୀଙ୍କ କାର୍ଯ୍ୟ ନିରବଚ୍ଛିନ୍ନ ଭାବରେ ଚାଲୁ ରହିବା କଥା ଓ ଯେଉଁ ଦଳ କ୍ଷମତାରେ ଥାଏ ଉକ୍ତ ଦଳ ଏହାକୁ ନିଶ୍ଚିତ ଭାବରେ ଚାଲୁ ରଖେ । ଆସନ୍ତା କାଲି ଟଙ୍କା ଦଶଟା ଯାଏ ଭୋଟ ନଆସିବା ପର୍ଯ୍ୟନ୍ତ ବିରୋଧୀଦଳକୁ ସୁଯୋଗ ଦିଆଯିବା କଥା ନୁହେଁ ବୋଲି ସରକାର ଯାହା କହିଥାଆନ୍ତି ସେଥିରେ କୌଣସି ଛଳନା ନ ଥାଏ । ସରକାରୀନୀତି ଯଥେଷ୍ଟ ଭାବରେ ସମାଲୋଚିତ ହୋଇଅଛି କିନ୍ତୁ ଏହାକୁ ପ୍ରତିରୋଧ କରାଯାଇ ନାହିଁ ଏବଂ ଏଥିପାଇଁ ଗ୍ରଣୀଙ୍କ ସେବାକାର୍ଯ୍ୟ ଚାଲୁରହିବା ଉଚିତ । କେତେକ ପ୍ରସ୍ତାବକୁ ପ୍ରତିରୋଧ କରିବା ପାଇଁ ବିରୋଧୀଦଳ ଦୃଢ଼ ପ୍ରତିଜ୍ଞ ଥିଲେ, ଏହାକୁ ପ୍ରତିହତ କରିବା ପାଇଁ ସରକାରଙ୍କର ମଧ୍ୟ ଯଥେଷ୍ଟ କ୍ଷମତା ଥାଏ । ଏହି କ୍ଷମତାକୁ ସର୍ବଦା ବ୍ୟବହାର କରିବା କ୍ଷତିକାରକ । ବିରୋଧୀଦଳକୁ ଭୋଟଦ୍ୱାରା ପରାସ୍ତ କରିବା ଧାରଣା ଏହା ଦ୍ୱାରା ଦୃଢ଼ୀଭୂତ ହୋଇଥାଏ । ସମାଲୋଚନାର ଉତ୍ତର ଦେବା ଅପେକ୍ଷା ତାହାକୁ ବନ୍ଦ କରିଦେବା ସରକାରଙ୍କ ପକ୍ଷରେ ସହଜ ଅଟେ । ଏହା ଫଳରେ ନିର୍ବାଚକମାନେ କେବଳ ଗୋଟିଏ ଦିଗ ଜାଣି ପାରନ୍ତି । ବିରୋଧୀଦଳ ସର୍ବଦା ପ୍ରତିରୋଧ କଲେ ସରକାର ଭୋଟ ଦ୍ୱାରା ବିରୋଧୀଦଳର କାର୍ଯ୍ୟକୁ ବନ୍ଦ କରି ଆଆନ୍ତି ଓ ଏହା ଫଳରେ ସଂଖ୍ୟାଗରିଷ୍ଠ ଏକଚ୍ଛତ୍ର ବାଦ ପ୍ରତିଷ୍ଠିତ ହୋଇଥାଏ ।

ଉପରୋକ୍ତ ନୀତିଗୁଡ଼ିକ ହୃଦୟଙ୍ଗମ କଲେ ସରକାରୀ କଳ ଚାଲିବାରେ କିଛି ଅସୁବିଧା ନ ଥାଏ । ବିରୋଧୀ ଦଳର ସମାଲୋଚନା ମଧ୍ୟରେ ସରକାର ଆସନ ପାଇ ଆଆନ୍ତି । ସରକାରଙ୍କ କାର୍ଯ୍ୟ ହେଲେ ବି ବିରୋଧୀ ଦଳର କାର୍ଯ୍ୟ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ବିରୋଧୀଦଳର ନେତାଙ୍କ ପାଇଁ ବେତନ ଓ ବିରୋଧୀଦଳର ସଚେତକଙ୍କ ପାଇଁ ଗୃହର ବ୍ୟବସ୍ଥା କରାଯାଇଥାଏ । ଗୃହର କାର୍ଯ୍ୟ ଯେତେଦୂର ସମ୍ଭବ ସରକାର ଓ ବିରୋଧୀଦଳ ମଧ୍ୟରେ ବୁଝାମଣା ମାଧ୍ୟମରେ ଚାଲିଥାଏ । ବୁଝାମଣାର ଅଭାବ ହେଲେ ସରକାର ନିଶ୍ଚିତ ଭାବରେ ନିଷ୍ପତ୍ତି ନେଇଥାଆନ୍ତି ଓ ଏହା ନିଜ ସଂଖ୍ୟା ଗରିଷ୍ଠତା ସାହାଯ୍ୟରେ ସମ୍ଭବ

ହୋଇଥାଏ । ଯେହେତୁ ସରକାର ନିର୍ଦ୍ଦିଷ୍ଟ ଭାବେ ଶାସନ କରନ୍ତୁ ବୋଲି ବିରୋଧୀଦଳ ଚାହାଁନ୍ତି ଓ ବିରୋଧୀଦଳ ନିର୍ଦ୍ଦିଷ୍ଟ ଭାବରେ ସମାଲୋଚନା କରୁ ବୋଲି ସରକାର ଚାହାଁନ୍ତି, ଗୃହର କାର୍ଯ୍ୟ ସାଧାରଣତଃ ମିଳିତ ବୈଠକରେ ନିର୍ଣ୍ଣୟ କରାଯାଇଥାଏ ।

ଗୃହରେ ଦୁଇ ବିଭିନ୍ନ ଗୋଷ୍ଠୀର ରାଜନୀତିଜ୍ଞମାନେ ଥିବାରୁ, ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ବିଷୟଗୁଡ଼ିକ ଉପରେ ଆଲୋଚନା ହେବାବେଳେ ଏହି ଦ୍ୱିଦଳୀୟ ପ୍ରଥା ସଂସଦରେ ଭଲ ଭାବରେ କାମ କରିଥାଏ । ସଂସଦରେ ବହୁତ ଗୁଡ଼ିଏ ସମିତି କାର୍ଯ୍ୟ କରନ୍ତି । ରାଜନୀତିଜ୍ଞମାନେ ଭଲ ପ୍ରଶାସକ କିମ୍ବା ସମିତିର ଭଲ ସଦସ୍ୟ ଥିବା ଯୋଗୁଁ ନିର୍ବାଚନରେ ଜିଣି ନ ଥାଆନ୍ତି । ସାମାନ୍ୟ ବ୍ୟତିକ୍ରମ ଥିଲେ ବି ସେମାନେ ସାଧାରଣତଃ ଚିତ୍ତାକର୍ଷକ ଓ ଆକର୍ଷଣୀୟ ଭାଷଣ ଦେଇ ନିର୍ବାଚିତ ହୁଅନ୍ତି । ସର୍ବୋପରି ଗୃହରେ ଚାଲିଥିବା ରାଜନୈତିକ ଆଲୋଚନା-ଗୁଡ଼ିକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଥାଏ । ଜନସାଧାରଣ କୌଣସି ବିଷୟର ସୂକ୍ଷ୍ମାନୁପୁଙ୍ଖ ବିବରଣୀ ଚାହାନ୍ତି ନାହିଁ । ବହୁ ନିର୍ବାଚକ ମଧ୍ୟ ଏଥିସହିତ ଏକମତ ନୁହଁନ୍ତି । ନୀତିସମ୍ବଳିତ ବାଦ ବିବାଦକୁ ନିର୍ବାଚକମାନଙ୍କ ସମ୍ମୁଖକୁ ଆଣିବା ସଂସଦୀୟ ଆଲୋଚନାର ଲକ୍ଷ୍ୟ ହୋଇଥାଏ । ଏହା କିପରି କାର୍ଯ୍ୟକାରୀ ହେବ ତାହାହିଁ ସରକାରଙ୍କର ଚିନ୍ତାର ବିଷୟ । ସଂସଦର ସରକାରୀ-ବିବରଣୀ ଥିବା "ହାନସାର୍ଡ଼"କୁ ( Hansard ) ଖୁବ୍ କମ୍ ଲୋକ ପଢ଼ନ୍ତି । ଏହାକୁ ମଧ୍ୟ ପଢ଼ିବା ସହଜ ନୁହେଁ, କାରଣ ଏହା ପ୍ରତ୍ୟେକ ଭାଷଣକୁ ଅକ୍ଷରେ ଅକ୍ଷରେ ଲେଖିଥାଏ । ଏପରି କି ଗୁରୁତ୍ୱ ନ ଥିବା ବିଷୟ ମଧ୍ୟ ଏଥିରେ ପ୍ରକାଶ ପାଇଥାଏ । ସୁତରାଂ ଯେଉଁମାନଙ୍କର ବେଶୀ ସମୟ ଓ ଧୈର୍ଯ୍ୟ ଥିବ ସେହିମାନେ ହିଁ କେବଳ ଏହାକୁ ପାଠ କରି ପାରିବେ । ସାରାଂଶ ବିସ୍ତାରିତ କରି ଖବରକାଗଜରେ ଯେପରି ପ୍ରକାଶ କରାଯାଏ ତାହା ବେଶୀ ଦରକାରୀ ହୋଇଥାଏ । ଦୁର୍ଭାଗ୍ୟବଶତଃ ଖବରକାଗଜରେ ମଧ୍ୟ ସୀମିତ ସ୍ଥାନ ଥାଏ ଏବଂ ସେମାନେ ପାଠକମାନଙ୍କୁ ସେମାନଙ୍କ ଚାହିଦା ଅନୁସାରେ ଲେଖା ଯୋଗାଇ ପାରନ୍ତି ନାହିଁ । ଜଣେ ସାଧାରଣ ପାଠକ ରାଜନୀତି ପ୍ରତି ବୀତସ୍ପୃହ ହେବା କଥା ଅତି ଦୁଃଖର ବିଷୟ । କେତେକ ବିଷୟରେ ମୂଲ୍ୟାଙ୍କନ କରିବାକୁ ପଡ଼ିଲେ ଜଣେ ରାଜନୀତିଜ୍ଞ ଅପେକ୍ଷା ଜଣେ କବି ବେଶୀ ଆଦୃତ ହୁଅନ୍ତି । ଏପରି ନ ଘଟିଲେ ମଧ୍ୟ ବ୍ରିଟେନ୍‌ର ରାଜନୈତିକ ସମସ୍ୟା ଗୁଡ଼ିକ ଗୁରୁତର ନୁହେଁ ଓ ସରକାର ଏହା ଭଲଭାବରେ ସମାଧାନ କରୁଛନ୍ତି ବୋଲି ଧରି ନିଆଯାଇଥାଏ । ଜଣେ ନିର୍ବାଚକ ଖବରକାଗଜରେ ପ୍ରକାଶିତ ସାମୟିକ ବିବରଣୀ ବ୍ୟତୀତ ସଂସଦୀୟ ବିବରଣୀ ପାଠ କରି ନଥିଲେ, ଚାରି କିମ୍ବା ପାଞ୍ଚ ବର୍ଷ ପରେ ଯେତେବେଳେ ତାଙ୍କୁ ନୂତନ ସରକାର ବାଛିବାକୁ ହୋଇଥାଏ ସେତେବେଳେ ବିବେକ ଅନୁସାରେ ସେ ନିଜ କର୍ତ୍ତବ୍ୟ ସଂପାଦନ କରିବାରେ ଅସୁବିଧା ଭୋଗ କରିଥାନ୍ତି ।

ଉପରୋକ୍ତ ଅସୁବିଧା ସତ୍ତ୍ୱେ କମନ୍ସସଭା ନିଜ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିଥାଏ । ଉଦାହରଣ ସ୍ୱରୂପ, ଆମେରିକାର ପ୍ରତିନିଧି-ସଭା ( The House of Representatives ) ତୁଳନାରେ ଏହା ନିଜ କାର୍ଯ୍ୟ ଉତ୍କୃଷ୍ଟତର ଭାବରେ ସମ୍ପାଦନ

କରିଥାଏ । ଉଭୟ ସରକାର ଓ ବିରୋଧୀଦଳ ସଂସଦରେ ରହିଥିବା ଯୋଗୁଁ ଏହା ହୋଇ-ଥାଏ । ଆମେରିକାର ରାଷ୍ଟ୍ରପତିଙ୍କ ପରି ପ୍ରଧାନମନ୍ତ୍ରୀ ସାପ୍ତାହିକ ସାମ୍ବାଦିକ ସମ୍ମିଳନୀ କରନ୍ତି ନାହିଁ । ସଂସଦୀୟ ଅଧିବେଶନ ଚାଲିଥିବା ସମୟରେ ସେ ଓ ତାଙ୍କ ମନ୍ତ୍ରୀମାନେ ସପ୍ତାହକେ ପାଞ୍ଚଦିନ ସାମ୍ବାଦିକ ସମ୍ମିଳନୀ ଆହ୍ୱାନ କରିଥାଆନ୍ତି । ସେହି ସମ୍ମିଳନୀ ଗୁଡ଼ିକରେ କେବଳ "ଗଳ୍ପ" ଶୁଣିବା ପାଇଁ ସାମ୍ବାଦିକମାନେ ପ୍ରଶ୍ନ ପଚାରି ନ ଥାନ୍ତି; ବରଂ ବହୁ ଜଟିଳ ସମସ୍ୟା ବିଷୟରେ ପ୍ରଶ୍ନ ପଚରାଯାଇଥାଏ । କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟରେ ସରକାରଙ୍କ ମତାମତ ବିସ୍ତୃତଭାବରେ ଦିଆଯିବା ପରେ ସେହି ବିଷୟରେ ବିରୋଧୀ ଦଳର ମତାମତ ମଧ୍ୟ ବିସ୍ତୃତ ଭାବରେ ପ୍ରକାଶ ପାଇଥାଏ । ଶ୍ରୋତାଙ୍କ ଧୈର୍ଯ୍ୟ ଥିବା ପର୍ଯ୍ୟନ୍ତ କିମ୍ବା ନିର୍ଦ୍ଧାରିତ ସମୟ ଶେଷ ହେବା ପର୍ଯ୍ୟନ୍ତ ସେହି ବିଷୟରେ ମୁକ୍ତତର୍କ ଚାଲୁ ରହିଥାଏ । ସାମ୍ବାଦିକ ସମ୍ମିଳନୀ ବ୍ୟବସ୍ଥା ପୃଥିବୀରେ ଏକ ଉତ୍ତମ ବ୍ୟବସ୍ଥା ବୋଲି ଧରି ନିଆଯାଇ ଥାଏ ।

କମନ୍‌ସସଭାର କାର୍ଯ୍ୟକ୍ରମ ଉପଯୁକ୍ତ ଭାବରେ ସଂଗଠିତ ହୋଇଥାଏ । ଶୁକ୍ରବାରକୁ ବାଦଦେଲେ ଅନ୍ୟ ଦିନ ମାନଙ୍କରେ ଆନୁଷ୍ଠାନିକ "ପ୍ରଶ୍ନାବଳୀ" ପରେ ସଂସଦର କାର୍ଯ୍ୟକ୍ରମ ଆରମ୍ଭ ହୋଇଥାଏ । ହୁଏତ ପଚାଶ କିମ୍ବା ଅଧିକ ପ୍ରଶ୍ନ ଆଇପାରେ; ସେଗୁଡ଼ିକ ମଧ୍ୟରୁ କେତେକ ଗୁରୁତ୍ୱପୂର୍ଣ୍ଣ ଥିବାବେଳେ ଆଉ କେତେକ ଗୁରୁତ୍ୱପୂର୍ଣ୍ଣ ନୁହେଁ । ମନ୍ତ୍ରୀମାନେ ଏହି ପ୍ରଶ୍ନ ଗୁଡିକର ପ୍ରସ୍ତୁତ ଉତ୍ତର ଦେଇଥାଆନ୍ତି । କୌଣସି ପ୍ରଶ୍ନ ଗୁରୁତ୍ୱପୂର୍ଣ୍ଣ ଥିଲେ ମନ୍ତ୍ରୀଙ୍କ ଉତ୍ତର ପରେ ସଭ୍ୟମାନେ ଅତିରିକ୍ତ ପ୍ରଶ୍ନମାନ ପଚାରି ପାରନ୍ତି । ସେପରିସ୍ଥଳେ ମନ୍ତ୍ରୀଙ୍କ ପରାମର୍ଶଦାତାମାନେ ଅତିରିକ୍ତ ପ୍ରଶ୍ନ ସମ୍ବନ୍ଧରେ କିଛି ଭାବି ନ ଥିଲେ ମନ୍ତ୍ରୀଙ୍କ ବିନା ସାହାଯ୍ୟରେ ଉତ୍ତର ଦେବାକୁ ପଡ଼ିଥାଏ । ଏହା ପଇଁଚାଳିଶ ମିନିଟ ପର୍ଯ୍ୟନ୍ତ ଚାଲେ ଓ ଏହାପରେ ଦୈନନ୍ଦିନ କାର୍ଯ୍ୟ ଆରମ୍ଭ ହୁଏ । କୌଣସି ପ୍ରସ୍ତାବ କିମ୍ବା ବିଧେୟକ ଆଗତ କରିବା ପାଇଁ ବେସରକାରୀ ସଭ୍ୟମାନଙ୍କୁ ବେଳେ ବେଳେ ସୁଯୋଗ ଦିଆଯାଇ ଥାଏ । ଗୃହର ଅଧିକାଂଶ ସମୟ ମନ୍ତ୍ରୀମାନଙ୍କ ଦ୍ୱାରା ଆଗତ ପ୍ରସ୍ତାବ କିମ୍ବା ବିଧେୟକ ଆଲୋଚନା କରିବାରେ ବ୍ୟସ୍ତ ହୋଇଥାଏ । ଏହା ଦ୍ୱାରା ସରକାରଙ୍କୁ ସମାଲୋଚନା କରିବା ପାଇଁ ବିରୋଧୀ ଦଳକୁ ସୁଯୋଗ ଦିଆଯାଇ ଥାଏ ଏବଂ ସରକାର ମଧ୍ୟ ନିଜକୁ ପ୍ରତିରକ୍ଷା କରିବା ପାଇଁ ସୁଯୋଗ ପାଇଥାନ୍ତି । ଏଠାରେ ଗୋଟିଏ ଉଦାହରଣ ଦିଆଯାଇ ପାରେ । ଏକ ଜାତୀୟ ସ୍ୱାସ୍ଥ୍ୟ ବିଷୟକ ବିଧେୟକର ଦ୍ୱିତୀୟ ପାଠ ସମୟରେ ଜାତୀୟ ସ୍ୱାସ୍ଥ୍ୟ ଯୋଜନା ସମ୍ବନ୍ଧରେ ସରକାରୀ—ନୀତି ଆଲୋଚନା କରାଯାଇ ଥାଏ । ସେହିପରି ଶିକ୍ଷା ମନ୍ତ୍ରଣାଳୟ ପାଇଁ ସାଢ଼େ ସାତକୋଟି ପାଉଣ୍ଡ ଅନୁଦାନ ମଞ୍ଜୁର କରିବାକୁ ଥିଲେ ସରକାରଙ୍କ ଶିକ୍ଷା-ସମ୍ବନ୍ଧୀୟ ନୀତି ଆଲୋଚିତ ହୋଇଥାଏ । ବାସ୍ତବିକ କେଉଁ କେଉଁ ପ୍ରସ୍ତାବମାନ ଆଗତ କରାଯିବ ତାହା ସଚେତକମାନଙ୍କ ସହିତ ସାପ୍ତାହିକ ଆଲୋଚନା ଦ୍ୱାରା ନିର୍ଣ୍ଣିତ କରାଯାଇ ଥାଏ । ଏହା-ଦ୍ୱାରା ସରକାର ନିଜ ନୀତିକୁ ସମର୍ଥନ କରିବା ବେଳେ ବିରୋଧୀଦଳ ସମାଲୋଚନା କରିଥାନ୍ତି । ସରକାର କୌଣସି ବୈଧାନିକ ବ୍ୟବସ୍ଥା କିମ୍ବା ଅର୍ଥ ଅନୁଦାନ ବ୍ୟବସ୍ଥାକୁ ଗୃହୀତ କରାଇବାକୁ

ରାଜି ଥିଲେ ଓ ବିରୋଧୀଦଳର ସେଗୁଡ଼ିକ ବିଷୟରେ କୌଣସି ଆପତ୍ତି ବା ରାଜନୈତିକ ଅଭିସନ୍ଧି ନ ଥିଲେ, ବିନା ଆଲୋଚନାରେ ତାହା ଗୃହୀତ ହୋଇଥାଏ । କମନ୍ସ୍‌ସଭାର ଆଇନ ପ୍ରଣୟନ ସଂସ୍ଥାର ଏକ ଅଙ୍ଗ ଓ ଏହା ଜାତୀୟ ଅର୍ଥ ଦାୟିତ୍ୱରେ ଥିଲେ ମଧ୍ୟ ଏହାର ଅଧିକାଂଶ ସମୟ ରାଜନୈତିକ ଆଲୋଚନାରେ କଟିଥାଏ । ଫିଜି କିମ୍ବା ସିସିଲିସ୍‌ର ଅଧିବାସୀମାନେ ଅଭିଯୋଗ କରି ପାରନ୍ତି ଯେ, ସଂସଦମାନଙ୍କର ଜନନୀ ( The mother of Parliaments ) ସେମାନଙ୍କ ପାଇଁ ଖୁବ୍ ଅଳ୍ପ ସମୟ ଦିଏ । କେବଳ ସରକାର କୌଣସି ବିଷୟ କାର୍ଯ୍ୟକାରୀ କରିବାକୁ ରାଜି ଥିଲେ ଓ ବିରୋଧୀଦଳ ତାହାକୁ ସମାଲୋଚନା କରିବାକୁ ଇଚ୍ଛା ପ୍ରକାଶ କଲେ ସେଥିପାଇଁ ଅଧିକ ସମୟ ଦିଆଯାଇ ଥାଏ । ଯଦି କୌଣସି ଉପନିବେଶର ବ୍ୟାପାର ଗୁଡ଼ିକ କେବେ ଆଲୋଚିତ ହୋଇ ନ ଥାଏ, ସେହି ଉପନିବେଶର ଶାସନ କୌଣସି ରାଜନୈତିକ ଦ୍ୱନ୍ଦ୍ୱର ସମ୍ମୁଖୀନ ହୋଇ ନ ଥିବା ଏହାର କାରଣ ହୋଇପାରେ ।

ସପ୍ତାହଯାକର କାର୍ଯ୍ୟକ୍ରମ ନିର୍ଦ୍ଧାରିତ ହୋଇ ସାରିଲା ପରେ ହଠାତ୍ ବେଳେବେଳେ ବିବାଦ ଦେଖାଦେଇଥାଏ । ସେପରି ପରିସ୍ଥିତି ସମ୍ଭାଳିବା ପାଇଁ ସ୍ଥାୟୀ ନିର୍ଦ୍ଦେଶାବଳୀ ରହିଛି । ଜଣେ ସଦସ୍ୟ କୌଣସି ସାଧାରଣ ଗୁରୁତ୍ୱ-ପୂର୍ଣ୍ଣ ବିଷୟ ଗୃହରେ ଉପସ୍ଥାପିତ କରିବାକୁ ଚାହିଁଲେ ସେ ଗୋଟିଏ ମୁଲତବୀ ପ୍ରସ୍ତାବ ଆଗତ କରନ୍ତି ଏବଂ ଅଧ୍ୟକ୍ଷ ଏଥି ସହିତ ଏକମତ ହେଲେ ଓ ଚାଳିଶି ଜଣ ସଭ୍ୟ ଏହି ପ୍ରସ୍ତାବକୁ ସମର୍ଥନ ଜଣାଇଲେ, ପ୍ରସ୍ତାବଟି ସେହି ଦିନ ସନ୍ଧ୍ୟାରେ ଆଲୋଚିତ ହୁଏ । କର୍ମଚାରୀମାନେ ଖୁବ୍ ଶୀଘ୍ର ହ୍ୱାଇଟ୍ ହଲକୁ ଯାଇ ସେଠାରୁ ଫାଇଲ୍ ଆଣି ମନ୍ତ୍ରୀଙ୍କ ପାଇଁ ଏକ ସଂକ୍ଷିପ୍ତ ଟିପ୍‌ପଣୀ ପ୍ରସ୍ତୁତ କରି ଦିଅନ୍ତି । ଯଦି ସମ୍ପୃକ୍ତ ସମସ୍ୟାଟି ବେଲଫାଷ୍ଟ କିମ୍ବା ବାସୁଟୋଲାଣ୍ଡରେ ଘଟିଥାଏ, ତେବେ ଟେଲିଫୋନ୍ ଓ ଟେଲିଗ୍ରାମ୍ ଦ୍ୱାରା ସମସ୍ତ ବିଷୟ ଜାଣିବାକୁ ଚେଷ୍ଟା କରାଯାଇ ଥାଏ । ଅଳ୍ପ ସମୟ ମଧ୍ୟରେ ସରକାରଙ୍କୁ ସମାଲୋଚନାର ସମ୍ମୁଖୀନ ହେବାକୁ ପଡ଼ୁଥିବାରୁ, ଏଥିପାଇଁ ଏହାର ଯଥାଶୀଘ୍ର ବ୍ୟବସ୍ଥା କରାଯାଇଥାଏ ।

କେବଳ ଯେ ଲକ୍ଷ ଲକ୍ଷ ଲୋକ କିମ୍ବା ଲକ୍ଷ ଲକ୍ଷ ପାଉଣ୍ଡ ସମ୍ପୃକ୍ତ ଥିବା ଜାତୀୟ ବା ଆନ୍ତର୍ଜାତିକ ସମସ୍ୟା ସଂସଦରେ ଆଲୋଚିତ ହୁଏ, ତାହା ନୁହେଁ, ଜନସାଧାରଣଙ୍କ ସ୍ୱାଧୀନତାକୁ ରକ୍ଷା କରୁଥିବାରୁ କମନ୍ସ୍‌ସଭା ଗର୍ବ ଅନୁଭବ କରିଥାଏ । କୋଡ଼ିଏ ସିଲିଂ ଦେୟ ଦେବାକୁ ମନା କରିଦେବା ଫଳରେ ଜନ୍ ହ୍ୟାମ୍ପଡ଼େନ୍ ଆମ୍ଭମାନଙ୍କ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲେ । ହାଇଡ୍-ପାର୍କରେ କୌଣସି ନାରୀ କିଛି ଅସୁବିଧା ସୃଷ୍ଟି କରିବା କଥା ପୋଲିସ୍ ବିଶ୍ୱାସ କରୁଥିଲେ ଏହା ଉପରେ ଆଲୋଚନା କରାଯାଇପାରେ ଓ କେତେକ ସଦସ୍ୟ ପୋଲିସ୍‌ର କାର୍ଯ୍ୟ ପାଇଁ ଅନୁସନ୍ଧାନ କମିଶନ ଓ ରୟାଲ କମିଶନ ବସାଇବା ପାଇଁ ସୂଚନା ଦେଇ ପାରନ୍ତି । ମାଲ୍‌ଟାରେ ଜଣେ ବ୍ରିଟିଶ ନାଗରିକଙ୍କୁ ବୈଦେଶିକ ସରକାର

ଖରାପ ବ୍ୟବହାର ପ୍ରଦର୍ଶନ କଲେ ଏଥିପାଇଁ ସଂଯୁକ୍ତ ରାଜ୍ୟର ସରକାର ବ୍ୟତିବ୍ୟସ୍ତ ହୋଇ-ପାରୁ ଥିଲେ । ଏ ଭଳି ସମସ୍ୟାରେ ଲର୍ଡ ପାମରଷ୍ଟନ୍ ବହୁ ପ୍ରସିଦ୍ଧ ଭାଷଣ ଦେଇଥିଲେ । ସୌଭାଗ୍ୟ ବଶତଃ ଏପରି ପରିସ୍ଥିତିର ଆବଶ୍ୟକତା କମ୍ ଥିବାରୁ ଏହା ଖୁବ୍ କ୍ୱଚିତ ଦେଖା ଯାଇଥାଏ । ଯଦି ଜଣେ କର୍ମଚାରୀ କୌଣସି ଜଣେ ଅନାମଧେୟ ବ୍ୟକ୍ତିଙ୍କୁ ଅଟକାଇ ଥାନ୍ତି, ତେବେ ଏହା ଉପରେ ସଂସଦରେ ଆଲୋଚନା ହେବାର ସମ୍ଭାବନା ଥାଏ ଓ ଏହି ଆଲୋଚନାରେ କେତେକ ସଦସ୍ୟ ମାଗ୍ନା କାର୍ଟାରେ ଥିବା ସ୍ୱାଧୀନତା ବିଷୟ ଉଲ୍ଲେଖ କରି ପାରନ୍ତି । ସେତେବେଳେ ସମ୍ରାଟ୍ ଜନ୍ ମାଗ୍ନାକାର୍ଟାର ଗୁରୁତ୍ୱ ବୁଝି ନ ଥିଲେ ମଧ୍ୟ ଏବେ ତାହାର ଗୁରୁତ୍ୱ ଯଥେଷ୍ଟ ବେଶୀ । କମନ୍‌ସଭା ଉଭୟ ସରକାର ଓ ବିରୋଧୀ ଦଳକୁ ନେଇ ଗଠିତ ହୋଇଥିବାରୁ ଶ୍ରେଷ୍ଠ ବା ବଡ଼ କର୍ମଚାରୀମାନେ ଏଥି ପ୍ରତି ସତର୍କ ଥାଆନ୍ତି । ସେମାନଙ୍କର କୌଣସି କାର୍ଯ୍ୟ ଉପରେ ବିସ୍ଫୋରଣ ଘଟି ସାରା ବିଶ୍ୱକୁ ଚମକିତ କରି ଦେଇପାରେ । ଆବଶ୍ୟକତା ଦେଖା ନ ଦେଲେ ଓ ସଂସଦ ଦ୍ୱାରା ଅନୁମୋଦିତ ନ ହେଲେ ବ୍ରିଟେନ୍‌ରେ ବନ୍ଦୀ ଶିବିର ସ୍ଥାପିତ ହୁଏ ନାହିଁ । ମାଗ୍ନାକାର୍ଟାର ବ୍ୟବସ୍ଥା ଅନୁସାରେ "କୌଣସି ବ୍ୟକ୍ତିର ସ୍ୱାଧୀନତାକୁ ବାଧାଦେଇ ତାକୁ ବନ୍ଦୀ କରାଯାଇ ପାରିବ ନାହିଁ ··· ··· କୌଣସି ଆଇନ ଭଙ୍ଗ ନ କଲେ ଓ କୌଣସି ନ୍ୟାୟିକ ସଂସ୍ଥା ଦ୍ୱାରା ଦୋଷୀ ସାବ୍ୟସ୍ତ ନ ହେଲେ କାହାକୁ ଦଣ୍ଡ ଦିଆଯାଇ ପାରିବ ନାହିଁ" । "ସ୍ୱାଧୀନ ବ୍ୟକ୍ତି" କେବଳ ନ୍ୟାୟାଳୟକୁ ଆବେଦନ ନ କରି ହୁଏତ ସଂସଦକୁ ଓ ତାପରେ ଜନସାଧାରଣଙ୍କୁ ଆବେଦନ କରିପାରେ ।

ପ୍ରଜାମାନଙ୍କ ସ୍ୱାଧୀନତା ସମ୍ପର୍କରେ ଥିବା ସଂସଦୀୟ ନିୟନ୍ତ୍ରଣ ନିଶ୍ଚୟ ପ୍ରଶଂସନୀୟ, କିନ୍ତୁ ସାଧାରଣ ସରକାରୀକାଳ ନିୟନ୍ତ୍ରଣରେ ଏହା ପରିଲକ୍ଷିତ ହୋଇ ନ ଥାଏ । ଜଣେ ସରକାରୀ କର୍ମଚାରୀ ସର୍ବଦା ସଂସଦୀୟ ସମାଲୋଚନା ପ୍ରତି ଭୟ ରଖି କାର୍ଯ୍ୟ କରିଥାଏ; ଯଦି ସେ ବିଶେଷ ଉଦ୍‌ବିଗ୍ନ ହୋଇ ନ ଥାଏ ତଥାପି ତା ମନ୍ତ୍ରୀ ପାଇଁ ସେ ବିଶେଷ ଉଦ୍‌ବିଗ୍ନ ଥାଏ । ପ୍ରଶ୍ନଗୁଡ଼ିକର ଉତ୍ତର ଓ ସର୍ବସାଧାରଣ ଭାଷଣର ସାରାଂଶ ପ୍ରସ୍ତୁତ କରିବା ପାଇଁ ବହୁ ସମୟ ବ୍ୟୟ କରାଯାଇ ଥାଏ । ପ୍ରତ୍ୟେକ କାର୍ଯ୍ୟର ଯଥାର୍ଥତା ଦର୍ଶାଇବା ପାଇଁ ଲିଖିତ ଭାବରେ ନିଷ୍ପତ୍ତି ଗୃହୀତ ହେବା ଉଚିତ । କୌଣସି ଜିନିଷ ଭୁଲ୍ ହେଲେ ସଂସଦ ସମାଲୋଚନା କରିପାରେ । ଏଥିପାଇଁ ଆନୁଷ୍ଠାନିକ ପଦ୍ଧତି ଅନୁସରଣ କରାଯାଇ ଥାଏ । ଆନୁଷ୍ଠାନିକ ପଦ୍ଧତି ଫଳରେ ଯେଉଁ "ନାଲିଫିତା" ସୃଷ୍ଟି ହୋଇ ଥାଏ ତାହାକୁ ସଂସଦ ସନ୍ଦେହ ଚକ୍ଷୁରେ ଦେଖିଥାଏ । ଅର୍ଥନୈତିକ ବ୍ୟାପାରରେ ପୁଙ୍ଖାନୁପୁଙ୍ଖ ନିୟମ ଅନୁସରଣ କରାଯାଇଥାଏ । ପଇସା ଖାଇଦିବାର ସମ୍ଭାବନା ଥିଲେ ସଂପୃକ୍ତ ଅଫିସରଙ୍କ ସହିତ ତାଙ୍କ ଉପରିସ୍ଥ ଅଫିସରଙ୍କୁ ମଧ୍ୟ ଦାୟୀ କରାଯାଇଥାଏ । ସଂସଦୀୟ ସମାଲୋଚନା ଫଳରେ ସାଧାରଣ ପ୍ରଶାସନରେ ଆନୁଷ୍ଠାନିକତା ଓ ବିଳମ୍ବ ଦେଖା ଦେଇଥାଏ । ଉଦାହରଣ ସ୍ୱରୂପ, ବାଣିଜ୍ୟ ଓ ଶିଳ୍ପ କ୍ଷେତ୍ରରେ ଏହାର ପ୍ରୟୋଗ ଅନୁପଯୁକ୍ତ ବୋଲି ମନେ କରାଯାଇଥାଏ । କମନ୍‌ସସଭା

ରାଜନୈତିକ ଆଲୋଚନା ପାଇଁ ଏକ ପ୍ରଶସ୍ତ କ୍ଷେତ୍ର ଓ କମନ୍‌ସସଭାର ଏହି କାର୍ଯ୍ୟ ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ । ଏହାର ଆଉ କେତେକ କମ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଅଛି । ଏହା ବିଧାନମଣ୍ଡଳର ଏକ ଅଂଶ । ବ୍ରିଟିଶ୍ ବିଧାୟିକା ବ୍ୟବସ୍ଥା ଦୀର୍ଘ ଓ ଖିଦ୍ ପ୍ରାଞ୍ଜଳ । କେବଳ ସାଧାରଣ ନୀତି ନିର୍ଦ୍ଧାରଣ କରିବା ବିଧାୟିକା ସଂସ୍ଥାର କାର୍ଯ୍ୟ; ତାହାକୁ କାର୍ଯ୍ୟପାଳନ ଅଙ୍ଗ ପୁଙ୍ଖାନୁପୁଙ୍ଖ ଭାବରେ ପ୍ରଶାସକୀୟ ଆଦେଶ ନାମା ଦ୍ୱାରା କାର୍ଯ୍ୟକାରୀ କରିବେ ବୋଲି ବିଧାୟିକା ସଂସ୍ଥା ଆଶା କରିଥାଏ । ବିଧେୟକ ନିର୍ଦ୍ଦେଶ ବଳରେ ନିୟମାବଳୀ ପ୍ରଣୟନ କରିବା ବ୍ୟବସ୍ଥା ଷ୍ଟୁଆର୍ଟ ରାଜତ୍ୱ କାଳରେ ସନ୍ଦେହ ଜାତ କରିଥିଲି । ସଂସଦ ଓ ବ୍ରିଟେନର ଜନସାଧାରଣ ଏହା ଦ୍ୱାରା ଲାଭବାନ ହୋଇଥିଲେ । ଏ କଥା ସତ୍ୟ ଯେ ଆକାର ଓ ଗୁଣରେ ଆଇନ ପ୍ରଣୟନ ବ୍ୟବସ୍ଥାର ବୃଦ୍ଧି ଘଟିଅଛି । ନିୟମାବଳୀ ପ୍ରଣୟନ ପାଇଁ ନିର୍ଦ୍ଦେଶନାମା ଦେଇ ସଂସଦ ନିଜ କ୍ଷମତା ଆଂଶିକ ଭାବରେ ହସ୍ତାନ୍ତର କରିଥାଏ । ତଥାପି ଏଥିପାଇଁ ସାଧାରଣ ସାମ୍ବିଧାନିକ କ୍ଷମତା କିଛି ନାହିଁ । ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପାଇଁ ନିର୍ଦ୍ଦିଷ୍ଟ ଦାୟିତ୍ୱ ଦିଆଯାଇଥାଏ । ଏହାର ଉଦ୍ଦେଶ୍ୟ ମଧ୍ୟ ସ୍ପଷ୍ଟଭାବରେ କୁହାଯାଇଥାଏ । ଗୋଟିଏ ବିଧେୟକ ଶହେ କିମ୍ବା ଦୁଇଶହ ପୃଷ୍ଠା ହୋଇପାରେ ଓ ଏଥିରେ ଥିବା ପ୍ରତ୍ୟେକ ଶବ୍ଦକୁ ସଂସଦ ନିଶ୍ଚିତ ଭାବରେ ଅନୁମୋଦନ କରିଥାଏ ।

ସାଧାରଣତଃ ବିଧେୟକର "ପ୍ରଥମ-ପାଠ" ସମୟରେ ଏହାର ଦୀର୍ଘ ଶିରୋନାମା ପାଠ କରାଯାଇଥାଏ । ଏହା ଉପରେ କୌଣସି ଆଲୋଚନା ହୋଇ ନ ଥାଏ । କେବଳ ଏହାକୁ ଛପାଇବା ପାଇଁ ଗୃହ ଅନୁମୋଦନ ଦେଇଥାଏ । "ଦ୍ୱିତୀୟ ପାଠ" ସମୟରେ ଏଥିରେ ନିହିତ ଥିବା ନୀତି ବିଷୟରେ ଆଲୋଚନା କରାଯାଇଥାଏ । ଏହାପରେ ପୁଙ୍ଖାନୁପୁଙ୍ଖ ଅନୁଧ୍ୟାନ ପାଇଁ ଏହାକୁ ଏକ ସ୍ଥାୟୀ ସମିତିକୁ ଦିଆଯାଇଥାଏ । ଏହାକୁ ବିଭିନ୍ନ ଧାରାରେ ବିଭକ୍ତ କରାଯାଇ ଥାଏ ଓ ପ୍ରତ୍ୟେକ ଧାରାକୁ ଭିନ୍ନ ଭିନ୍ନ ଭାବରେ ପ୍ରସ୍ତାବ ଆକାରରେ ଆଗତ କରାଯାଇଥାଏ । ସେହି ଧାରାଟି ବିଧେୟକର ଗୋଟିଏ ଅଂଶ ବୋଲି ଜଣେ ସଦସ୍ୟ କହି ପାରନ୍ତି ଓ ଏଥିପାଇଁ ସେ ସଂଶୋଧନ ପ୍ରସ୍ତାବ ମଧ୍ୟ ଆଗତ କରିପାରନ୍ତି । ସଂଶୋଧନ ପ୍ରସ୍ତାବ-ଗୁଡ଼ିକର ଆଲୋଚନା ଶେଷ ହେବା ପରେ ସଂପୃକ୍ତ ଧାରା ସମ୍ବନ୍ଧରେ ମତାମତ ନିଆଯାଇ ଥାଏ । ଏହି ପ୍ରଣାଳୀ କେତେ ସପ୍ତାହ ଲାଗିପାରେ । ସମିତି ଦ୍ୱାରା ବିଧେୟକଟି ସ୍ୱୀକୃତ ହେଲା ପରେ, ଏହା ଗୃହକୁ ଜଣାଇ ଦିଆଯାଇଥାଏ । ଏହା ପରେ ବିଧେୟକ ସମ୍ବନ୍ଧରେ ବିଭିନ୍ନ ସଂଶୋଧନ ପ୍ରସ୍ତାବମାନ ଆଗତ କରାଯାଇପାରେ । ଅବଶ୍ୟ ଆଲୋଚନା ସ୍ତରରେ କୌଣସି ଧାରା ସଂଶୋଧିତ ହୋଇ ନ ଥିଲେ ତାହା ଉପରେ ଭିନ୍ନ ଭାବରେ ମତାମତ ନିଆଯାଇ ନ ଥାଏ । ପରିଶେଷରେ ବିଧେୟକର "ତୃତୀୟ-ପାଠ" ସମୟରେ ସଂଶୋଧିତ ହୋଇଥିବା ସାଧାରଣନୀତି ସମ୍ବନ୍ଧରେ ଆଲୋଚନା କରାଯାଇଥାଏ । ବିଧେୟକଟିରେ ଆର୍ଥିକ ଧାରାମାନ ଥିଲେ ଏହାକୁ ଆଉ ଦୁଇଟି ଅଧିକ ସ୍ତର ଦେଇ ଯିବାକୁ ପଡ଼ିଥାଏ । ଅଧିକାଂଶ ବିଧେୟକରେ ଆର୍ଥିକ ଧାରାମାନ ଥାଏ । ଏହି ବ୍ୟବସ୍ଥା "ଦ୍ୱିତୀୟପାଠ"

ପୂର୍ବରୁ କମ୍ବା ପରେ କରାଯାଇପାରେ । ଏହି ବ୍ୟବସ୍ଥା ଫଳରେ ଏକ ଆର୍ଥିକ ପ୍ରସ୍ତାବମାନ ଆଗତ କରାଯାଇ ତାହା "ସମ୍ପୂର୍ଣ୍ଣ ସଦନ ସମିତି" ( The Committee of the whole House )କୁ ଆଲୋଚନା ପାଇଁ ପଠାଇ ଦିଆଯାଏ । ( ଏହି ସମିତିରେ ଅଧ୍ୟକ୍ଷଙ୍କ ବ୍ୟତୀତ ଗୃହର ଅନ୍ୟ ସମସ୍ତ ସଭ୍ୟ ଥାଆନ୍ତି ) ଏହି ସମିତି ଗୃହକୁ ଏହାର ରିପୋର୍ଟ ପ୍ରଦାନ କରିଥାଏ ।

ଯେତେଦୂର ସମ୍ଭବ କମନ୍ସ ସଭା ସର୍ବସାଧାରଣ ଅର୍ଥ ବ୍ୟବସ୍ଥାକୁ ବିଶେଷଭାବେ ନିୟନ୍ତ୍ରଣ କରେ । ଏହି ସଭାର ଗଠନ ଓ ପ୍ରଣାଳୀ ଏଥିପାଇଁ ବିଶେଷ ଉପଯୁକ୍ତ ନୁହେଁ । ବାସ୍ତବିକ ଏହି ସଭା ସାଧାରଣ ଖର୍ଚ୍ଚ ଅଟକଳ ବିଚାର କଲାବେଳେ ସରକାରୀ ନୀତି କାର୍ଯ୍ୟକାରୀ କରିବା ପାଇଁ ପ୍ରସ୍ତାବିତ ଆର୍ଥିକ ବ୍ୟବସ୍ଥା ସମ୍ବନ୍ଧରେ ଆଲୋଚନା କରିଥାଏ । ଗୋଟିଏ ଯାଞ୍ଚ କମିଟି ଦ୍ୱାରା ପ୍ରତିବର୍ଷ କେତେକ ଅଟକଳକୁ ଅନୁଧ୍ୟାନ କରାଯାଇଥାଏ । ପୁନଶ୍ଚ ସମୀକ୍ଷା କରାଯାଇଥିବା ହିସାବ ଓ ତତ୍ସମ୍ବନ୍ଧୀୟ ହିସାବ ରକ୍ଷକ ଓ ମହାସମୀକ୍ଷକଙ୍କ ବିବରଣୀ ସାଧାରଣ ହିସାବ ସମୀକ୍ଷା ସମିତିକୁ ପ୍ରତିବର୍ଷ ଦିଆଯାଇଥାଏ । ହିସାବରକ୍ଷକ ଓ ମହା-ସମୀକ୍ଷକ ଗୋଟିଏ ସ୍ୱାଧୀନ ସଂସ୍ଥା । ଏହା କୌଣସି ମନ୍ତ୍ରୀମାନଙ୍କ ନିୟନ୍ତ୍ରଣରେ ନ ଥାଏ । ହିସାବରକ୍ଷକ ଓ ମହାସମୀକ୍ଷକ ସଂସଦର ଅନୁମୋଦନ ଅନୁସାରେ ସାଧାରଣ ଅର୍ଥ ଖର୍ଚ୍ଚ କରିବା ପାଇଁ ନିର୍ଦ୍ଦେଶ ଦେଇଥାନ୍ତି ଓ ସଂସଦର ମଞ୍ଜୁରି ଅନୁସାରେ ଅର୍ଥ ଖର୍ଚ୍ଚ ହୋଇଛି କି ନାହିଁ ତାହା ସମୀକ୍ଷା କରି ଦେଖି ଥାଆନ୍ତି । ସେ କମନ୍ସ ସଭାକୁ ସିଧାସଳଖ ନିଜ ବିବରଣ ଦେଇଥାଆନ୍ତି । ସାଧାରଣ ହିସାବ ସମୀକ୍ଷା ସମିତି ଏହାକୁ ଠିକ୍‌ଭାବରେ ଅନୁଧ୍ୟାନ କରିଥାଆନ୍ତି ଓ ଯାହା ଦୋଷ ତ୍ରୁଟି ଥାଏ ତାହା ଦର୍ଶାଇ ଥାଆନ୍ତି ।

କମନ୍ସ ସଭା ଓ ଲର୍ଡସଭାରେ ବେସରକାରୀ ବିଧେୟକ ଓ ଆଇନଗତ ନିର୍ଦ୍ଦେଶନାମା ବିଷୟରେ ସମିତି ଗୁଡ଼ିକର କର୍ତ୍ତବ୍ୟ ବିଷୟ ପାସୋର ଦେଇହେବ ନାହିଁ । ଏହି ସମିତି-ମାନଙ୍କରେ କାର୍ଯ୍ୟ କରିବା ପାଇଁ ବେଳେ ବେଳେ ଯଥେଷ୍ଟ ସଭ୍ୟ ମିଳନ୍ତି ନାହିଁ । ପୁନଶ୍ଚ, କୌଣସି ସଭାର କାର୍ଯ୍ୟ ସମୟକୁ କ୍ଷୁଣ୍ଣ ନ କରି ସମିତି ନିଜ ଆଲୋଚନା ପାଇଁ ସମୟ ଧାର୍ଯ୍ୟ କରିବା ସର୍ବଦା ସହଜ ହୋଇପାରେ ନାହିଁ ।

# ପଞ୍ଚମ ଅଧ୍ୟାୟ

## ମହାମାନ୍ୟା ରାଣୀଙ୍କ ଶାସନ

## ( Her Majesty's Government )

**କ୍ଷମତା ହସ୍ତାନ୍ତର ( The transfer of Power ) :**

"ମହାମାନ୍ୟା ରାଣୀଙ୍କ ଶାସନ" ଏକ ଆଇନ-ସମ୍ମତ ନାମକରଣ ନୁହେଁ । କେତେକ ପରିସ୍ଥିତିରେ "ସଂଯୁକ୍ତ ରାଜ୍ୟ-ସରକାର" ପଦ କିମ୍ବା ଏତାଦୃଶ ଅନ୍ୟାନ୍ୟ ପଦ ଆଇନାନୁମୋଦିତ ଦଲିଲରେ ବ୍ୟବହାର କଲାବେଳେ ତାର ପ୍ରକୃତ ଅର୍ଥ ବାହାର କରିବା ପାଇଁ ନ୍ୟାୟାଳୟ ଗୁଡ଼ିକ ପକ୍ଷରେ କଷ୍ଟକର ହୋଇଥାଏ । ନୀତି ଦୃଷ୍ଟିରୁ ସରକାରଙ୍କ ସବୁ କ୍ଷମତା ରାଣୀଙ୍କଠାରେ ନ୍ୟସ୍ତ ହୋଇଛି । ସେ ନିଜ କୂଟନୀତିଜ୍ଞ-ମାନଙ୍କୁ ବିଦେଶକୁ ପଠାଇଥାନ୍ତି ଓ ବିଦେଶୀ କୂଟନୀତିଜ୍ଞମାନଙ୍କ ପରିଚୟ ପତ୍ର ଗ୍ରହଣ ମଧ୍ୟ କରିଥାଆନ୍ତି । ସେ ଅନ୍ୟାନ୍ୟ ରାଷ୍ଟ୍ରମୁଖ୍ୟମାନଙ୍କ ସହିତ ସମ୍ପର୍କ ସ୍ଥାପନ କରିଥାନ୍ତି, ସନ୍ଧି ସ୍ୱାକ୍ଷର କରନ୍ତି, ଯୁଦ୍ଧ ଘୋଷଣା କିମ୍ବା ଶାନ୍ତି ପ୍ରତିଷ୍ଠା କରନ୍ତି ଏବଂ ନୌସେନା, ସ୍ଥଳସେନା ଓ ବାୟୁସେନା ବାହିନୀର ଅଧ୍ୟକ୍ଷ ରୂପେ ରହନ୍ତି । ସମୁଦ୍ରପାରି ଡୋମିନିୟନ୍ ଗୁଡ଼ିକରେ ଶାସନ ଚଳାଇବା ପାଇଁ ସେ ଗଭର୍ଣ୍ଣର-ଜେନେରାଲ୍ ଓ ଗଭର୍ଣ୍ଣରମାନଙ୍କୁ ନିଯୁକ୍ତ କରିଥାଆନ୍ତି । ସେ ବୈଦେଶିକ ବ୍ୟବସାୟ ନିୟନ୍ତ୍ରଣ କରନ୍ତି, ମୁଦ୍ରା ପ୍ରଚଳନ କରନ୍ତି ଏବଂ ଡାକ ଚଳାଚଳ ବ୍ୟବସ୍ଥା ମଧ୍ୟ କରିଥାଆନ୍ତି । ଏତଦ ବ୍ୟତୀତ ରାଣୀ ଏହି ତାଲିକା ବହିର୍ଭୂତ ଆହୁରି ଅନେକ କାର୍ଯ୍ୟ ସମ୍ପାଦନ କରିଥାନ୍ତି । ସଂସଦରେ ଲର୍ଡସଭା ଓ କମନ୍ସ ସଭାର ବିନା ପରାମର୍ଶରେ ରାଣୀ ଆଇନ ପ୍ରଣୟନ କରିପାରନ୍ତି ନାହିଁ । ପୁନଶ୍ଚ ସଂସଦୀୟ ଆଇନ ନ ଥିଲେ ସେ କର ନିର୍ଦ୍ଧାରଣ କରିପାରନ୍ତି ନାହିଁ ।

ଆଇନ ଦୃଷ୍ଟିରୁ ଦେଖିଲେ ବିଗତ ଶତାବ୍ଦୀରେ ଏହି ପରିସ୍ଥିତିରେ ପରିବର୍ତ୍ତନ ଘଟିଛି । ସାଧାରଣ ଭାବରେ କହିବାକୁ ଗଲେ ଗଣତାନ୍ତ୍ରିକ ଚିନ୍ତାଧାରାର ବିକାଶ ସଙ୍ଗେ ସଙ୍ଗେ

ରାଷ୍ଟ୍ରର କାର୍ଯ୍ୟ ପରସ୍ପର ସମ୍ପ୍ରସାରିତ ହୋଇଛି ଏବଂ ସେଗୁଡ଼ିକ ସମ୍ରାଟଙ୍କୁ ଅର୍ପଣ କରା ନ ଯାଇ ସଂସଦ ଦ୍ୱାରା ମନ୍ତ୍ରୀମାନଙ୍କୁ ଦିଆଯାଇଛି । ସୁତରାଂ ଶିକ୍ଷାସମ୍ବନ୍ଧୀୟ କ୍ଷମତା ରାଣୀଙ୍କୁ ଅର୍ପଣ କରା ନ ଯାଇ ଶିକ୍ଷାମନ୍ତ୍ରୀଙ୍କୁ ଦିଆଯାଇଛି । ରାସ୍ତାଗୁଡ଼ିକୁ ରାଣୀଙ୍କ ରାଜପଥ କୁହାଯାଉଥିଲେ ବି ଓ ଆଇନ ଦୃଷ୍ଟିରୁ ରାଣୀ ରାସ୍ତାଗୁଡ଼ିକର ମାଲିକ ହୋଇଥିଲେ ବି ଏତଦ୍‌ସମ୍ବନ୍ଧୀୟ ସବୁ କ୍ଷମତା ପରିବହନ ମନ୍ତ୍ରୀଙ୍କୁ ଦିଆଯାଇଛି । ସେହିପରି ସ୍ୱାସ୍ଥ୍ୟଶାସନ, ଗୃହ, ସହର ଓ ଗ୍ରାମ୍ୟଯୋଜନା, ଶ୍ରମ, କୃଷି ଇତ୍ୟାଦି ବିଷୟ ସଂପୃକ୍ତ ମନ୍ତ୍ରୀମାନଙ୍କ ହସ୍ତରେ ଅର୍ପଣ କରାଯାଇଛି । ଅବଶ୍ୟ କେତେକ ଆଇନାନୁମୋଦିତ କ୍ଷମତା ରାଣୀଙ୍କୁ ଦିଆଯାଇଛି । ରାଣୀଙ୍କଠାରେ କେତେକ ଆଇନସମ୍ମତ କ୍ଷମତା ନ୍ୟସ୍ତ ହୋଇଥିଲେ ମଧ୍ୟ ସରକାରଙ୍କର ଅଧିକାଂଶ କ୍ଷମତା ରାଣୀଙ୍କୁ ଅର୍ପଣ କରା ନ ଯାଇ ମନ୍ତ୍ରୀ, ନୌସେନା ପରିଷଦ, ସ୍ଥଳସେନା ପରିଷଦ ଓ ବାୟୁସେନା ପରିଷଦର ଲର୍ଡ଼ କମିସନ୍‌ର, ରାଜକୋଷର ଲର୍ଡ଼ କମିସନ୍‌ର, ଲର୍ଡ଼ ଚାନ୍‌ସେଲର୍, ବାଣିଜ୍ୟ ମଣ୍ଡଳର ଅଧ୍ୟକ୍ଷ ଓ ପୋଷ୍ଟମାଷ୍ଟର ଜେନେରାଲ୍‌ଙ୍କୁ ଦିଆଯାଇଛି । ଏହି ବ୍ୟକ୍ତି ଓ ସଂସ୍ଥାଗୁଡ଼ିକ ରାଣୀଙ୍କ ଦ୍ୱାରା ନିଯୁକ୍ତ ହୋଇଥିବାରୁ ସେମାନେ ରାଣୀଙ୍କ ତରଫରୁ କାର୍ଯ୍ୟ ସମ୍ପାଦନ କରି ଥାଆନ୍ତି । ସେମାନଙ୍କ କର୍ମଚାରୀମାନେ ରାଣୀଙ୍କ ସେବକ ଓ ସେମାନଙ୍କ ସମ୍ପତ୍ତି ରାଣୀଙ୍କ ସମ୍ପତ୍ତି ରୂପେ ବିବେଚିତ ହୋଇଥାଏ । ସେମାନେ ଯେଉଁ ଚୁକ୍ତି କରନ୍ତି ତାହା ରାଜ ସିଂହାସନ ତରଫରୁ କରାଯାଇଥାଏ ବୋଲି ଧରି ନିଆଯାଏ । ତଥାପି ସେହି କ୍ଷମତାଗୁଡ଼ିକ ରାଣୀଙ୍କ ବ୍ୟକ୍ତିଗତ କ୍ଷମତା ନୁହେଁ । ଉଦାହରଣ ସ୍ୱରୂପ, ସହର ଓ ଗ୍ରାମାଞ୍ଚଳର ଗୋଟିଏ ଯୋଜନା ଅନୁମୋଦିତ ହେଲେ, ଏହି ଅନୁମୋଦନର ଆନୁଷ୍ଠାନିକ ବିଜ୍ଞପ୍ତି ଜଣେ ସହାୟକ ସଚିବଙ୍କ ଦ୍ୱାରା ଜଣାଇ ଦିଆଯାଇଥାଏ । ଏହା ଜଣାଇଲା ବେଳେ, "ମୁଁ ଏହା ମହାମାନ୍ୟା ରାଣୀଙ୍କ ଆଦେଶ ବଳରେ କରୁଛି ବୋଲି" ନ କହି "ମୁଁ ଏହା ମନ୍ତ୍ରୀଙ୍କ ନିର୍ଦ୍ଦେଶ ଅନୁସାରେ କରୁଛି" ସହାୟକ ସଚିବ ଜଣକେ ଲେଖନ୍ତି । ସଂସଦର ଆଇନ ଅନୁସାରେ ଆଇନଗତ କ୍ଷମତା ମନ୍ତ୍ରୀଙ୍କଠାରେ ନ୍ୟସ୍ତ ଥିବାରୁ ସହାୟକ ସଚିବ ଜଣକେ ରାଣୀଙ୍କ ନାମରେ କାର୍ଯ୍ୟ ନ କରି ମନ୍ତ୍ରୀଙ୍କ ନାମରେ କାର୍ଯ୍ୟ କରିଥାଆନ୍ତି ।

ସମସ୍ତ ପୁରୁଣା କ୍ଷମତା ରାଣୀଙ୍କଠାରେ ଓ ସମସ୍ତ ନୂତନ କ୍ଷମତା ମନ୍ତ୍ରୀଙ୍କଠାରେ ନ୍ୟସ୍ତ ଅଛି ବୋଲି ଏଥିରୁ ସୂଚିତ ହୁଏ ନାହିଁ । ସାଧାରଣ ଭାବରେ କହିବାକୁଗଲେ କୌଣସି ପୁରାତନ କ୍ଷମତାର ଗୁରୁତ୍ୱ ନ ଥିଲେ ନୂତନ ଆଇନ ଫଳରେ ତାହାର ଗୁରୁତ୍ୱ ହ୍ରାସ ପାଇଥାଏ । ଯଦି କୌଣସି ନୂତନ କ୍ଷମତାର ବିଶେଷ ସାମ୍ବିଧାନିକ ଗୁରୁତ୍ୱ ଥାଏ, ତେବେ ତାହା ରାଣୀଙ୍କଠାରେ ନ୍ୟସ୍ତ ହୁଏ । ଉଦାହରଣସ୍ୱରୂପ, ରାଜକୀୟ ବାୟୁସେନା ବାହିନୀ ଗୋଟିଏ ନୂତନ ସୃଷ୍ଟି । ଏହା ସ୍ଥଳ ସେନାବାହିନୀ ସହିତ ମିଶି କରି ଥାଏ ଏବଂ ରାଣୀ ଏହାକୁ ନିର୍ଦ୍ଦେଶ ଦେଇଥାଆନ୍ତି । ରାଣୀ ଏବଂ ଏହାର ଅଫିସର ଓ କର୍ମଚାରୀମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସମ୍ପର୍କ ରହିଥାଏ । ଏପରିକି ଗୋଟିଏ ଉପନିବେଶ ଆଇନାନୁମୋଦିତ କ୍ଷମତା ଦ୍ୱାରା ଶାସିତ ହେଉଥିଲେ ମଧ୍ୟ ଏହାର ସମ୍ବିଧାନ, ରାଣୀ କିମ୍ବା "ପରିଷଦରେ ରାଣୀଙ୍କ" ନିର୍ଦ୍ଦେଶ

ଅନୁସାରେ କାର୍ଯ୍ୟକାରୀ ହୁଏ । ଗତ ଯୁଦ୍ଧ ସମୟରେ ସଂସଦୀୟ ଆଇନଅନୁସାରେ ଜରୁରୀ-କାଳୀନ କ୍ଷମତା ପ୍ରୟୋଗ କରିବାକୁ ରାଜାଙ୍କ ପରିଷଦକୁ କ୍ଷମତା ଦିଆଯାଇଥିଲା । ଏହି ପରିଷଦ ବିଭିନ୍ନ ଆଦେଶନାମା ଜାରି କରୁଥିଲା ଓ ଏ ଆଦେଶନାମା ଗୁଡ଼ିକ ବିଭିନ୍ନ ବିଧିନିୟମ ଜାରି କରିବା ପାଇଁ ମନ୍ତ୍ରୀମାନଙ୍କୁ କ୍ଷମତା ଦେଉଥିଲା । ପରିଷଦୀୟ ନିର୍ଦ୍ଦେଶନାମା-ଗୁଡ଼ିକର ଅଧିକ ସାମ୍ବିଧାନିକ ଗୁରୁତ୍ୱଥିବା ସ୍ଥଳେ ବିଧିନିୟମଗୁଡ଼ିକର ଏତେ ଗୁରୁତ୍ୱ ନ ଥାଏ ।

"ରାଣୀ ହିଁ କାର୍ଯ୍ୟ ପାଳିକା" ବୋଲି ଯେଉଁ ବିବୃତି ଦିଆଯାଇଥାଏ ତାହା ସମ୍ପୂର୍ଣ୍ଣ ସତ୍ୟ ନୁହେଁ । ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜା ପ୍ରକୃତରେ ଦେଶକୁ ଶାସନ କରୁଥିଲେ । ଅବଶ୍ୟ ସେ ଆଇନ ଅନୁସାରେ ଶାସନ କରୁଥିଲେ ଓ ଆଇନକୁ ପରିବର୍ତ୍ତନ କରିବା କ୍ଷମତା କେବଳ ସଂସଦର ଥିଲା । ବୈଦେଶିକ ରାଷ୍ଟ୍ର ମୁଖ୍ୟମାନଙ୍କର ଏହି କ୍ଷମତା ନ ଥିଲା । ଆଇନ ଯୋଗୁଁ ହେଉ କିମ୍ବା ରାଜନୈତିକ ବାଧ ବାଧକତା ଫଳରେ ହେଉ (ଏହି ବିଷୟରେ କିଛି ସ୍ପଷ୍ଟଭାବରେ କୁହାଯାଇ ପାରିବ ନାହିଁ), ମଧ୍ୟ ଯୁଗର ରାଜାମାନେ ସେମାନଙ୍କ ପରିଷଦ ସହିତ ପରାମର୍ଶ କରିବାକୁ ବାଧ ହେଉଥିଲେ । ଏହି ପରିଷଦରେ ଚାନ୍‌ସେଲର ଓ କୋଷାଧ୍ୟକ୍ଷଙ୍କ ପରି କର୍ମଚାରୀ ଏବଂ ତାଙ୍କଦ୍ୱାରା ମନୋନୀତ ଲର୍ଡ଼ମାନେ ରହୁଥିଲେ । ଅଧିକାଂଶ ସମୟରେ ସମ୍ରାଟ ଓ ବାରନ୍‌ମାନଙ୍କ ମଧ୍ୟରେ ବିବାଦ ହେଉଥିଲା । ସମ୍ରାଟ ଉପଯୁକ୍ତ ଲୋକଙ୍କଠାରୁ ପରାମର୍ଶ ପାଉ ନ ଥିଲେ ବୋଲି ଅଭିଯୋଗ ହେଉଥିଲା । ପଞ୍ଚଦଶ ଶତାବ୍ଦୀରେ ବାରନ୍-ମାନଙ୍କ ବିଲୋପ ପରେ ଓ ପ୍ରଥମ ଦୁଇଜଣ ଷ୍ଟୁଆର୍ଟ ରାଜାଙ୍କ ଏକଛତ୍ରବାଦୀ ମନୋବୃତ୍ତି ଫଳରେ ପରିଷଦ ରାଜାଙ୍କର କ୍ରୀଡ଼ନକ ପରି ହୋଇଗଲା । ବିଶେଷତଃ ପ୍ରଥମ ଚାର୍ଲସ୍‌ଙ୍କ ସମୟରେ ଷ୍ଟାର୍ ଚ୍ୟାମ୍ବର ଅଦାଲତ ଓ ହାଇକମିଶନ୍ ଅଦାଲତ (The Court of Star Chamber and the Court of High Commission) ରାଜତାନ୍ତ୍ରିକ ଅତ୍ୟାଚାରର ହାତବାରିସୀ ଥିଲା । ତଥାପି ୧୬୪୧ରେ ଦୀର୍ଘ ସଂସଦ (The long Parliament) ଏହାର ନ୍ୟାୟିକ କ୍ଷମତା ଉଠାଇ ଦେଇଥିଲେ (କେବଳ ସମୁଦ୍ରପାରି ନ୍ୟାୟାଳୟମାନଙ୍କୁ ଏଥିରୁ ବାଦ୍ ଦିଆଯାଇଥିଲା) । ଦ୍ୱିତୀୟ ଚାର୍ଲସଙ୍କ ସମୟରେ ପରାମର୍ଶ ଦାତା ସଂସ୍ଥାରୂପେ ପରିଷଦର ପୁନରୁତ୍ଥାନ ପାଇଁ ଉଦ୍ୟମ କରାଯାଇଥିଲା କିନ୍ତୁ ଏହି ଉଦ୍ୟମ ବିଫଳ ହୋଇଥିଲା; କାରଣ ସମ୍ରାଟ କେତେ ଜଣ ବ୍ୟକ୍ତିଙ୍କ ସହିତ ନିଜ ବିଷୟ ଆଲୋଚନା କରିବାକୁ ଚାହିଁ ନ ଥିଲେ । ସେ କୋଠରୀ ମଧ୍ୟରେ କିମ୍ବା ମନ୍ତ୍ରିମଣ୍ଡଳରେ ତାଙ୍କ ମୁଖ୍ୟ ଅଫିସରମାନଙ୍କ ସହିତ ବ୍ୟକ୍ତିଗତ ଭାବରେ ଆଲୋଚନା କରି ବିଭିନ୍ନ ବିଷୟ ସମାଧାନ କରିବାକୁ ଚାହିଁଥିଲେ ।

ହାନୋଭରବଂଶର ରାଜତ୍ୱ ଆରମ୍ଭ ହେବା ପରେ ଏହି "ମନ୍ତ୍ରି ମଣ୍ଡଳ" ଏକ ଗୁରୁତ୍ୱ-ପୂର୍ଣ୍ଣ ସଂସ୍ଥାରୂପେ ପରିଗଣିତ ହୋଇଥିଲା । ରାଜା ପ୍ରଥମ ଜର୍ଜ ଓ ଦ୍ୱିତୀୟ ଜର୍ଜ ହାନୋଭର୍ ଦାୟିତ୍ୱରେ ରହିଥିବାରୁ ଗ୍ରେଟ୍‌ବ୍ରିଟେନ୍‌ର ବ୍ୟାପାର ଅପେକ୍ଷା ଜର୍ମାନୀର ଜଟିଳ ବ୍ୟାପାର-

ମୂଳଡ଼ିକ ସହିତ ବେଶୀ ସଂପୃକ୍ତ ରହୁଥିଲେ । ପ୍ରଥମ ଜର୍ଜ ମଧ୍ୟ ଇଂରାଜୀ ଜାଣି ନ ଥିଲେ । ସୁତରାଂ ଯେଉଁ ଆଲୋଚନା ସେ ବୁଝୁ ନ ଥିଲେ, ସେଥିରେ ଯୋଗ ଦେବାକୁ ସେ ଆଗ୍ରହ ପ୍ରକାଶ କରୁ ନ ଥିଲେ । ଏଥିଯୋଗୁଁ ସାଧାରଣତଃ ତାଙ୍କ ଅନୁପସ୍ଥିତିରେ ମନ୍ତ୍ରିମଣ୍ଡଳର ମୁଖ୍ୟ ଅଫିସରମାନଙ୍କ ବୈଠକ ବସୁଥିଲା । ୧୭୦୧ର ସିଂହାସନ ଆରୋହଣ ଆଇନ ଅନୁସାରେ ହାନୋଭର ବଂଶ ସିଂହାସନ ପାଇଥିଲେ । ଏଥିପାଇଁ ଷ୍ଟୁଆର୍ଟ ରାଜବଂଶର ମଧ୍ୟ ଦାବୀ ଥିଲା । ଯଦି ହାନୋଭର ବଂଶର ଉତ୍ତରାଧିକାରୀମାନଙ୍କୁ ବାହାର କରି ଦିଆଯାଏ, ତେବେ ଜଣେ ଷ୍ଟୁଆର୍ଟ ଉତ୍ତରାଧିକାରୀ ହେବା ପାଇଁ ପ୍ରସ୍ତୁତ ରହିଥିଲେ ଓ ଏଥିପାଇଁ ୧୭୧୫ ଓ ୧୭୪୫ରେ ବିଦ୍ରୋହ ହୋଇଥିଲା । ସିଂହାସନ ଆରୋହଣ ଆଇନ ଅନୁସାରେ ଶାନ୍ତି ସମୟରେ ସ୍ଥାୟୀ ସୈନ୍ୟବାହିନୀ ରଖିବା ପାଇଁ ମନାକରାଯାଇ ଥିଲା । ଏଣୁ ପ୍ରତିବର୍ଷ ସଂସଦ ସୈନ୍ୟ-ବାହିନୀ ଆଇନ ଗ୍ରହଣ ନ କରିଥିଲେ ସମ୍ରାଟ ପ୍ରିଟେଣ୍ଡରର ( Pretender ) ମାନଙ୍କୁ ବହିଷ୍କାର କରିପାରି ନଥାନ୍ତେ । ପରିଶେଷରେ ସଂସଦ ନିୟମିତ ଅର୍ଥ ବ୍ୟବସ୍ଥା ନ କଲେ, ସରକାରୀ କଳର ଖର୍ଚ୍ଚ ବହନ କରିବା ସମ୍ଭବ ନ ଥିଲା ।

ପ୍ରଥମ ଦୁଇଜଣ ଜର୍ଜ ତାଙ୍କ ମନ୍ତ୍ରିମାନଙ୍କ ଜରିଆରେ ଶାସନ କରୁଥିଲେ ବୋଲି ଜଣା ପଡ଼ୁଥିଲା ଏବଂ ସଂସଦକୁ ଯୁକ୍ତମୁକ୍ତ ପନ୍ଥା ଗ୍ରହଣ କରିବା ପାଇଁ ମନ୍ତ୍ରିମାନେ ପ୍ରବର୍ତ୍ତାଉ ଥିଲେ । ସାଧାରଣତଃ ସେମାନେ "ହ୍ୱିଗ୍" ଥିଲେ, କାରଣ ଜଣେ ଷ୍ଟୁଆର୍ଟ ଛଳନାତ୍ମକ ରାଜା ବା ପ୍ରିଟେଣ୍ଡର ଥିବା ପର୍ଯ୍ୟନ୍ତ ଟୋରୀମାନଙ୍କ ଆନୁଗତ୍ୟ ବିଷୟରେ ସଂଦେହ ଥିଲା । ଏତଦ୍‌ବ୍ୟତୀତ ବଡ଼ ବଡ଼ ଭୂମ୍ୟଧିକାରୀମାନଙ୍କ ମଧ୍ୟରେ ବହୁତ ହ୍ୱିଗ୍ ଥିଲେ ଓ କମନ୍‌ସସଭା ନିର୍ବାଚନରେ ସେମାନଙ୍କର ପ୍ରଭାବ ଯଥେଷ୍ଟ ବେଶୀ ଥିଲା । ଏହି ହ୍ୱିଗ୍‌ମାନେ ସାଧାରଣତଃ ସମ୍ରାଟଙ୍କ ସମର୍ଥକ ଥିଲେ, କାରଣ ପ୍ରଥମ ଜର୍ଜଙ୍କୁ ସିଂହାସନରେ ବସାଇବା ପାଇଁ ସେମାନେ ମୁଖ୍ୟତଃ ଦାୟୀ ଥିଲେ । ଜଣେ ଷ୍ଟୁଆର୍ଟଙ୍କୁ ପୁନଶ୍ଚ ସିଂହାସନରେ ବସାଗଲେ ସେମାନେ ସୁଖୀ ହୋଇପାରିବେ ନାହିଁ ବୋଲି ଆଶଙ୍କା କରୁଥିଲେ । ଏହା ସତ୍ତ୍ୱେ ସେମାନଙ୍କୁ ଓ କମନ୍‌ସସଭାର ସଭ୍ୟମାନଙ୍କୁ "ଚଳାଇବାକୁ" ପଡ଼ୁଥିଲା । ଏହି ସଭ୍ୟମାନଙ୍କ 'ସମର୍ଥନ' ଯୋଗାଡ଼ କରିବା ଦାୟିତ୍ୱ ରାଜକୋଷ ବା ଅର୍ଥ ମନ୍ତ୍ରଣାଳୟ (The Treasury)କୁ ଦିଆଯାଇଥିଲା ଓ ରାଜକୋଷର କାର୍ଯ୍ୟ ଲର୍ଡ଼ କମିସନରମାନେ ନିୟନ୍ତ୍ରଣ କରୁଥିଲେ । ରାଜକୋଷର ଶ୍ରୀପତି ସମ୍ରାଟ କିମ୍ବା ପ୍ରଧାନମନ୍ତ୍ରୀଙ୍କ ପ୍ରଧାନ ଉପଦେଷ୍ଟା ଥିଲେ । ୧୭୨୧ରୁ ୧୭୪୨ ପର୍ଯ୍ୟନ୍ତ ସାର୍ ରବର୍ଟ ଓ୍ୱାଲପୋଲ୍ ଶ୍ରୀପତି ଥିଲେ, କିନ୍ତୁ ସେ ଏହି ସଜ୍ଞାକୁ ନାପସନ୍ଦ କରୁଥିଲେ । ବାସ୍ତବରେ ସେ ପ୍ରଥମ ପ୍ରଧାନମନ୍ତ୍ରୀ ଥିଲେ ।

ତୃତୀୟ ଜର୍ଜଙ୍କର ପ୍ରଥମ ଜର୍ଜ ଓ ଦ୍ୱିତୀୟ ଜର୍ଜଙ୍କ ପରି କୌଣସି ଦ୍ୱିଧା ନ ଥିଲା । ସେ ପ୍ରକୃତ ସମ୍ରାଟ ହେବା ପାଇଁ ସ୍ପୃହୁଁ ଥିଲେ, ଏପରିକି ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ସମର୍ଥନ ନେଇ ତାଙ୍କୁ ଶାସନ କରିବାକୁ ପଡ଼ୁଥିଲା ଓ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଏହା ତାଙ୍କ ପକ୍ଷରେ ସହଜ ଥିଲା । ୧୭୮୩ ରେ ଉଇଲିୟମ୍ ପିଟ୍ ପ୍ରଧାନମନ୍ତ୍ରୀ ହେଲା ପରେ ଅଧିକରୁ ଅଧିକ କ୍ଷମତା

ପ୍ରଧାନମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳ ହାତକୁ ଚାଲିଯାଇଥିଲା । ଅବଶ୍ୟ ୧୮୩୭ରେ ଭିକ୍ଟୋରିଆ ସିଂହାସନରେ ଅଭିଷିକ୍ତ ହେବା ବେଳେ ପୂର୍ବର କେତେକ କ୍ଷମତାର ଅବଶେଷ ରହିଥିଲା; କିନ୍ତୁ ପ୍ରକୃତରେ ତାହା ରାଣୀଙ୍କ ଠାରେ ନ ରହି ରାଣୀଙ୍କ "ମହାମାନ୍ୟ ସରକାର"ଙ୍କ ଠାରେ ନ୍ୟସ୍ତ ଥିଲା ।

ରାଣୀଙ୍କ ପୂର୍ବ ପୁରୁଷମାନଙ୍କୁ ଶାସନ ପରିଚାଳନାରେ ଯେଉଁମାନେ ସାହାଯ୍ୟ କରୁଥିଲେ କିମ୍ବା ଅନ୍ତତଃପକ୍ଷେ ଉପଦେଶ ଦେଉଥିଲେ ସେମାନେ ବାସ୍ତବରେ ରାଜକର୍ମଚାରୀ ଥିଲେ । ସେହି ରାଜକର୍ମଚାରୀମାନେ "ମନ୍ତ୍ରୀରୂପେ" ରାଣୀଙ୍କ କ୍ଷମତା ପ୍ରୟୋଗ କରୁଥିଲେ । କୋଷାଗାର ରକ୍ଷକ ପରିବର୍ତ୍ତେ ଲର୍ଡ଼ କମିସନର ପଦମାନ ସୃଷ୍ଟି ହୋଇଥିଲା ଓ ଏମାନଙ୍କ ମଧ୍ୟରୁ ପ୍ରଥମ ଶ୍ରୀପତିଙ୍କୁ ମନ୍ତ୍ରିମଣ୍ଡଳରେ ନିଆଯାଇଥିଲା । ଚାନ୍‌ସେଲର୍ ଅଫ୍ ଦ ଏକ୍‌ସ ଚେକ୍‌ର ଆଉ କ୍ଲର୍କ ନ ରହି ଜଣେ ବିଶିଷ୍ଟ ମନ୍ତ୍ରୀ ହୋଇଥିଲେ । ଚାନ୍‌ସେଲର୍‌ଙ୍କୁ ଲର୍ଡ଼ ଚାନ୍‌ସେଲର୍ କରାଯାଇଥିଲା ଓ ପ୍ରିଭି କିମ୍ବା ପ୍ରାଇଭେଟ୍-ସୀଲ ଜଣେ ଲର୍ଡ଼ ପ୍ରିଭି ସିଲଙ୍କ ମାର୍ଫତରେ ରହିଲା । ରାଜାଙ୍କ ସେକ୍ରେଟାରୀଙ୍କୁ ସେକ୍ରେଟାରୀ ଅଫ୍ ଷ୍ଟେଟ୍ କୁହାଗଲା ଓ ଏହିପରି ବହୁତ ପଦ ସୃଷ୍ଟି ହୋଇଥିଲା । ଆଡମିରାଲ୍‌ଟୀ ବା ନୌବିଭାଗ ଉପରେ ଗୁରୁତ୍ୱ ଦିଆଯାଇଥିଲା ଓ ଏହାର ପ୍ରଥମ ଶ୍ରୀପତି ମନ୍ତ୍ରିମଣ୍ଡଳରେ ଏହାର ପ୍ରତିନିଧିତ୍ୱ କରିଥିଲେ । ପରିଷଦର ଏକ ସମିତି ରୂପେ ବାଣିଜ୍ୟ ମଣ୍ଡଳ ଆରମ୍ଭ ହୋଇଥିଲା ଓ ମଣ୍ଡଳର ଅଧ୍ୟକ୍ଷ ଏହାର ପ୍ରତିନିଧିତ୍ୱ କରିଥିଲେ । ଡଚୀଅଫ୍ ଲଙ୍କାଷ୍ଟାର୍ କେବେ ହେଲେ ରାଜପଦ ସହି ସମ୍ପୂର୍ଣ୍ଣଭାବେ ମିଶି ନ ଥିଲା, ଏହାର ଚାନ୍‌ସେଲର୍ ଏହାର ପ୍ରତିନିଧିତ୍ୱ କରିଥିଲେ । ନିର୍ମାଣ ଓ ସର୍ବସାଧାରଣ ଗୃହମାନଙ୍କ ପାଇଁ ଥିବା କମିସନର୍‌ମାନଙ୍କ ତରଫରୁ ଜଣେ ପ୍ରଥମ କମିସନ୍‌ର ପ୍ରତିନିଧିତ୍ୱ କରିଥିଲେ ।

ରାଣୀ ଆଇନ ଅନୁସାରେ ଉପରୋକ୍ତ ମନ୍ତ୍ରୀମାନଙ୍କୁ କ୍ଷମତା ହସ୍ତାନ୍ତର କରି ନ ଥିଲେ । "ରାଣୀ କଦାପି ଏକୁଟିଆ କାର୍ଯ୍ୟ କରନ୍ତି ନାହିଁ", ଏହି କଥା ସତ ହେଲେ ମଧ୍ୟ ଆଇନରେ ଜଣେ ମନ୍ତ୍ରୀଙ୍କର ସମ୍ମତି ନେବାର କୌଣସି ବ୍ୟବସ୍ଥା ନାହିଁ । ଉଦାହରଣ ସ୍ୱରୂପ, ସେକ୍ରେଟାରୀ ଅଫ୍ ଷ୍ଟେଟ୍‌ଙ୍କୁ ନ ଜଣାଇ ଫରାସୀ ସମ୍ରାଟଙ୍କ ସହିତ ଇଂଲଣ୍ଡର ସମ୍ରାଟ କୌଣସି ଗୋପନୀୟ ଚୁକ୍ତି କରିବା ଅସମ୍ଭବ ନୁହେଁ । * ଏପରି ଅବସ୍ଥାରେ ବୋଧହୁଏ ସେକ୍ରେଟାରୀ ଅଫ୍ ଷ୍ଟେଟ ଇସ୍ତଫା ଦେବେ କିନ୍ତୁ ଉନବିଂଶ ଶତାବ୍ଦୀରେ ଏଥିପାଇଁ କେବଳ ସେ ଇସ୍ତଫା ନ ଦେଇ ସମସ୍ତ ମନ୍ତ୍ରିମଣ୍ଡଳ ଇସ୍ତଫା ପ୍ରଦାନ କରିଥାନ୍ତେ । ଏହାହିଁ ସମସ୍ତ ବ୍ୟବସ୍ଥାର ମୂଳସୂତ୍ର ଥିଲା ବୋଲି ନିଃସନ୍ଦେହରେ କୁହାଯାଇପାରେ । ସମ୍ରାଟ ସଂସଦ ଉପରେ ନିର୍ଭର କରୁଥିଲେ, ସୁତରାଂ ସଂସଦର ପରିଚାଳନା ପାଇଁ ରାଜନୈତିକ ଘଟଣାଚକ୍ରରେ ସମ୍ରାଟ

* ଏହାକୁ ସନ୍ଧି କୁହାଯାଇ ପାରିବ ନାହିଁ, କାରଣ ସନ୍ଧିପାଇଁ ଗ୍ରେଟ୍‌ସିଲର ଆବଶ୍ୟକତା ହୁଏଥିଲା ଓ ଏହି ସିଲ୍‌କୁ ଲର୍ଡ ଚାନ୍‌ସେଲର୍ ରଖିଥିଲେ ।

ବାଧ୍ୟ ହୋଇଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଏହି ବିଷୟରେ ସମ୍ରାଟଙ୍କର ଅବାଧକ୍ଷମତା ଥିଲା । ଅବଶ୍ୟ ସେତେବେଳେ ଅର୍ଲ ଅଫ୍ ଗ୍ରଥାମଙ୍କୁ ନିଯୁକ୍ତି ଦେବା ପାଇଁ ଓ ପରେ ଫକ୍ସ-ନର୍ଥ ମିଳିତ ସରକାରକୁ ଗ୍ରହଣ କରିବା ପାଇଁ ସମ୍ରାଟ ତୃତୀୟ ଜର୍ଜ ବାଧ୍ୟ ହୋଇଥିଲେ । ସୁତରାଂ ଜଣେ ମନ୍ତ୍ରୀଙ୍କୁ ଉଭୟ ସମ୍ରାଟ ଓ ସଂସଦର "ଆସ୍ଥା" କିମ୍ବା ସମର୍ଥନ ଉପରେ ନିର୍ଭର କରିବାକୁ ପଡୁଥିଲା । ୧୭୮୩ରେ ଫକ୍ସ-ନର୍ଥ ମିଳିତ ମନ୍ତ୍ରିମଣ୍ଡଳ ବରଖାସ୍ତ ହେବାଠାରୁ ୧୮୩୨ର ସଂସ୍କାର ଆଇନ ପର୍ଯ୍ୟନ୍ତ ପଚାଶ ବର୍ଷ ମଧ୍ୟରେ ବହୁ ଘଟଣା ଯୋଗୁ ସଂସଦର କ୍ଷମତା ବୃଦ୍ଧି ପାଇଥିଲା ଓ ସମ୍ରାଟଙ୍କ କ୍ଷମତା ହ୍ରାସ ହୋଇଥିଲା । ଏହାପରଠାରୁ ମନ୍ତ୍ରୀମାନେ ସମ୍ରାଟଙ୍କ "ଆସ୍ଥା" ଅପେକ୍ଷା ସଂସଦର "ଆସ୍ଥା" ଉପରେ ଅଧିକରୁ ଅଧିକ ନିର୍ଭର କଲେ । ମନ୍ତ୍ରୀମାନେ ସମ୍ରାଟଙ୍କ ଉପରେ ନିର୍ଭର କରିବା ପରିବର୍ତ୍ତେ ସମ୍ରାଟଙ୍କୁ ସେମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିଲା । ମନ୍ତ୍ରିମଣ୍ଡଳରେ ରାଜନୈତିକ ସଂହତି ରହିବା ନୀତି ଅଷ୍ଟାଦଶ ଶତାବ୍ଦୀରେ ସ୍ୱୀକୃତ ହୋଇ ନ ଥିଲା । ହ୍ୱିଗ୍‌ମାନେ ୧୬୮୮ ରେ ସିଂହାସନଗତ ବିପ୍ଳବ ପାଇଁ ଦାୟୀ ଥିଲେ ବୋଲି ତୃତୀୟ ଉଇଲିୟମ ମୁଖ୍ୟତଃ ସେମାନଙ୍କ ସମର୍ଥନ ଉପରେ ନିର୍ଭର କରୁଥିଲେ । ରାଣୀ ଆନେ ଟୋରିମାନଙ୍କୁ ଭଲପାଉଥିବାରୁ ସେମାନେ ତାଙ୍କୁ ସମର୍ଥନ କରୁଥିଲେ । ଅନେକ ଟୋରିଙ୍କ ଆନୁଗତ୍ୟରେ ସନ୍ଦେହ ଉପୁଜିବାରୁ ରାଜା ପ୍ରଥମ ଜର୍ଜ ଓ ଦ୍ୱିତୀୟ ଜର୍ଜ ମୁଖ୍ୟତଃ ହ୍ୱିଗ୍‌ମାନଙ୍କ ସମର୍ଥନ ଉପରେ ନିର୍ଭର କଲେ । ତୃତୀୟ ଜର୍ଜଙ୍କର ନିଜ ଶକ୍ତି ଉପରେ ଆସ୍ଥା ଥିଲା । ଲର୍ଡ଼-ନର୍ଥ ତାଙ୍କୁ ସାହାଯ୍ୟ କରିବାରୁ ସେ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ସଫଳ ଭାବରେ ରାଜତ୍ୱ କରିଥିଲେ । ଅବଶ୍ୟ ବିଭିନ୍ନ ପଦଗୁଡ଼ିକ ତାଙ୍କ ରାଜନୈତିକ 'ବନ୍ଧୁମାନଙ୍କ' ମଧ୍ୟରେ ବାଣ୍ଟିବାକୁ ପ୍ରଧାନମନ୍ତ୍ରୀ ଜିଦ୍ କଲେ ସମ୍ରାଟଙ୍କୁ ସେଥିରେ ସମ୍ମତି ଦେବାକୁ ବାଧ୍ୟ ହେଉଥିଲେ । ନଚେତ ତାଙ୍କୁ ଆଉ ଜଣେ ନୂତନ ପ୍ରଧାନମନ୍ତ୍ରୀ ନିଯୁକ୍ତ କରିବାକୁ ପଡ଼ୁଥିଲା । ଯଦି ବନ୍ଧୁମାନେ ଏକଜୁଟ ରହିଲେ ଓ ସଂସଦରେ ସଖ୍ୟା-ଗରିଷ୍ଠ ସଭ୍ୟଙ୍କ ସମର୍ଥନ ଲାଭ କରି ପାରିଲେ, ତେବେ ସମ୍ରାଟଙ୍କ ପସନ୍ଦ ହିଦସନ୍‌ଙ୍କ ପସନ୍ଦ ପରି ହୋଇଥାଏ । ଅବଶ୍ୟ ଏପରି ପରିସ୍ଥିତି କେବେ ଦେଖା ଦେଇ ନ ଥିଲା । ଆଜିକାଲିର ରାଜନୈତିକ ଦଳପରି ତତ୍କାଳୀନ ହ୍ୱିଗ୍ ଓ ଟୋରି ଦଳ ଦୃଢ଼ ଓ ଶୃଙ୍ଖଳିତ ନ ଥିଲେ । ଜଣେ ନେତାଙ୍କ ରାଜନୈତିକ ସମର୍ଥନ ଉପରେ ନିର୍ଭର କରି ବିଭିନ୍ନ ରାଜନୈତିକ ଗୋଷ୍ଠୀ ଗଠିତ ହେଉଥିଲା । ଏଥିପାଇଁ ଫରାସୀ ବିପ୍ଳବ ପରେ ଉଇଲିୟମଙ୍କ ସମର୍ଥକ ହ୍ୱିଗ୍‌ମାନେ, ଟୋରି ଦଳରେ ମିଶିଯାଇ-ଥିଲେ । କ୍ୟାନିଙ୍ଗଙ୍କ ସମର୍ଥିତ ଟୋରି ଓ ଫକ୍ସଙ୍କ ସମର୍ଥିତ ହ୍ୱିଗ୍‌ମାନଙ୍କ ମିଳିତ କାର୍ଯ୍ୟାନୁଷ୍ଠାନ ଫଳରେ ସଂସଦୀୟ ସଂସ୍କାର ଆଇନ ପ୍ରଣୀତ ହୋଇଥିଲା । ଦଳଗୁଡ଼ିକ ସୁଦୃଢ଼ ହେବା ପର୍ଯ୍ୟନ୍ତ, ବିଶେଷତଃ ସଂସ୍କାର ଆଇନ ଗୃହୀତ ହେବା ପରେ ସମ୍ରାଟ ଗୋଟିଏ ଗୋଷ୍ଠୀକୁ ଆଉ ଗୋଟିଏ ଗୋଷ୍ଠୀ ବିରୁଦ୍ଧରେ ବ୍ୟବହାର କରିପାରୁଥିଲେ । ଯେ କୌଣସି ବ୍ୟକ୍ତି ପ୍ରଧାନମନ୍ତ୍ରୀ ହୋଇଥାନ୍ତୁ ପଛକେ ତାଙ୍କର ଜଣେ ସମର୍ଥକଙ୍କୁ ମନ୍ତ୍ରିମଣ୍ଡଳରେ ନେବାପାଇଁ ରାଜା ଜିଦ୍ କରିପାରୁଥିଲେ । ଉଦାହରଣ ସ୍ୱରୂପ, ଲର୍ଡ଼ ଥର୍ଲୋଙ୍କୁ ମନ୍ତ୍ରିମଣ୍ଡଳରେ ନେବାପାଇଁ ରାଜା ତୃତୀୟ ଜର୍ଜ ଜିଦ୍ କରିଥିଲେ ।

ରାଜନୈତିକ ସହମତି ଓ ମିଳିତ ଦାୟିତ୍ୱ ଏକତ୍ର ଥାଏ । ମନ୍ତ୍ରୀମାନେ ଆଧୁନିକ କମ୍ୟୁନିଷ୍ଟମାନଙ୍କ ଭାଷାରେ "ମିଳିତ ସାମ୍ମୁଖ୍ୟ" ଗଠନ କରିପାରିଲେ ସମ୍ରାଟ ଗୋଟିଏ ଗୋଷ୍ଠୀକୁ ଅନ୍ୟ ଗୋଷ୍ଠୀ ବିରୁଦ୍ଧରେ ପ୍ରୟୋଗ କରିବାକୁ ସକ୍ଷମ ହୋଇପାରୁ ନ ଥିଲେ । ମନ୍ତ୍ରୀମାନଙ୍କ ପଛରେ ସଂଖ୍ୟା-ଗରିଷ୍ଠ ସଭ୍ୟଙ୍କ ସମର୍ଥନ ଥିଲେ ଓ ସେମାନେ ଏକତ୍ର ରହିପାରିଲେ ସମ୍ରାଟ ସେମାନଙ୍କୁ କ୍ଷମତାରେ ରଖିବାକୁ ବାଧ୍ୟ ହେଉଥିଲେ । ପ୍ରଥମରୁ ମିଳିତ ଦାୟିତ୍ୱର ଅର୍ଥ ସମ୍ରାଟଙ୍କ ପ୍ରତି ମିଳିତ ଦାୟିତ୍ୱ ଥିଲା ଓ ସଂସଦର ସଂଖ୍ୟାଗରିଷ୍ଠ ସମର୍ଥନ ଉପରେ ଏହାର ମୂଳ୍ୟ ନିର୍ଭର କରୁଥିଲା । ସମ୍ରାଟଙ୍କ "ଆସ୍ଥା"ର ପ୍ରାଧାନ୍ୟ ହ୍ରାସ ପାଇବା ଫଳରେ ମିଳିତ ଦାୟିତ୍ୱ କହିଲେ କମନ୍ସସଭା ପ୍ରତି ସରକାରଙ୍କ ମିଳିତ ଦାୟିତ୍ୱ ବୁଝାଇଲା ।

ଉପରୋକ୍ତ ସମସ୍ତ ଧାରଣା ସଂସ୍କାର ଆଇନ ପରେ ଦୃଢ଼ୀଭୂତ ହୋଇଥିଲା । ମତାଧିକାର ସଂପ୍ରସାରଣ ଓ "ରଟନ୍‌ବ୍ୟୁରୋ" ବା ପତିତ ନଗରୀ ବିଲୋପ ପରେ କମନ୍ସସଭାରେ ବଡ଼ ବଡ଼ ଭୂମ୍ୟଧିକାରୀମାନେ ପ୍ରତିନିଧିତ୍ୱ ନ କରି ସହରାଞ୍ଚଳର ମଧ୍ୟବିତ୍ତ ଶ୍ରେଣୀ ପ୍ରତିନିଧି ଭାବରେ ନିର୍ବାଚିତ ହୋଇ ଆସିଲେ । ଜଣେ ଡିଉକଙ୍କୁ ଗାର୍ଟର ପ୍ରଦାନ କରି, ଜଣେ ବାରନ୍‌ଙ୍କୁ ଅର୍ଲଡମ ଦେଇ, ଜଣେ ସବାସ୍କୁାରକୁ ବାରନ୍ ଅଥବା ଆଭିଜାତ୍ୟ ପରିବାରକୁ ବାଥ୍ ଅଧକ୍ଷତା ଅର୍ପଣ କରି ସେମାନଙ୍କ ରାଜନୈତିକ ସମର୍ଥନ ଲାଭ କରିବା ଆଉ ସମ୍ଭବପର ହେଲା ନାହିଁ । ବର୍କଙ୍କ ୧୭୮୨ର ଅର୍ଥନୀତି ଆଇନ (Burk's Economy Act of 1782) ଯୋଗୁ "ଲାଭ ଜନକ ପଦ" ଓ ପେନ୍‌ସନ ହ୍ରାସ ପାଇଲା । ପିଟ୍ ଓ ତାଙ୍କ ଉତ୍ତରାଧିକାରୀମାନଙ୍କ ସମୟରେ କ୍ରମଶଃ ଦୁର୍ନୀତିମୂଳକ ପନ୍ଥାର ବିଲୋପ ସାଧନ ହୋଇଥିଲା । ୧୭୮୩ରେ ସଂଖ୍ୟାଗରିଷ୍ଠତା ହାସଲ କରିବା ପାଇଁ ରାଜା ତୃତୀୟ ଜର୍ଜ, ଉଇଲିୟମ ପିଟ୍‌ଙ୍କୁ ବିଶେଷ ସାହାଯ୍ୟ କରିଥିବା ସ୍ଥଳେ ୧୮୩୨ରେ ଚତୁର୍ଥ ଉଇଲିୟମ ହ୍ୱିଗ୍ ଓ କ୍ୟାନିଙ୍ଗଙ୍କ ସମର୍ଥକ ଟୋରୀମାନଙ୍କୁ ସାହାଯ୍ୟ କରିବାକୁ କ୍ଷମ ହୋଇ ନ ଥିଲେ । ଏଣୁ ସରକାର ଆଉ ସମ୍ରାଟଙ୍କ ଉପରେ ନିର୍ଭର ନ କରି ନିର୍ବାଚକମାନଙ୍କ ଉପରେ ନିର୍ଭର କଲା । ୧୮୩୭ରେ ରାଣୀ ଭିକ୍ଟୋରିଆ ସିଂହାସନ ଆରୋହଣ କଲାବେଳେ ସମ୍ରାଟଙ୍କର ଉପଦେଶ ଦେବା, ସତର୍କ କରିବା ଓ ପ୍ରଭାବ ପକାଇବା କ୍ଷମତା ଯଥେଷ୍ଟ ଥିଲା, କିନ୍ତୁ ପ୍ରକୃତ ସରକାରୀ କ୍ଷମତା ମହାମାନ୍ୟା ରାଣୀଙ୍କ ସଚିବଙ୍କଠାରେ ନ୍ୟସ୍ତ ହେଲା ।

### ଶାସନର ଅଭିକର୍ତ୍ତା ବୃନ୍ଦ (Agencies of Government) :

"ରାଜନୀତି" ଉପରେ ଗୁରୁତ୍ୱ ଆରୋପ କରାଯାଉଥିବାରୁ କେନ୍ଦ୍ରୀୟ ପ୍ରଶାସନିକ କଳ ଓ ଏହି କଳରେ ଥିବା ରାଜନୀତିଜ୍ଞମାନଙ୍କ ଭୂମିକା ଉପରେ ମଧ୍ୟ ଗୁରୁତ୍ୱ ଆରୋପ କରାଯାଇଥାଏ । ନର୍ମାନ୍ ଓ ଆଞ୍ଜେଭିନ ରାଜାମାନଙ୍କ ଜ୍ଞାନ ଓ ଦକ୍ଷତା ଯୋଗୁଁ ଏକ ଦୃଢ଼ କେନ୍ଦ୍ରୀୟ ପ୍ରଶାସକ ଗୋଷ୍ଠୀ ଦ୍ୱାରା ଇଂଲଣ୍ଡ ପ୍ରଥମ ଜାତୀୟ ରାଷ୍ଟ୍ରରେ ପରିଣତ ହୋଇଥିଲା । ରାଜାଙ୍କ

ସହିତ ପ୍ରତିଯୋଗିତା କରିବା ପାଇଁ କୌଣସି ସ୍ଥାନୀୟ ଶକ୍ତି ନ ଥିଲା । ସମ୍ରାଟଙ୍କ ଶାନ୍ତି ଇଂଲଣ୍ଡ ସାରା ପ୍ରସାରିତ ହୋଇଥିଲା ଓ ପ୍ରଥମ ଏଡ଼ଓ୍ୱାର୍ଡ଼ଙ୍କ ପରେ ଏହା ଓ୍ୱେଲ୍ସକୁ ମଧ୍ୟ ବ୍ୟାପିଥିଲା । ସମ୍ରାଟଙ୍କ ଆଦେଶନାମା ସର୍ବତ୍ର ଜାରି ରହିଥିଲା । ସମ୍ରାଟଙ୍କ କ୍ଷମତା ତାଙ୍କ ନିଜ ହାତରେ କେନ୍ଦ୍ରୀଭୂତ ଥିବା ଯୋଗୁଁ ଏହା ହୋଇ ନ ଥିଲା । ବରଂ ଅଙ୍ଗ୍ଲୋ ସାକ୍ସନ୍ ସ୍ଥାନୀୟ ଅନୁଷ୍ଠାନଗୁଡ଼ିକୁ ନର୍ମାନ୍ କେନ୍ଦ୍ରୀୟ ଅନୁଷ୍ଠାନ ଅଧୀନରେ ସମନ୍ୱିତ ଓ ସଂଗଠିତ କରିବା ଫଳରେ ଏହା ସମ୍ଭବପର ହୋଇଥିଲା । ସାଏାରଗୁଡ଼ିକ କାଉଣ୍ଟିରେ ପରିଣତ ହୋଇଥିଲା; କିନ୍ତୁ କାଉଣ୍ଟମାନେ ସେଗୁଡ଼ିକୁ ଶାସନ ନ କରି କାଉଣ୍ଟିନ୍ୟାୟାଳୟରେ ଥିବା ସ୍ୱାଧୀନ ଭୂମ୍ୟଧିକାରୀମାନେ ସେଗୁଡ଼ିକୁ ଶାସନ କରୁଥିଲେ । ରାଜାଙ୍କ ପ୍ରତିନିଧି ରୂପେ ସେରିଫ୍ ତାହାର ତତ୍ତ୍ୱାବଧାନ କରୁଥିଲେ ଓ ରାଜାଙ୍କ ନିଜ ନ୍ୟାୟାଳୟ ମଧ୍ୟ ତାହାକୁ ନିୟନ୍ତ୍ରଣ କରୁଥିଲା । ଚତୁର୍ଦ୍ଦଶ ଶତାବ୍ଦୀଠାରୁ ରାଜାଙ୍କ ଦ୍ୱାରା ନିଯୁକ୍ତ ସ୍ଥାନୀୟ ବ୍ୟକ୍ତିମାନେ ସେଗୁଡ଼ିକୁ ଶାସନ କଲେ ଏବଂ ଏହି ଲୋକମାନଙ୍କୁ ଶାନ୍ତିରକ୍ଷକ ବିଚାରପତି ( **Justice of the peace**) ବୋଲି କୁହାଗଲା (ଏଠାରେ ମଧ୍ୟଯୁଗ ସରକାରର ଅଯୋଗ୍ୟତା ବିଷୟ ବିଚାର କରାଯାଇ ପାରେ) । ସେହି ବିଚାରପତିମାନେ କାଉଣ୍ଟିଗୁଡ଼ିକୁ ଶାସନ କଲେ । ଏହି ବ୍ୟବସ୍ଥା ପ୍ରଶାସନିକ କାରଣରୁ ୧୮୮୯ରୁ ଉଠାଇ ଦିଆଗଲା ଓ ଏହା ପରିବର୍ତ୍ତେ କାଉଣ୍ଟି ପରିଷଦମାନ ପ୍ରତିଷ୍ଠା ହେଲା ।

ଜର୍ମାନୀ ଓ ହଲାଣ୍ଡର ସହରଗୁଡ଼ିକ ଭଳି ଇଂଲଣ୍ଡର ସହରଗୁଡ଼ିକ ରାଜକୀୟ କ୍ଷମତାଠାରୁ "ମୁକ୍ତ" ନ ଥିଲେ, କିନ୍ତୁ ସନନ୍ଦ ଅନୁସାରେ ସେମାନଙ୍କର ସ୍ୱାଧୀନତା ଥିଲା ଓ ଏହା ଫଳରେ ସଂପୃକ୍ତ କାଉଣ୍ଟିଠାରୁ ସେମାନେ କେତେକାଂଶରେ ସାମାନ୍ୟ ସ୍ୱାଧୀନ ଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ନିଜର ନ୍ୟାୟାଳୟ ଥିଲା, କେତେକଙ୍କର ଶାନ୍ତିପାଇଁ ଅଲଗା କମିସନ ଥିଲା ଓ ଅଳ୍ପ କେତେକ ସେମାନଙ୍କ ନିଜ ସେରିଫ୍‌ଙ୍କୁ ନିର୍ବାଚିତ କରୁଥିଲେ । ସମସ୍ତଙ୍କର ସହରର "ସ୍ୱାଧୀନ ବ୍ୟକ୍ତିମାନଙ୍କ" ଦ୍ୱାରା ନିର୍ବାଚିତ ପରିଷଦ ଥିଲା । ସେମାନଙ୍କ ମଧ୍ୟରୁ ଲଣ୍ଡନ ସହର ଅଧିକ ସ୍ୱାଧୀନ ଓ କ୍ଷମତାଶାଳୀ ଥିଲା ଏବଂ ଏହା ମଧ୍ୟ ରାଜାଙ୍କ କ୍ଷମତାର ପରିସର ମଧ୍ୟରେ ରହିଥିଲା ।

ତତ୍କାଳୀନ ବିଶ୍ୱରେ ରୋମ ସାମ୍ରାଜ୍ୟର ବିଲୋପ ଓ ସାମନ୍ତବାଦୀ ପ୍ରଥାର ପ୍ରଚଳନ ଫଳରେ କ୍ଷମତା ପାଇଁ ଦ୍ୱନ୍ଦ୍ୱ ଲାଗି ରହିଥିଲା ଓ ସ୍ଥାନୀୟ ଶକ୍ତି-ଗୁଡ଼ିକ ପରସ୍ପର ପ୍ରତିଦ୍ୱନ୍ଦ୍ୱିତାରେ ବ୍ୟସ୍ତ ଥିଲେ । ସେତେବେଳେ ଇଂଲଣ୍ଡରେ ସ୍ଥାନୀୟ କ୍ଷମତା ଓ କେନ୍ଦ୍ରୀୟ ନିୟନ୍ତ୍ରଣ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠା ହେବା ଫଳରେ ଇଂଲଣ୍ଡର ସରକାରୀ ବ୍ୟବସ୍ଥା ଖୁବ୍ ଦୃଢ଼ ବୋଲି ବିଶ୍ୱରେ ପ୍ରମାଣିତ ହୋଇଥିଲା । ଆଜି ପର୍ଯ୍ୟନ୍ତ ମଧ୍ୟ ଏହି ପରମ୍ପରା ରହି ଆସିଛି । ଆଧୁନିକ ଯୁଗରେ ଗମନାଗମନ ବ୍ୟବସ୍ଥାର ଉନ୍ନତି ଫଳରେ କେନ୍ଦ୍ରୀୟ ଶାସକ ଗୋଷ୍ଠୀକୁ ନେଇ ଦୃଢ଼ ସରକାର ଗଠନ କରିବା ସହଜ ହୋଇଛି । ସ୍ଥାନୀୟ ସଂସ୍ଥାଗୁଡ଼ିକର କ୍ଷମତାକୁ ଅପହରଣ କରିବାର ବିଶେଷ ଆଗ୍ରହ ପ୍ରକାଶ ପାଉଥିଲେ ସୁଦ୍ଧା ଇଂଲଣ୍ଡକୁ ନେଇ ଗଠିତ

ହୋଇଥିବା ଉନୋଟି ଦେଶରେ ବିଶେଷତଃ ଇଂଲଣ୍ଡ ଓ ୱେଲସରେ ସ୍ଥାନୀୟ ସଂସ୍ଥାଗୁଡ଼ିକ ଉପରେ ପୁରୁତ୍ୱ ଦିଆଯାଉଛି । ଲଙ୍କାସାୟାର କାଉଣ୍ଟି ପରିଷଦ କିମ୍ବା ବର୍ମିଂହାମ ସହର ପରିଷଦ ମହାମାନ୍ୟା ରାଣୀଙ୍କ ସରକାରର ଅଙ୍ଗନୁହେ । ସଂସଦର ଅଧିନିୟମ ଅନୁସାରେ ଏହା ପରିଚାଳିତ ହୋଇଥାଏ । କେନ୍ଦ୍ର ସରକାରଙ୍କଠାରୁ ଏହା ଆର୍ଥିକ ସାହାଯ୍ୟ ପାଏ । ଏହାର ପ୍ରସ୍ତାବଗୁଡ଼ିକୁ ବେଳେବେଳେ ମନ୍ତ୍ରୀମାନେ ଅନୁମୋଦନ କରିଥାନ୍ତି, କିନ୍ତୁ ଏହା ଗୋଟିଏ ସ୍ୱାୟତ୍ତଶାସିତ ସଂସ୍ଥା ଅଟେ । ଏହା ନିଜ କାର୍ଯ୍ୟ ପରିଚାଳନା କରିଥାଏ । ପ୍ରତ୍ୟେକ ଲୋକ ଏହାକୁ ଏକ ସ୍ୱୟଂଚାଳିତ ସଂସ୍ଥା ବୋଲି ଭାବିଥାନ୍ତି । ଆମ୍ଭମାନଙ୍କର ଏକ ଶିକ୍ଷା-ମନ୍ତ୍ରଣାଳୟ ଥିଲେ ମଧ୍ୟ ଏହାର ନିଜର କୌଣସି ବିଦ୍ୟାଳୟ ନାହିଁ । ଏହି ମନ୍ତ୍ରଣାଳୟଠାରୁ କେତେକ ବିଦ୍ୟାଳୟ ସାହାଯ୍ୟ ପାଇଥାନ୍ତି, କିନ୍ତୁ ସ୍ଥାନୀୟ ଶିକ୍ଷା ସଂସ୍ଥାଗୁଡ଼ିକ ଏହି ବିଦ୍ୟାଳୟଗୁଡ଼ିକୁ ପରିଚାଳନା ଓ ସାହାଯ୍ୟ କରିଥାଆନ୍ତି ।

ରାଜକୀୟ ସନନ୍ଦ କିମ୍ବା ନିର୍ଦ୍ଦେଶ ଅଥବା ସଂସଦୀୟ ଅଧିନିୟମ ଦ୍ୱାରା ବ୍ୟବସ୍ଥା କରାଯାଇଥିବା ସ୍ୱୟଂଚାଳିତ ସଂସ୍ଥାଗୁଡ଼ିକ ସମ୍ପ୍ରସାରିତ ହେବାର ପରମ୍ପରା ଚାଲି ଆସିଛି । ପୁରାତନ ନିଗମମାନଙ୍କ ( Corporations ) ମଧ୍ୟରୁ ଯେଉଁ କେତୋଟି ଆଜି ପର୍ଯ୍ୟନ୍ତ ରହିଛନ୍ତି ସେ ଗୁଡ଼ିକ ହେଲେ, ଅକ୍ସଫୋର୍ଡ଼ ଓ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟ ଏବଂ ଆଇନ ଶିକ୍ଷାନୁଷ୍ଠାନ ( Inns of Court ) ସନନ୍ଦ ବା ସଂସଦୀୟ ଅଧିନିୟମ ବଳରେ ସେମାନେ ଭୋଗ କରୁଥିବା ସ୍ୱାଧୀନତା ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟ ଓ ବ୍ୟାବସାୟିକ ସଂଗଠନ ଗୁଡ଼ିକୁ ପ୍ରସାରିତ ହୋଇଛି । ଟ୍ୟୁଡର ରାଜତ୍ୱ ସମୟରେ କୃଷି ବ୍ୟବସ୍ଥାର ପରିବର୍ତ୍ତନ ହେବା ଫଳରେ ଜମିରୁ ଜଳ ନିଷ୍କାସନ ପାଇଁ ମିଳିତ ଉଦ୍ୟମର ଆବଶ୍ୟକତା ଅନୁଭୂତ ହୋଇଥିଲା ଓ ସେଥି-ପାଇଁ ଜଳନିଷ୍କାସନ କମିସନରମାନେ ନିଯୁକ୍ତ ହୋଇଥିଲେ । ଶିଳ୍ପ ବିପ୍ଳବ ଫଳରେ ଇଂଲଣ୍ଡର ରୂପରେଖ ପରିବର୍ତ୍ତିତ ହୋଇଗଲା । ଉପରୋକ୍ତ ପରମ୍ପରାକୁ ଅନୁସରଣ କରି ବହୁସଂଖ୍ୟକ ଆଇନଗତ ସଂସ୍ଥା ସୃଷ୍ଟି ହୋଇଥିଲା । ଟର୍ନପାଇକ୍ ଟ୍ରଷ୍ଟ, ( ଅର୍ଗଳ ଚାଳକ ନ୍ୟାସ ) ରେଳ ଓ ନାଳ କମ୍ପାନୀ, ଜଳ ଓ ନର୍ଦ୍ଦମା ମଣ୍ଡଳ, ବନ୍ଦର ସଂସ୍ଥା ଏବଂ ବାଷ୍ପ ଓ ବିଦ୍ୟୁତ୍ କମ୍ପାନୀ ଏହିଭଳି ସଂସ୍ଥା ଥିଲେ । "ବାଷ୍ପ ଓ ଜଳ ସମାଜ ବାଦ" ( Gas and water Socialism ) ଉପରେ ଗୁରୁତ୍ୱ ଦିଆଯାଇଥିଲା ଏବଂ ଏତଦ୍ଦ୍ୱାରା ଆଧୁନିକ ଯୁଗରେ ବଡ ବଡ ଆଇନାନୁମୋଦିତ ନିଗମ ସୃଷ୍ଟି ହେଲା । ଏଥିରେ ଅବଶ୍ୟ କେତେ ବ୍ୟତିକ୍ରମ ଥିଲା । ଉଦାହରଣ ସ୍ୱରୂପ, ଡାକ, ଟେଲିଗ୍ରାମ ଓ ଟେଲିଫୋନ୍ ବ୍ୟବସ୍ଥାକୁ ପୋଷ୍ଟ ଅଫିସ ପରିଚାଳନା କରୁଥିଲା । ସାଧାରଣତଃ କହିବାକୁ ଗଲେ ସର୍ବସାଧାରଣ ସେବା ବ୍ୟବସ୍ଥା ସରକାରୀ ବିଭାଗ ଦ୍ୱାରା ନ ହୋଇ ସାଧାରଣ ନିଗମ ଦ୍ୱାରା କରାଯାଉଥିଲା । ବ୍ରିଟିଶ ବ୍ରଡକାଷ୍ଟିଂ କର୍ପୋରେସନ ବ୍ରିଟିଶ୍ ରେଲୱେ କମିସନ କିମ୍ବା ବିଦ୍ୟୁତ୍‌ପରିଷଦ ଏହାର ଦୃଷ୍ଟାନ୍ତ । ଜାତୀୟ ସାହାଯ୍ୟ ମଣ୍ଡଳ ( The National Assistance Board ) ପରି ଆଇନାନୁ-ମୋଦିତ ସଂସ୍ଥା ଦ୍ୱାରା ଉପରୋକ୍ତ ସଂସ୍ଥା ଗୁଡ଼ିକୁ ସାହାଯ୍ୟ ଦିଆଯାଇଥାଏ ।

ସେହି ସ୍ଥାନୀୟ ସଂସ୍ଥା, ସନନ୍ଦାନୁମୋଦିତ ନିଗମ ଏବଂ ଆଇନାନୁମୋଦିତ ମଣ୍ଡଳ ଓ ଆୟୋଗ ଗୁଡ଼ିକ "ହସ୍ତାନ୍ତରିତ କ୍ଷମତା" ଉପଭୋଗ କରୁଛନ୍ତି ବୋଲି କହିବା ଯଥାର୍ଥ ନୁହେଁ । କୌଣସି କେନ୍ଦ୍ରୀୟ ସଂସ୍ଥା ଉପରେ କ୍ଷମତାଗୁଡ଼ିକ ଠୁଳ କରାଯାଇ ତାପରେ ହସ୍ତାନ୍ତରିତ କରାଯିବା କଥା ଠିକ୍ ନୁହେଁ । କ୍ଷମତା ବିକେନ୍ଦ୍ରୀ-କରଣ ନୀତି ସର୍ବଦା ଗୃହୀତ ହୋଇଅଛି, ଏପର୍ଯ୍ୟନ୍ତ ମଧ୍ୟ ମନ୍ତ୍ରୀଙ୍କ ଅଧୀନରେ ଥିବା କେନ୍ଦ୍ରୀୟ ପ୍ରଶାସନିକ ସଂସ୍ଥା ଅନାବଶ୍ୟକ ଓ ଅସମ୍ଭବ ବୋଲି ଧରି ନିଆଯାଉଛି । ଇଂଲଣ୍ଡରେ କଦାପି "କେନ୍ଦ୍ରୀ—କରଣ" ( Centralisation ) କରାଯାଇ ନ ଥିବାରୁ ଏହି ଦେଶରେ ବିକେନ୍ଦ୍ରୀକରଣ ( Decentralisation ) ଧାରଣାକୁ ପସନ୍ଦ କରାଯାଏ ନାହିଁ । ମନ୍ତ୍ରୀମାନେ ପ୍ରତ୍ୟେକ ବିଷୟ ନିୟନ୍ତ୍ରଣ କରୁଛନ୍ତି ବୋଲି ଏହାର ଉପକାରିତା ବିଷୟରେ ବିଭିନ୍ନ ମୂତ୍ର ଦର୍ଶାଯାଇ-ଥାଏ । ସମାଜର ଲକ୍ଷ ଲକ୍ଷ ଲୋକଙ୍କ ଜୀବନକୁ "ନିୟନ୍ତ୍ରିତ" କରିବା ଦାୟିତ୍ୱ; ମନ୍ତ୍ରୀମଣ୍ଡଳରେ ଥିବା ଗୋଟିଏ ରାଜନୈତିକ ଗୋଷ୍ଠୀ ହାତରେ ଛାଡ଼ିଦେବା ଧାରଣାରୁ ଏହା ସୃଷ୍ଟି ହୋଇଛି । ମନ୍ତ୍ରୀମଣ୍ଡଳର ଏହି ସଭ୍ୟମାନଙ୍କୁ ବିରାଟ ପ୍ରଶାସକ ଗୋଷ୍ଠୀ ଓ ବୈଷୟିକ ଜ୍ଞାନ-ସମ୍ପନ୍ନ ବିଶେଷଜ୍ଞମାନେ ସାହାଯ୍ୟ କରିଥାନ୍ତି । ଅବଶ୍ୟ ଏହି ଚିନ୍ତାଧାରାକୁ ସମ୍ପୂର୍ଣ୍ଣରୂପେ ସମର୍ଥନ କରାଯାଇ ନ ଥାଏ । ଆଧୁନିକ ରାଷ୍ଟ୍ରର କାର୍ଯ୍ୟ ପରିସର ଏତେ ବୃଦ୍ଧି ପାଇଛି ଯେ, ଗୋଟିଏ ସୁଦକ୍ଷ ସଂସ୍ଥା ଦ୍ୱାରା ସେହି କାର୍ଯ୍ୟାବଳୀକୁ ନିୟନ୍ତ୍ରଣ କରିବା ଏକ ବିରାଟ ସମସ୍ୟା । ଉଦାହରଣ ସ୍ୱରୂପ, ପ୍ୟାରିସ ( Parish ) ର ପାଣିକଳକୁ ନିୟନ୍ତ୍ରଣ କରିବା ଭାର ପ୍ୟାରିସ ହସ୍ତରେ ଛାଡ଼ି ଦେବାର ନିର୍ଦ୍ଦେଶ ରହିଛି । ଏହାର କାରଣ ହେଉଛି ଯେ, ପ୍ୟାରିସଟି ହ୍ୱାଇଟ୍‌ହଲ୍ ଠାରୁ ବହୁ ଦୂରରେ ଅବସ୍ଥିତ । ଜଣେ ବ୍ୟକ୍ତି ହ୍ୱାଇଟ୍-ହଲରୁ ଲାଇସେନ୍‌ସ ପାଇଲା ପର୍ଯ୍ୟନ୍ତ ଅପେକ୍ଷା କରି ପାଣିକଳକୁ ଖୋଲ୍ ନ କଲେ ପାଣି ଅପେକ୍ଷା କାଗଜର ପରିମାଣ ଓ ଖାଉଟିମାନଙ୍କ ଅପେକ୍ଷା ସରକାରୀ କର୍ମଚାରୀଙ୍କ ସଂଖ୍ୟା ଅଧିକ ହୋଇଯିବ ।

ପ୍ୟାରିସ ପାଣିକଳଟିର ଗୁରୁତ୍ୱ ନାହିଁ ବୋଲି କୁହାଯାଇପାରିବ ନାହିଁ । ଆମ୍ଭେମାନେ ହିଗେଲ ଓ ମାର୍କସଙ୍କ ତତ୍ତ୍ୱକୁ ଭୁଲିଯାଇ ଜଣେ ନାଗରିକକୁ ରାଷ୍ଟ୍ର ବା ଏକ ଗୋଷ୍ଠୀର ଅନାମଧେୟ ଅଙ୍ଗ ରୂପେ ନ ଦେଖି ଅଧିକାର ଥିବା ଜଣେ ନାଗରିକ ରୂପେ ଦେଖିଲେ, ତା ପକ୍ଷରେ ଜାତୀୟ ସମସ୍ୟାଗୁଡ଼ିକ ପରି ତା ନିଜର ଜରୁରୀ ସମସ୍ୟାଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ବୋଲି ଧରି ନିଆଯାଇଥାଏ । ଶିଳ୍ପବିପ୍ଳବ ପରଠାରୁ ଜନସଂଖ୍ୟାର ଦ୍ରୁତ ବୃଦ୍ଧି ଓ ବଡ ବଡ ସହର ଗୁଡ଼ାକର ବସତି ସ୍ଥାପନ, ଆବଶ୍ୟକତା ହେତୁ ବଡ ଧରଣର ସେବାକାର୍ଯ୍ୟ ବ୍ୟବସ୍ଥା, ଶିଳ୍ପ କ୍ଷେତ୍ରରେ ଅଧିକ ଉତ୍ପାଦନ ପାଇଁ ବିଭିନ୍ନ ପ୍ରଣାଳୀ ପ୍ରୟୋଗ ଅର୍ଥାତ୍ ସଂକ୍ଷେପରେ କହିଲେ ଯନ୍ତ୍ରଦ୍ୱାରା ପରିଚାଳିତ ରାଷ୍ଟ୍ରଯୋଗୁଁ ରାଷ୍ଟ୍ରର ଅନ୍ତିମ ଲକ୍ଷ୍ୟ ରାଷ୍ଟ୍ର ବୋଲି ଧରି ନିଆ-ଯାଇଅଛି । କିନ୍ତୁ ଏହି ଚିନ୍ତାଧାରା ସ୍ପଷ୍ଟ ନୁହେଁ । ପ୍ରକୃତ ବିଶ୍ଳେଷଣ କଲେ ରାଷ୍ଟ୍ର ଜନସ୍ମିଥ, ତାଙ୍କର ସ୍ତ୍ରୀ ଓ ସନ୍ତାନ ସନ୍ତତି ଏବଂ ସେମାନଙ୍କ ସନ୍ତାନ ସନ୍ତତିଙ୍କୁ ନେଇ ଗଠିତ । ଗୋଟିଏ ତୈଳ କମ୍ପାନୀର ସ୍ୱତ୍ତ୍ୱ ଅପହରଣ କମ୍ବା କଙ୍ଗୋରେ ଯୁଦ୍ଧ କରିବା ଅପେକ୍ଷା ଶୋଇଲାବେଳେ

ପାଣି ପିଇଲେ ଅଧିକ ଗଣ୍ଡଗୋଳ ହୋଇପାରେ ବୋଲି ପ୍ରତ୍ୟେକ ଜନ୍‌ଷ୍ଟୁଅର୍ଟ ଜାଣି ଥାଆନ୍ତି । ନିଜ ବ୍ୟକ୍ତିଗତ ବ୍ୟାପାରରେ ଅଧିକ ନିମଗ୍ନ ରହିବା ଏବଂ ଜାତୀୟ ଓ ଆନ୍ତର୍ଜାତିକ ବ୍ୟାପାର ପ୍ରତି ଉଦାସୀନ ହେବା କଥାକୁ ପସନ୍ଦ କରାଯାଇ ନ ଥାଏ । କିନ୍ତୁ ରାଜନୀତିଜ୍ଞ ଓ ପ୍ରଶାସକମାନେ ଅପର ସୀମାରେ ରହି କହିପାରନ୍ତି ଯେ ଜନ୍‌ଷ୍ଟୁଅର୍ଟଙ୍କର କୌଣସି ବ୍ୟକ୍ତିଗତ ବ୍ୟାପାର ନାହିଁ । କୌଣସି ସମସ୍ୟା ବ୍ୟକ୍ତିଗତ ସମସ୍ୟା ବୋଲି ତାହା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ସେହିପରି କୌଣସି ସେବାକାର୍ଯ୍ୟ ସ୍ଥାନୀୟ ବୋଲି ତାହାର ଗୁରୁତ୍ୱ କମ୍ ବୋଲି କୁହାଯାଇପାରିବ ନାହିଁ ।

ଜାତୀୟ ସମସ୍ୟା-ଗୁଡ଼ିକ ଉପରେ ନିଶ୍ଚିତ ଭାବରେ ପ୍ରାଧାନ୍ୟ ଦିଆଯାଇଥାଏ । ସୌଖୀନ ରାଜନୀତିଜ୍ଞ ଓ ପେଶାଦାର ପ୍ରଶାସକମାନଙ୍କ ମଧ୍ୟରେ ବହୁ ଦିନରୁ ସମ୍ବନ୍ଧ ସ୍ଥାପିତ ହୋଇଯାଇଛି ଏବଂ ଏଥିରେ ସୌଖୀନ ରାଜନୀତିଜ୍ଞମାନେ ପେଶାଦାର ପ୍ରଶାସକମାନଙ୍କୁ ନିୟନ୍ତ୍ରଣ କରୁଛନ୍ତି ।

## ସରକାରୀ ସେବକଗୋଷ୍ଠୀ ( The Civil Service ) :

ଜଣେ ସରକାରୀ ସେବା ଗୋଷ୍ଠୀର ବ୍ୟକ୍ତିଙ୍କୁ କାହିଁକି ଏପରି ଆଖ୍ୟା ଦିଆଯାଇଥାଏ, ତାହା ବୋଧହୁଏ ସେ ଜାଣି ନ ଥାନ୍ତି । ତାଙ୍କୁ ମହାମାନ୍ୟା ରାଣୀଙ୍କର ବେସାମରିକ ସଂସ୍ଥାର ଜଣେ ଅଫିସର ବୋଲି କୁହାଯାଇଥାଏ । ଏହା ମହାମାନ୍ୟା ରାଣୀଙ୍କ ନୌ-ବିଭାଗ, ସ୍ଥଳ-ବିଭାଗ ଓ ବାୟୁ-ବିଭାଗ ଥିବା ସଂସ୍ଥାଗୁଡ଼ିକଠାରୁ ଭିନ୍ନ ଅଟେ । ଅନ୍ୟ ପ୍ରକାରେ କହିଲେ ଏକଥା କୁହାଯାଇଥାଏ ଯେ, ସରକାରୀ କର୍ମଚାରୀ ସାମରିକ କ୍ଷେତ୍ରରେ ନିଯୁକ୍ତ ଜଣେ ବ୍ୟକ୍ତି ଓ ତାଙ୍କ ପ୍ରତି ନୌ-ସୈନ୍ୟ, ସ୍ଥଳ-ସୈନ୍ୟ କିମ୍ବା ବାୟୁ-ସୈନ୍ୟ ବିଭାଗର ଶୃଙ୍ଖଳା ଲାଗୁ ହୁଏ ନାହିଁ । କାହିଁକି ତାଙ୍କୁ ପେଶାଦାର ବ୍ୟକ୍ତି ବୋଲି କୁହାଯାଇଥାଏ ତାହା ଜାଣିବା କଷ୍ଟକର । ବୈଧାନିକ ଦୃଷ୍ଟି କୋଣରୁ ଦେଖିଲେ ତାଙ୍କ ରାଜନୈତିକ ମୁଖ୍ୟଙ୍କ ପରି ସେ ରାଣୀଙ୍କର ଜଣେ ସେବକ ଓ ରାଣୀଙ୍କ ଇଚ୍ଛା ଅନୁସାରେ ତାଙ୍କୁ ବହିଷ୍କାର କରାଯାଇପାରେ । ତରଲ ଲୌହ ସଙ୍କୁଚିତ ହେଲାପରି ଜଣେ ସରକାରୀ କର୍ମଚାରୀଙ୍କ ନିଯୁକ୍ତି ପାଇଁ କୌଣସି ନିର୍ଦ୍ଦିଷ୍ଟ ଚୁକ୍ତି ହୁଏ ନାହିଁ; ସଂସଦୀୟ ଅଧିନିୟମରେ ବ୍ୟବସ୍ଥା ନ ଥିଲେ ଚାକରୀରୁ ଅନ୍ୟାୟ ବରଖାସ୍ତ ପାଇଁ ସେ ନ୍ୟାୟାଳୟରେ ମୋକଦ୍ଦମା କରିପାରିବେ ନାହିଁ । ସୁତରାଂ ନିଜ ରାଜନୈତିକ ମୁଖ୍ୟଙ୍କ ପରି ଜଣେ ସରକାରୀ କର୍ମଚାରୀଙ୍କ କାର୍ଯ୍ୟକାଳ ମଧ୍ୟ ଅନିର୍ଦ୍ଦିଷ୍ଟ ଥାଏ । ଜଳବାୟୁ ପରିବର୍ତ୍ତନ ହେଲା ପରି ରାଜନୀତିଜ୍ଞମାନେ ପରିବର୍ତ୍ତିତ ହେବାବେଳେ, ଟେନିସନ୍‌ଙ୍କ ଭାଷାରେ ସରକାରୀ କର୍ମଚାରୀମାନେ ସର୍ବଦା ସ୍ଥିର ରହିଥାନ୍ତି । ଏହି ଚିନ୍ତାଧାରା କେବଳ ପ୍ରଥା ବା ପରମ୍ପରା ଉପରେ ପ୍ରତିଷ୍ଠିତ ।

ଅଷ୍ଟାଦଶ ଶତାବ୍ଦୀର ରାଜନୀତିଜ୍ଞମାନେ ନିଜକୁ ରାଜନୀତିଜ୍ଞ ବୋଲି ଭାବୁ ନ ଥିଲେ । ସେମାନେ ରାଷ୍ଟ୍ରୀୟ ବ୍ୟାପାରରେ ଆଗ୍ରହ ପ୍ରକାଶ କରୁଥିବା ବିଶିଷ୍ଟ ବ୍ୟକ୍ତିଥିଲେ ଏବଂ ରାଜାଙ୍କ

ଅନୁରୋଧରେ ଉକ୍ତ ସ୍ଥଳରୁ ଦାୟିତ୍ୱ ବହନ କରୁଥିଲେ । ରାଜନୈତିକ ଖ୍ୟାତିସମ୍ପନ୍ନ ଲର୍ଡ ବା ସଂସଦର ସଭ୍ୟମାନଙ୍କ ମଧ୍ୟରୁ ସେମାନଙ୍କୁ ବଛା ଯାଉଥିଲା । ସଂସଦରେ ସଂଖ୍ୟା ଗରିଷ୍ଠତାର ଆବଶ୍ୟକତା ଥିବାରୁ ରାଜନୈତିକ ପ୍ରଭାବ ଥିବା ବ୍ୟକ୍ତିମାନଙ୍କୁ ସମ୍ରାଟ ବାଛୁଥିଲେ । ସେହି ବ୍ୟକ୍ତିମାନେ, ଅପର ପକ୍ଷରେ ଅଧସ୍ତନ କର୍ମଚାରୀ, ସଚିବ, ଉପସଚିବ, କିରାଣୀ, ଲେଖକ, ଅବକାଶ-କର୍ମଚାରୀ, ଜାହାଜ କର୍ମଚାରୀ ପ୍ରଭୃତି ନିଯୁକ୍ତ କରୁଥିଲେ । ସେମାନେ ଇଚ୍ଛାକଲେ ସେମାନଙ୍କ ଜ୍ଞାତି କୁଟୁମ୍ବ, ବନ୍ଧୁ ବାନ୍ଧବ ଓ ରାଜନୈତିକ ସମର୍ଥକମାନଙ୍କୁ ସେଥିପାଇଁ ନିଯୁକ୍ତ କରି ପାରନ୍ତି । ସର୍ବୋପରି ରାଣୀଙ୍କ ନାମରେ ଜଣେ ମନ୍ତ୍ରୀ ବିଭିନ୍ନ ବ୍ୟକ୍ତିଙ୍କୁ ବରଖାସ୍ତ କରି ପାରନ୍ତି ଓ ନିଜ ମନୋନୀତ ବ୍ୟକ୍ତିମାନଙ୍କ ଦ୍ୱାରା ସେହି ସ୍ଥାନଗୁଡ଼ିକ ପୂରଣ କରି ପାରନ୍ତି । ଉଭୟ ବ୍ୟକ୍ତିଗତ ଓ ରାଜନୈତିକ ସ୍ୱାର୍ଥ ସିଦ୍ଧି ପାଇଁ ଏହି "ଅନୁଗ୍ରହ" କ୍ଷମତାକୁ ପ୍ରୟୋଗ କରାଯାଏ । ରାଜକୋଷ, ନୌ-ବିଭାଗ ଓ ଘରୋଇ ମନ୍ତ୍ରଣାଳୟମାନଙ୍କରେ "ଅନୁଗ୍ରହ" ଦ୍ୱାରା ମନୋନୀତ ବ୍ୟକ୍ତିମାନଙ୍କୁ ବହୁ ସଂଖ୍ୟାରେ ନିଯୁକ୍ତ କରାଯାଉଥିଲା ଓ ଏହାର ରାଜନୈତିକ ଗୁରୁତ୍ୱ ଯଥେଷ୍ଟ ଥିଲା । ରାଜକୋଷରେ ବେଶୀ ଅନୁଗ୍ରହ ପ୍ରଦାନ ସୁଯୋଗ ଥିବାରୁ ଓ ଏହାର ରାଜନୈତିକ ଗୁରୁତ୍ୱ ଅତ୍ୟଧିକ ଥିବାରୁ ରାଜକୋଷର ପ୍ରଥମ ଲର୍ଡଙ୍କୁ ପ୍ରଧାନ ମନ୍ତ୍ରୀ କରାଯାଇଥିଲା ।

ରାଣୀ ଆନେଙ୍କ ରାଜତ୍ୱରେ ସଂସଦ ସଭ୍ୟମାନଙ୍କ ମଧ୍ୟରେ ଅନୁଗ୍ରହ ବଣ୍ଟନ କାର୍ଯ୍ୟ ଏକ ଅଧିନିୟମ ଦ୍ୱାରା ନିୟନ୍ତ୍ରିତ ହୋଇଥିଲା । ଏହି ବ୍ୟବସ୍ଥା ଫଳରେ ୧୭୦୫ ପରେ ଯେଉଁମାନେ ଅନୁଗ୍ରହ ଗ୍ରହଣ କରୁଥିଲେ, ସେମାନେ ସଂସଦର ସଭ୍ୟ ହେବା ଲାଗି ଅଯୋଗ୍ୟ ବିବେଚିତ ହେଉଥିଲେ । ଅନ୍ୟାନ୍ୟ ବୈଧାନିକ ବ୍ୟବସ୍ଥା, ଯଥା ୧୭୪୧ର ଅଧିନିୟମ ଓ ବର୍କଙ୍କ ୧୭୮୨ର ଅର୍ଥନୈତିକ ଅଧିନିୟମ ଫଳରେ ସଂସଦର ଜଣେ ସଭ୍ୟ କେଉଁ ପଦମାନ ଗ୍ରହଣ କରିପାରିବେ ତାହା ନିର୍ଦ୍ଧାରିତ ହୋଇଥିଲା । ଏହି ବ୍ୟବସ୍ଥା ଫଳରେ ସଂସଦର ସଭ୍ୟମାନେ ଯେଉଁ ପଦ ଗ୍ରହଣ କରିବେ ଓ ଯେଉଁ ପଦ ଗ୍ରହଣ କରିବେ ନାହିଁ ତାହା ମଧ୍ୟରେ ପାର୍ଥକ୍ୟ ଦର୍ଶାଯାଇଥିଲା ।

ଏହି ବ୍ୟବସ୍ଥା ଫଳରେ "ଅସ୍ଥାୟୀ ଓ ନିର୍ବାଚିତ ରାଜନୀତିଜ୍ଞ" ଏବଂ ସ୍ଥାୟୀ କର୍ମଚାରୀ-ମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ରହିଲା ନାହିଁ. ଅନୁଗ୍ରହ ପ୍ରଦାନ ବ୍ୟବସ୍ଥା ଥିଲା ପର୍ଯ୍ୟନ୍ତ କୌଣସି କର୍ମଚାରୀଙ୍କୁ ସ୍ଥାୟୀ କରାଯାଉ ନ ଥିଲା । କେବଳ ଆଇନଗତ ବ୍ୟବସ୍ଥା ଯୋଗୁ ଏହି ଅନୁଗ୍ରହ ପ୍ରଦାନ ପଦ୍ଧତି ଲୋପ ପାଇ ନ ଥିଲା; ବରଂ ମୁଖ୍ୟତଃ ପିଟ୍, ପିଲ୍ ଓ ଗ୍ଲାଡ଼ଷ୍ଟୋନଙ୍କ ସମୟରେ ପ୍ରଶାସନିକ ସଂସ୍କାର ଦ୍ୱାରା ଏହା ଲୋପ ପାଇଲା । ପ୍ରାଥମିକ ଅବସ୍ଥାରେ ରାଜକର୍ମଚାରୀ ନିଯୁକ୍ତି ଶାସକ ଗୋଷ୍ଠୀର ପରିବର୍ତ୍ତନ ଉପରେ ନିର୍ଭର କରିଥିଲା । ପରେ ଜଣେ ନୂତନ ରାଜନୀତିଜ୍ଞ କ୍ଷମତାକୁ ଆସିଲା ବେଳେ ନିଜ ବିଭାଗର କର୍ମଚାରୀମାନଙ୍କୁ ପରିବର୍ତ୍ତନ କରିପାରୁ ନ ଥିଲେ । ପ୍ରତିଯୋଗିତାମୂଳକ ପରୀକ୍ଷାରେ କର୍ମଚାରୀମାନଙ୍କୁ

ବଜ୍ରବଛ କରିବା ପାଇଁ ମାକ୍‌ଲେ ମୂତ୍ର ଦର୍ଶାଇବା ପରେ ଏହି ବ୍ୟବସ୍ଥାର ପ୍ରବର୍ତ୍ତିତ ହେଲା । ୧୮୩୩ ରେ ଭାରତୀୟ ସରକାରୀ ସେବାଗୋଷ୍ଠୀ ଅନୁଗ୍ରହ ପ୍ରଦାନ ବ୍ୟବସ୍ଥାରେ ସବୁଠାରୁ ବୃହତ୍ତମ ଓ ସକ୍ରିୟ ସଂସ୍ଥା ଥିଲା । ଏହି ସଂସ୍ଥା ପ୍ରତି ପ୍ରତିଯୋଗିତାମୂଳକ ପରୀକ୍ଷା ଲାଗୁ କରିବା ଲାଗି ମାକଲେ ଜିଦ୍ କରିଥିଲେ । ପରୀକ୍ଷା ସପକ୍ଷରେ ଥିବା ବ୍ୟକ୍ତିମାନଙ୍କ ବହୁ ସମାଲୋଚନା କରାଯାଇଥିଲା । ୧୮୫୫ ପର୍ଯ୍ୟନ୍ତ ଇଂଲଣ୍ଡରେ ଏହି ବ୍ୟବସ୍ଥା ଲାଗୁ ହୋଇ ନ ଥିଲା । ସେହି ବର୍ଷ ଏକ ବେସାମରିକ ସେବା ଆୟୋଗ ( Civil Service Commission ) ପ୍ରତିଷ୍ଠା କରାଯାଇଥିଲା । ଶ୍ରେଷ୍ଠ ଶ୍ରେଷ୍ଠ ଚାକିରୀ ପାଇଁ ପ୍ରାର୍ଥୀମାନଙ୍କ ଯୋଗ୍ୟତା ବିଷୟରେ ପ୍ରମାଣପତ୍ର ଦେବାପାଇଁ ଉକ୍ତ ଆୟୋଗଙ୍କୁ କ୍ଷମତା ପ୍ରଦାନ କରାଯାଇଥିଲା । ବିଭାଗମାନଙ୍କ ଦ୍ୱାରା ମନୋନୀତ ବ୍ୟକ୍ତିମାନଙ୍କ ପାଇଁ ମଧ୍ୟ ଏହି ପରୀକ୍ଷା ବ୍ୟବସ୍ଥା ହୋଇଥିଲା । ୧୮୫୯ ର ଅବସରକାଳୀନ ଅଧିନିୟମ ଦ୍ୱାରା ଅବସରକାଳୀନ ଭତ୍ତା ବ୍ୟବସ୍ଥା କରାଯିବା ଫଳରେ ଉପରୋକ୍ତ ପରୀକ୍ଷା ବ୍ୟବସ୍ଥାକୁ ସ୍ୱାଗତ କରାଯାଇଥିଲା । କେବଳ ବୈଷୟିକ କିମ୍ବା ବିଶେଷଜ୍ଞ ଯୋଗ୍ୟତା ସମ୍ପନ୍ନ ଚାକିରୀ ଓ ଶିଳ୍ପ କର୍ମଚାରୀମାନଙ୍କୁ ବାଦ୍‌ଦେଲେ ଅଧିକାଂଶ ସରକାରୀ ଚାକିରୀଗୁଡ଼ିକରେ ୧୮୭୦ ସୁଦ୍ଧା ପରୀକ୍ଷା ମାଧ୍ୟମରେ ନିଯୁକ୍ତି ଦିଆଯାଉଥିଲା ।

ଆଜିକାଲି ସରକାରୀ ସେବା ସଂସ୍ଥାକୁ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଇଛି ଏବଂ ଶିକ୍ଷାଗତ ଯୋଗ୍ୟତା ସ୍ଥିର କରି ପରୀକ୍ଷାମାଧ୍ୟମରେ ନିଯୁକ୍ତି ଦିଆଯାଉଛି । ଏମାନଙ୍କ ମଧ୍ୟରେ ପ୍ରଶାସକ ଶ୍ରେଣୀ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଏହି ଶ୍ରେଣୀର ଲୋକମାନଙ୍କୁ ବିଶ୍ୱବିଦ୍ୟାଳୟମାନଙ୍କରୁ ନିଯୁକ୍ତି ଦିଆଯାଇଥାଏ । ମନ୍ତ୍ରୀମାନଙ୍କ ନିୟନ୍ତ୍ରଣରେ ରହି ସେମାନେ ମୁଖ୍ୟତଃ ସରକାରୀନୀତି-ନିର୍ଦ୍ଧାରଣ ଓ କାର୍ଯ୍ୟକାରୀ କରିବା ପାଇଁ ଦାୟୀ ରହନ୍ତି । ରାଣୀ ଭିକ୍ଟୋରିଆଙ୍କ ସମୟରୁ ଏହି ବ୍ୟବସ୍ଥା ଚାଲି ଆସିଛି ଯେ ଯେଉଁମାନେ ସରକାରଙ୍କ ଅନୁଗ୍ରହ ଲାଭ କରିଥାନ୍ତି, ସେମାନେ ମହାମାନ୍ୟା ରାଣୀଙ୍କ ବିଶ୍ୱସ୍ତପାତ୍ରମାନଙ୍କ ପରି ସୁଦକ୍ଷ ଓ ସଚ୍ଚୋଟ ହେବାପାଇଁ ଚେଷ୍ଟା କରିଥାନ୍ତି । ଏହାର ବୌଦ୍ଧିକ ସ୍ତର ମଧ୍ୟ ଉଚ୍ଚତର ଥାଏ । ପ୍ରତ୍ୟେକ ପୁରୁଷର ସର୍ବଶ୍ରେଷ୍ଠ ଜ୍ଞାନ-ସମ୍ପନ୍ନ ବ୍ୟକ୍ତିମାନଙ୍କୁ ଏଥିରେ ଅନ୍ତର୍ଭୁକ୍ତ କରାଯାଇ ନ ଥାଏ, କାରଣ ସେମାନେ ସାଧାରଣତଃ ବିଦ୍ୱାନ, ବୈଜ୍ଞାନିକ ଓ ବିଶେଷଜ୍ଞ । ଅବଶ୍ୟ ଏଥିରେ ପ୍ରାପ୍ତ ଭଲ ଲୋକମାନଙ୍କୁ ନିଆଯାଇଥାଏ । ପୁନଶ୍ଚ ଏଥିରେ ବିଶେଷଜ୍ଞ ନ ହୋଇଥିଲେ ବି ପ୍ରଥମ କିମ୍ବା ଦ୍ୱିତୀୟ ଶ୍ରେଣୀ ଶିକ୍ଷା ଯୋଗ୍ୟତା ଥିବା ବ୍ୟକ୍ତିମାନଙ୍କୁ ଏହିପରି ଭାବରେ ନିଯୁକ୍ତ କରାଯାଏ । ସାଧାରଣ ବିଦ୍ୟାଳୟ ଓ ଆବାସୀ ବିଶ୍ୱବିଦ୍ୟାଳୟଗୁଡ଼ିକର ଯାହା ଦୋଷ ଥାଉନା କାହିଁକି ସେଗୁଡ଼ିକ ଚରିତ୍ରବାନ୍ ଓ ବଳିଷ୍ଠମନା ଯୁବକ ଯୁବତୀମାନଙ୍କୁ ଗଢ଼ି ଥାଆନ୍ତି ଏବଂ ଏମାନଙ୍କ ମଧ୍ୟରୁ ଅତୀତରେ ଅନେକ ସୁଦକ୍ଷ ସରକାରୀ କର୍ମଚାରୀ ରୂପେ ଖ୍ୟାତି ଅର୍ଜନ କରିଛନ୍ତି ।

ଲୋକପ୍ରିୟ ସମ୍ବାଦପତ୍ରଗୁଡ଼ିକ ସରକାରୀ କର୍ମଚାରୀମାନଙ୍କର କାଳକ୍ଷେପଣ ନୀତି, କଳ୍ପନା ବିଳାସ ଓ "ନାଲିଫିତା"ର କାରମତ ବିଷୟରେ ଅଭିଯୋଗ କରିଥାଆନ୍ତି କିନ୍ତୁ

ତାହା ସମ୍ପୂର୍ଣ୍ଣ ରୂପେ ସତ୍ୟ ନୁହେଁ । କୌଣସି ଏକ ବଡ଼ ସମସ୍ୟାରେ ନିଷ୍ପତ୍ତି ନେବା ସମସ୍ତ-ସାପେକ୍ଷ ହୋଇଥାଏ । ଜଣେ ବ୍ୟବସାୟୀ କୌଣସି ଗୋଟିଏ ବିଷୟରେ ନିଷ୍ପତ୍ତି ନେଇ-ପାରେ; ପରିସ୍ଥିତି ଅନୁକୂଳ ଥିଲେ ସେ ଲାଭ କରେ କିମ୍ବା ପରିସ୍ଥିତି ପ୍ରତିକୂଳ ହେଲେ ସେ କ୍ଷତି ସହେ । ମନ୍ତ୍ରୀଙ୍କ ତରଫରୁ କାର୍ଯ୍ୟ କରୁଥିବାରୁ ଜଣେ ସରକାରୀ କର୍ମଚାରୀ ଭୁଲ କରିବା ଆଶା କରାଯାଏ ନାହିଁ । ମନ୍ତ୍ରୀ ବା ସରକାରୀକର୍ମଚାରୀ ନିଜ ବିଜୟ ଓ ପରାଜୟ ମଧ୍ୟରେ ଭାରସାମ୍ୟ ରକ୍ଷା କରିପାରନ୍ତି ନାହିଁ । ଏଥିପାଇଁ ଏକାଧିକ ସରକାରୀ କର୍ମଚାରୀଙ୍କ ପରାମର୍ଶ ଆବଶ୍ୟକ ହୋଇଥାଏ ଓ ଏହି ପ୍ରଣାଳୀ ସମୟସାପେକ୍ଷ । "ଲାଲଫିତା" ସାଧାରଣତଃ ଆର୍ଥିକ ନିୟନ୍ତ୍ରଣ ସହିତ ଜଡ଼ିତ । ଜଣେ ବ୍ୟବସାୟୀ ବର୍ଷସାରା ଯଥେଷ୍ଟ ଲାଭ ପାଇବାର ସମ୍ଭାବନା ଥିଲେ ସେ କ୍ଷତି ସହିବାକୁ ମଧ୍ୟ ପ୍ରସ୍ତୁତ ହୋଇପାରେ । ସାଧାରଣ ଲୋକ ଓ କମନ୍ସସଭା ସାଧାରଣ ଅର୍ଥର ଅପବ୍ୟୟ ଚାହାନ୍ତି ନାହିଁ । ରାଜକୋଷ ଅପେକ୍ଷା ସାଧାରଣ ହିସାବ ସମୀକ୍ଷା ସମିତି ଆର୍ଥିକ "ଲାଲଫିତା" ବିଷୟରେ ବିଶେଷଭାବେ ଜଡ଼ିତ ଥାଏ । କମନ୍ସ ସଭାର ଏହି ସମିତି ଶହେ ବର୍ଷ ଧରି ବସି ଆସୁଅଛି, ଏହା କେତେକ ନିୟମକାନୁନ ଜାରିକରିଛି । ଏହି ନିୟମକାନୁନ୍‌ଗୁଡ଼ିକୁ ରାଜକୋଷ ଏବଂ ହିସାବରକ୍ଷକ ଓ ମହାସମୀକ୍ଷକ ପାଳନ କରିଥାଆନ୍ତି ।

ଉପରୋକ୍ତ ନିୟନ୍ତ୍ରଣ ଯୋଗୁ ସରକାରୀ କର୍ମଚାରୀମାନଙ୍କର ଦୋଷ ଦୁର୍ବଳତା ପ୍ରକାଶ ପାଏ ନାହିଁ, ବରଂ ପ୍ରଶାସନ କ୍ଷେତ୍ରରେ ବେଗ ଓ ଦକ୍ଷତା ବୃଦ୍ଧି ପାଏ । ସାଧରଣ ପ୍ରଶାସନ କ୍ଷେତ୍ରରେ ଏପରି ବ୍ୟବସ୍ଥା ହେବା ଦରକାର । ସରକାରୀ ସେବାସଂସ୍ଥା ବେଶୀ ଦାୟିତ୍ୱ ନ ନିଅନ୍ତି ବୋଲି କହିବାରେ ଯଥେଷ୍ଟ କାରଣ ଅଛି । ରାଷ୍ଟ୍ର ବାଣିଜ୍ୟ ବା ଶିଳ୍ପ ବିଷୟ ବୁଝାବୁଝି କଲାବେଳେ ଏହା ବାଣିଜ୍ୟ ଓ ଶିଳ୍ପ ପ୍ରଣାଳୀ ବ୍ୟବହାର କରିଥାଏ । ଏଥିପାଇଁ ସରକାରୀ ସେବାଗୋଷ୍ଠୀ ପାଇଁ ନିର୍ଦ୍ଦିଷ୍ଟ ଥିବା ପ୍ରଣାଳୀ ପ୍ରଯୁଜ୍ୟ ହୋଇ ନ ଥାଏ । ସରକାରୀ କର୍ମଚାରୀମାନେ ନୀତି ନିର୍ଦ୍ଧାରଣ ସହ ସଂପୃକ୍ତ ଥାଆନ୍ତି । ଏ କ୍ଷେତ୍ରରେ ସେମାନଙ୍କର ଦୂର-ଦୃଷ୍ଟିରେ ଅଭାବ ଥାଏ ବୋଲି ଅଭିଯୋଗ କରାଯାଏ । ଅପରପକ୍ଷରେ ବୈଦେଶିକ ନୀତି, ଔପନିବେଶିକ ନୀତି ଆର୍ଥିକ ନୀତି ବା ସମାଜମଙ୍ଗଳ ନୀତି ନିରବଚ୍ଛିନ୍ନ ଭାବରେ ଅନୁଧ୍ୟାନ କଲେ, ସରକାରୀ କର୍ମଚାରୀମାନଙ୍କ ଦୂରଦୃଷ୍ଟି ଅଭାବ ଥିବା କଥା ପ୍ରମାଣ ହୁଏ ନାହିଁ । କେତେଗୋଟି ରାଜନୈତିକ ସମସ୍ୟାର ସମାଧାନ ଅଛି । ନିଶ୍ଚିତ ସମାଧାନ ଥିଲେ ତାହାକୁ ସମସ୍ୟା କୁହାଯାଇପାରିବ ନାହିଁ । ଅଧିକାଂଶ ସମୟରେ ସରକାରୀ ସେବାସଂସ୍ଥା ମନ୍ତ୍ରୀମାନଙ୍କୁ ଉପଯୁକ୍ତ ପରାମର୍ଶ ଦେଇଥାଏ । ଜଣେ ବାହାରର ବିଶେଷଜ୍ଞ ଏହି ବିଷୟ ଅନୁଧ୍ୟାନ କଲେ ଜାଣି ପାରିବ ଯେ ପରାମର୍ଶ ଦେବାରେ ବିଶେଷ ଅବହେଳା ପରିଲକ୍ଷିତ ହୋଇ ନ ଥାଏ; ବିଶେଷତଃ ବୈଦେଶିକ ବ୍ୟାପାରରେ ବେଳେବେଳେ କ୍ଷେତ୍ର ଉପରେ ହଠାତ୍ ନିଷ୍ପତ୍ତି ନିଆଯାଏ ।

ସରକାରୀ ସେବା ଗୋଷ୍ଠୀରେ ଅତି ଅଧିକ ସଂଖ୍ୟକ କର୍ମଚାରୀ ଅଛନ୍ତି ଓ ସେମାନଙ୍କୁ ବହୁତ ବେଶୀ ଦରମା ଦିଆଯାଉଛି ବୋଲି କୁହାଯାଉଥିବା ଅଭିଯୋଗ ସତ୍ୟ ନୁହେଁ; ପ୍ରକୃତରେ ସରକାରୀ ସେବାରେ ବହୁତ କମ୍ କର୍ମଚାରୀ ଅଛନ୍ତି ଓ ସେମାନଙ୍କୁ ବେଶୀ ବେତନ ଦିଆଯାଉ ନାହିଁ । ଜଣେ ଉଚ୍ଚ ପ୍ରଶାସକଙ୍କୁ କ୍ୱଚିତ ଅବସର-ବିନୋଦନ ପାଇଁ ସମୟ ମିଳେ । ସେ ସର୍ବଦା ସମସ୍ୟାଗୁଡ଼ିକ ଭିତରେ ବୁଡ଼ି ରହି ତାହାର ସମାଧାନରେ ବ୍ୟସ୍ତ ଥାନ୍ତି । ସେ ମଟରଗାଡ଼ି ଚଳାଇବା ବେଳେ, ଲୁଗାଧୋଇବା ବେଳେ, ଏପରିକି "ଗଲ୍ଫ" ଖେଳିବାବେଳେ, ପରଦିନ ସରକାରୀ ବିବରଣୀରେ କ'ଣ ଲେଖାଯିବ ତାହାହିଁ ଭାବୁଥାନ୍ତି । ଅସୁବିଧା ଏହି ଯେ, ତାଙ୍କୁ ବହୁତଗୁଡ଼ିଏ ବିବରଣୀ ଲେଖିବାକୁ ପଡ଼ିଥାଏ । ସରକାରୀ ସମସ୍ୟାଗୁଡ଼ିକରେ ସମସ୍ତଙ୍କ ସ୍ୱାର୍ଥ ଜଡ଼ିତ ଥିବାରୁ ସେ, ଶ୍ରମବିଭାଜନ କରିପାରନ୍ତି ନାହିଁ । ତେଣୁ ସରକାରୀ ସେବା ଗୋଷ୍ଠୀରେ ଥିବା ଉଚ୍ଚ ପ୍ରଶାସକମାନଙ୍କ କାର୍ଯ୍ୟ ଅତ୍ୟଧିକ ଓ ଏହା ସରକାରୀ ବ୍ୟବସ୍ଥାରେ ଅପରିହାର୍ଯ୍ୟ ଅଟେ । କାମ ତୁଳନାରେ ସରକାରୀ କର୍ମଚାରୀମାନେ ଯେଉଁ ବେତନ ପାଆନ୍ତି ତାହା ବାହାରେ ସେହି ସ୍ତରରେ କାମ ପାଇଁ ମିଳୁଥିବା ବେତନର ପ୍ରାୟ ଏକ ତୃତୀୟାଂଶ ଅଟେ । ସୁତରାଂ ସରକାରୀ ଚାକିରିରେ ଦକ୍ଷତା ବୃଦ୍ଧି ପାଇଁ ଜଣେ କର୍ମଚାରୀ ନିଜର ସମସ୍ତ ଶକ୍ତି ହରାଇବା ପରେ ବି ତାଙ୍କୁ ଅବସରକାଳୀନ ଭତ୍ତା ଦେଇ ସ୍ୱଳ୍ପ ସୁଖସ୍ୱାଚ୍ଛନ୍ଦ୍ୟରେ ରହିବା ସୁବିଧା ଦିଆଯିବା ଆବଶ୍ୟକ । ଏଥିପାଇଁ ରାଣୀ ତାଙ୍କୁ କେ. ସି. ବି କିମ୍ବା କେ. ସି. ଏସ୍. ଆଇ ସମ୍ମାନରେ ଭୂଷିତ କରିବା ମଧ୍ୟ ଆବଶ୍ୟକ ।

## ମନ୍ତ୍ରୀମାନଙ୍କ ନିୟନ୍ତ୍ରଣ (Ministerial Control) :

ପୁରାତନ ସରକାରୀ ପଦ୍ଧତିକୁ ଗୋଟିଏ ପଦ୍ଧତି ବୋଲି ଧରାଗଲେ ବି ତାହା ସୌଖୀନ ବ୍ୟକ୍ତିମାନଙ୍କ ଶାସନ ଥିଲା ବୋଲି କୁହାଯାଇଥାଏ । ରାଜାଙ୍କ ଦ୍ୱାରା ଆହୂତ ହେଲେ ଜଣେ ଲର୍ଡ଼ ନିଜ ଇଲାକା ପରିଚାଳନା କଲାପରି ଦେଶ ପରିଚାଳନା କରୁଥିଲେ । କହିବାକୁ ଗଲେ ସେ ଶାସନ କରିବା ପାଇଁ ଜନ୍ମ ହୋଇଥିଲେ । ସେହି ପରିପ୍ରେକ୍ଷୀରେ ଇଂଲଣ୍ଡର ଶାସନକୁ ନୂତନ ଲକ୍ଷ୍ୟରଖି ନୂତନ ଅନୁଷ୍ଠାନଗୁଡ଼ିକ ସହିତ ଚାଲିବାକୁ ହୋଇଥିଲା । ଏହା ସତ୍ତ୍ୱେ ସୌଖୀନ ଶାସକକୁ ସୌଖୀନ ଭାବେ ରହିବାକୁ ହୁଏ । ସେ ସିସିଲସ କିମ୍ବା ପରସି-ର ଲର୍ଡ଼ ହୋଇପାରନ୍ତି, ସେ ସ୍ମିଥ୍ କିମ୍ବା ଜନ୍ ହୋଇପାରନ୍ତି । ସେ ବିରାଟ ଭୂମି ମାଲିକ କିମ୍ବା ଶ୍ରମିକ ନେତା ହୋଇପାରନ୍ତି, ସେ ଇଟନ ସ୍କୁଲ କିମ୍ବା କିଙ୍ଗ୍ସ କଲେଜ ବା କୌଣସି ପରିଷଦ ବିଦ୍ୟାଳୟରୁ ନିଜ ଶିକ୍ଷା ଓ ଅଭିଜ୍ଞତା ହାସଲ କରିପାରିଥାନ୍ତି, ଏହା ସତ୍ତ୍ୱେ ସେ ଅବ୍ୟାବସାୟିକ ସୌଖୀନ ଶାସକ ଅଟନ୍ତି । ସେ ଓ ତାଙ୍କ ପୂର୍ବାଧିକାରୀଙ୍କ ମଧ୍ୟରେ ପାର୍ଥକ୍ୟ ଏହି ଯେ, ସେ ଜଣେ ରାଜନୀତିଜ୍ଞ ଓ କ୍ଷମତାସୀନ ଦଳର ଜଣେ ସକ୍ରିୟ ସଭ୍ୟ ଅଟନ୍ତି । ସଂସଦୀୟ ନିର୍ବାଚନ ପାଇଁ ଜଣେ ପ୍ରାର୍ଥୀଙ୍କୁ ନିର୍ଦ୍ଦିଷ୍ଟ ଯୋଗ୍ୟତା ହାସଲ କରିବାକୁ ହୁଏ ଏବଂ ସେ ନିଜ ନିର୍ବାଚନ ମଣ୍ଡଳୀ ପାଇଁ ଦଳ ଦ୍ୱାରା ଉପଯୁକ୍ତ ବିବେଚିତ ହେବା ଉଚିତ । (ଅବଶ୍ୟ କେତେ ଜଣ ମନ୍ତ୍ରୀ ଲର୍ଡ଼ମାନଙ୍କ ମଧ୍ୟରୁ ନିଯୁକ୍ତ ହୁଅନ୍ତି ଓ ସେମାନଙ୍କୁ

ସୂଙ୍କ ପୁରୁଷର ଲୋକ ବୋଲି ଧରନିଆଯାଏ ) । ମନ୍ତ୍ରିମଣ୍ଡଳ ଦ୍ୱାରା ଅନୁସୃତ ନୀତି ସରକାରଙ୍କ ପ୍ରଚଳିତ ନୀତି ଅନୁରୂପ ହେବା ଓ ଗତ ନିର୍ବାଚନରେ ବିଜୟ ଲାଭ କରିଥିବା ଦଳର ନୀତି ସହ ମିଳୁଥିବା କଥା ଜଣେ ପ୍ରାର୍ଥୀଙ୍କୁ ଦେଖିବାକୁ ପଡ଼ିଥାଏ ।

ରାଣୀ ଜଣେ ରାଜନୈତିକ ନେତାଙ୍କୁ ସରକାର ଗଠନ ପାଇଁ ନିମନ୍ତ୍ରଣ କଲା ପରେ ଉକ୍ତ ନେତାଙ୍କୁ ଏକଶହ ପର୍ଯ୍ୟନ୍ତ ପଦ ପୂରଣ କରିବାକୁ ପଡ଼େ । ଏହି ବିଷୟ ପରେ ବିଶଦ୍ ଭାବରେ ଆଲୋଚନା କରାଯାଇଅଛି । ସେହି ନେତାଙ୍କୁ ଜଣେ ଚ୍ୟାନ୍ସେଲର ଅଫ୍ ଦି ଏକ୍ସ-ଚେକର, ଜଣେ ଅର୍ଥ ସଚିବ ଓ କେତେକ ଲର୍ଡ଼ଙ୍କୁ ନିଯୁକ୍ତି ଦେବାକୁ ହୋଇଥାଏ । ସେ ବୈଦେଶିକ ବ୍ୟାପାରରେ ଜଣେ ବୈଦେଶିକ ମନ୍ତ୍ରୀ ଓ ସଂସଦୀୟ ସଚିବ ଦରକାର କରନ୍ତି । ବାଣିଜ୍ୟ ମଣ୍ଡଳରେ ସେ ଜଣେ ଅଧ୍ୟକ୍ଷ ଓ ସଂସଦୀୟ ସଚିବ ଚାହାଁନ୍ତି । ଶିକ୍ଷାମନ୍ତ୍ରଣାଳୟ ପାଇଁ ଜଣେ ମନ୍ତ୍ରୀ ଓ ସଂସଦୀୟ ସଚିବଙ୍କ ଆବଶ୍ୟକତା ଥାଏ । ଏହି ତାଲିକାର କୌଣସି ନିର୍ଦ୍ଦିଷ୍ଟ ରୂପରେଖ ନାହିଁ । ସେ ହୁଏତ ସ୍ୱାସ୍ଥ୍ୟ ଓ ସ୍ୱାୟତ୍ତ ଶାସନ ବିଭାଗକୁ ଏକତ୍ର କରିବା ପାଇଁ, ଅଥବା ଗୃହ ଏବଂ ସହର ଓ ଗ୍ରାମ୍ୟ ଯୋଜନା ବିଭାଗକୁ ଅଲଗା କରିବା ପାଇଁ ଅଥବା ଶିଳ୍ପକୁ ବାଣିଜ୍ୟ ବିଭାଗରୁ ଅଲଗା କରି ଶ୍ରମ ବିଭାଗ ସହିତ ଯୋଗ କରିବା ପାଇଁ ନିଷ୍ପତ୍ତି କରିପାରନ୍ତି । ମୋଟ ଉପରେ କେନ୍ଦ୍ର ପ୍ରଶାସନର ସମସ୍ତ ବିଭାଗକୁ ରାଜନୈତିକ ନିୟନ୍ତ୍ରଣାଧୀନ କରିବା ତାଙ୍କର କର୍ତ୍ତବ୍ୟ । ସରକାରୀ କର୍ମଚାରୀମାନେ ସରକାରୀ କଳ ପରିଚାଳନା କରନ୍ତି । କିନ୍ତୁ ସେମାନଙ୍କୁ କମନ୍‌ସ ସଭା ପାଖରେ ଓ କମନ୍‌ସ ସଭା ମାଧ୍ୟମରେ ନିର୍ବାଚକମାନଙ୍କ ପାଖରେ ଉତ୍ତର ଦାୟୀ କରିବା ପାଇଁ ବିଭିନ୍ନ ବିଭାଗକୁ କେତେ ଜଣ ବ୍ୟକ୍ତି ନିୟନ୍ତ୍ରଣ କରିବା ଆବଶ୍ୟକ ।

ଏହି ଦାୟିତ୍ୱର ଦୁଇଟି ଦିଗ ଅଛି । ପ୍ରଥମତଃ, ରାଜନୈତିକ ଗୁରୁତ୍ୱ ଥିବା ପ୍ରଶ୍ନଗୁଡ଼ିକ ମନ୍ତ୍ରୀଙ୍କ ବ୍ୟକ୍ତିଗତ ନିଷ୍ପତ୍ତି ପାଇଁ ତାଙ୍କ ପାଖକୁ ପଠାଯାଏ । ମନ୍ତ୍ରୀଙ୍କ ପାଖକୁ କ'ଣ ପଠାଇବାକୁ ପଡ଼ିବ ଓ କ'ଣ ପଠା ନ ଯିବ ତାହା ଜାଣିବା ସୁଦକ୍ଷ ସରକାରୀ କର୍ମଚାରୀଙ୍କ କର୍ତ୍ତବ୍ୟ ଅଟେ । ପ୍ରତ୍ୟେକ ବିରାଟ ମନ୍ତ୍ରଣାଳୟର କାର୍ଯ୍ୟ ପରିସର ଯଥେଷ୍ଟ ବେଶୀ । ଅବଶ୍ୟ ରାଜନୈତିକ ଗୁରୁତ୍ୱ ଅନୁସାରେ ଏଥିରେ ପାର୍ଥକ୍ୟ ଥାଏ । ଗୋଟିଏ ପାଖରେ ବୈଦେଶିକ ମନ୍ତ୍ରଣାଳୟକୁ ଉଦାହରଣସ୍ୱରୂପ ନିଆଯାଇପାରେ । ଏହାର ସେ କୌଣସି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ରାଜନୈତିକ ବାଦ ବିବାଦ ମଧ୍ୟକୁ ଟାଣି ନେଇପାରେ । ଅନ୍ୟ ଦିଗରେ ଡାକ-ମନ୍ତ୍ରଣାଳୟ ( ପୋଷ୍ଟ ଅଫିସ )ର ଉଦାହରଣ ଦିଆଯାଇପାରେ । ଏଠାରେ ଅଧିକାଂଶ ନିଷ୍ପତ୍ତି କାର୍ଯ୍ୟପାଳିକା ପରିସର ମଧ୍ୟରେ ଅନ୍ତର୍ଭୁକ୍ତ ଓ ଏଥିପାଇଁ ଯଥେଷ୍ଟ ସତର୍କତା ଅବଲମ୍ବନ କରିବା ଆବଶ୍ୟକ ହୋଇଥାଏ । ଜଣେ ମନ୍ତ୍ରୀ ଦୈନନ୍ଦିନ ପ୍ରଶ୍ନ ଗୁଡ଼ିକର ଏକ ଦଶମାଂଶ ସମାଧାନ କରିବାକୁ ଚାହିଁଲେ ତାଙ୍କୁ ଅଧିକ ଲେଖାଲେଖି କାର୍ଯ୍ୟ ଓ ସମିତି ଆଲୋଚନାରେ ବ୍ୟସ୍ତ ରହିବାକୁ ପଡ଼ିବ । ଏଣୁ ବୃତ୍ତିଗତ ଅଭିଜ୍ଞ ଉପଦେଷ୍ଟାମାନଙ୍କ ପରାମର୍ଶରେ ସେ କେବଳ

ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକ ଉପରେ ତାଙ୍କ ବ୍ୟକ୍ତିଗତ ମତ ଦେଇଥାଆନ୍ତି । ଏଥିପାଇଁ ସେ ତାଙ୍କ ସଂସଦୀୟ ସଚିବଙ୍କଠାରୁ ମଧ୍ୟ ସାହାଯ୍ୟ ପା'ନ୍ତି । ସାଧାରଣଭାବରେ ସଂସଦୀୟ ସଚିବଙ୍କୁ ମନ୍ତ୍ରୀଙ୍କ ତରଫରୁ କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ କାର୍ଯ୍ୟ କରିବା ପାଇଁ ଅନୁମତି ଦିଆଯାଇଥାଏ ।

ମନ୍ତ୍ରୀମାନେ ବ୍ୟବସାୟିକ ପ୍ରଶାସକ ନୁହଁନ୍ତି ବୋଲି ଏଠାରେ ସ୍ମରଣ କରାଯାଇପାରେ । ଲର୍ଡ଼ ହ୍ୱାଲଡନଙ୍କ ପରି କେତେ ଜଣ ମନ୍ତ୍ରୀ ଦକ୍ଷ ପ୍ରଶାସକ ଥିଲେ । ଅପର ପକ୍ଷରେ ଜନ୍ ବ୍ରାଇଟ୍‌ଙ୍କ ପରି କେତେଜଣ ମନ୍ତ୍ରୀ କିଛି ଶିଖିବା ପାଇଁ ଚେଷ୍ଟା କରୁ ନ ଥିଲେ । ପ୍ରଶାସନ ବିଷୟରେ ଶିକ୍ଷା ଦିଆଯାଇପାରିବ ନାହିଁ, କିନ୍ତୁ ଜଣେ ପ୍ରଶାସକ ଚାହିଁଲେ ନିଜେ ତାହା ଶିଖିପାରନ୍ତି । ଏଥିପାଇଁ "ବିଚାରଶକ୍ତି" ପରି ଏକ ଅସାଧାରଣ ଗୁଣ ଆବଶ୍ୟକ । ଏହି ବିଷୟ ବର୍ଣ୍ଣନା କରିବା କଷ୍ଟସାଧ୍ୟ, କାରଣ ଏହାକୁ ବିଶ୍ଳେଷଣ କରିବା ଅପେକ୍ଷା ସହଜରେ ଚିହ୍ନିହୋଇଥାଏ । କୌଣସି ସମସ୍ୟାର ମୂଳ ବାହାର କରି ସେଥିରୁ ସାରାଂଶ କାଢ଼ିବା ଉପରେ ଏହା ଆଂଶିକ ନିର୍ଭର କରେ । ଗୋଟିଏ ପୋଖରୀ ଭିତରକୁ ଖଣ୍ଡିଏ ପଥର ଫୋପାଡ଼ିଲେ ଯେପରି ଚାରିଆଡ଼କୁ ଢେଉ ଖେଳିଯାଏ ସରକାରୀ ସମସ୍ୟାଗୁଡ଼ିକ ଠିକ୍ ସେହିପରି ଜଟିଳ । ଜଣେ ଅନଭିଜ୍ଞ ଶାସକ ଏହି ଜଟିଳତାକୁ ଦେଖି ତାର ସମାଧାନ କରିବାକୁ ଚେଷ୍ଟା କରିଥାଏ, ବେଳେବେଳେ ସେ ଏହାର ଜଟିଳ ଓ ଚତୁର ସମାଧାନ କରିଥାଏ । ବିଶେଷଜ୍ଞମାନେ ପ୍ରକୃତ ସମସ୍ୟା ଉପରେ ସମ୍ୟକ୍ ଦୃଷ୍ଟିପାତ କରିଥାନ୍ତି ଓ କେଉଁ ବାଟରେ ସମାଧାନ ହେବ ତାହା ମଧ୍ୟ ଦର୍ଶାଇ ଥାଆନ୍ତି । କେତେ ଜଣ ରାଜନୀତିଜ୍ଞ ଏଥିରୁ ସମାଧାନର ସୂତ୍ର ବାହାର କରନ୍ତି, କାରଣ ରାଜନୈତିକ ଦ୍ୱନ୍ଦ୍ୱ ମଧ୍ୟରେ ପ୍ରତ୍ୟେକ ସମସ୍ୟା ସରଳ ହୋଇଯାଇଥାଏ । ଅବାଧ ବାଣିଜ୍ୟ ପରି ବ୍ୟାପକ ଅର୍ଥନୈତିକ ସମସ୍ୟା ଉପରେ ଜଣେ ଅର୍ଥନୀତିଜ୍ଞ ଗୋଟିଏ ପୁସ୍ତକ ରଚନା କରିବାକୁ ଇଚ୍ଛା କରିପାରନ୍ତି, କିନ୍ତୁ ମିଡ୍‌ଲଣ୍ଡ ବା ଦକ୍ଷିଣମାଉଥ୍ ପରି ସ୍ଥାନରେ ସାଧାରଣ ଲୋକ ବୁଝିବାପରି ଏହି ବିଷୟ ଉପରେ ରାଜନୀତିଜ୍ଞଙ୍କୁ ଭାଷଣ ଦେବାକୁ ହୁଏ । ଏହି ଭାଷଣରେ ସେହି ରାଜନୀତିଜ୍ଞ ମୁଖ୍ୟ ସମସ୍ୟାଗୁଡ଼ିକୁ ଉତ୍ଥାପିତ କରିଥିଲେ ଏହା ତାଙ୍କର ଏକ ଅବଦାନ ବୋଲି ବିଚାର କରାଯାଏ ।

ସାଧାରଣତଃ, ସରଳ ସମାଧାନ ସବୁଠାରୁ ଶ୍ରେଷ୍ଠ ସମାଧାନ ରୂପେ ବିବେଚିତ ହୋଇଥାଏ । ଏହାକୁ ସେପରି ଭାବରେ ଗ୍ରହଣ କରା ନ ଗଲେ ବି ଏହାକୁ ଏକ ଗ୍ରହଣଯୋଗ୍ୟ ସମାଧାନ ବୋଲି ଧରିନିଆଯାଏ, କାରଣ ସାଧାରଣ ଲୋକେ ଏହାକୁ ସହଜରେ ବୁଝିପାରନ୍ତି । ସାଧାରଣ ଲୋକେ କିପରି ପ୍ରତିକ୍ରିୟା ପ୍ରକାଶ କରୁଛନ୍ତି ତାହା ଜଣେ ସୁଦକ୍ଷ ପ୍ରଶାସକ ନିଜ ପ୍ରବୃତ୍ତି ଦ୍ୱାରା ନ ଜାଣିଲେ ବି ନିଜ ଅଭିଜ୍ଞତାରୁ ଜାଣନ୍ତି । ଯୁଦ୍ଧକୌଶଳ ବିଷୟରେ ସାର୍ ଉଇନଷ୍ଟନ୍ ଚର୍ଚ୍ଚିଲଙ୍କୁ କ୍ୱଚିତ୍ ବିଶେଷଜ୍ଞ ବୋଲି ବିଚାର କରାଯାଉଥିଲା । ବ୍ରିଟେନ୍ ଆଉ ଯୁଦ୍ଧ ଚଳାଇବ କି ନାହିଁ ସେଥିପାଇଁ ୧୯୪୦ରେ ସେ ଯେଉଁ ନିଷ୍ପତ୍ତି ନେଲେ ତାହା ତାଙ୍କ ପକ୍ଷରେ ଅନାବଶ୍ୟକ ଥିଲା । ଯେତେଦୂର ସମ୍ଭବ ଯୁଦ୍ଧ ଚାଲୁ ରଖିବା ପାଇଁ

ସେ ପ୍ରେରଣା ପାଉଥିଲେ ଓ ଏହି ପ୍ରେରଣା ଅନୁସାରେ ସେ କାର୍ଯ୍ୟ କରୁଥିଲେ । ମୁକ୍ତ କରିବା ପାଇଁ ହିଟ୍ଲରର ମଧ୍ୟ ନିଜର ଅନ୍ତର୍ନିହିତ ଜ୍ଞାନ ଉପରେ ନିର୍ଭର କରୁଥିଲା; କିନ୍ତୁ ଆମେ ଯେଉଁ ଗୁଣ ବିଷୟରେ ଆଲୋଚନା କରୁଛୁ ତାହା ତା'ଠାରେ ନ ଥିଲା । ସେ ଚତୁର ଥିଲେ ବି ତାର ବିଚାର ଦୋଷଯୁକ୍ତ ଥିଲା ।

ଜଣେ ମନ୍ତ୍ରୀ ସାମୟିକ ପ୍ରଶାସକ ଥିବା କଥା ପାଶୋରି ଦେଲେ ଚଳିବ ନାହିଁ । ସେ ସଂସଦର ଜଣେ ସଦସ୍ୟ, ତେଣୁ ତାଙ୍କର ଅଧିକାଂଶ ସମୟ ଓ୍ୱେଷ୍ଟମିନ୍ଷ୍ଟରରେ ଭାଷଣ ଶୁଣିବାରେ କଟିଥାଏ । ତାଙ୍କୁ ମଧ୍ୟ ତାଙ୍କ ନିର୍ବାଚନ ମଣ୍ଡଳୀସହିତ ସମ୍ପର୍କ ରଖିବାକୁ ହୋଇଥାଏ । ସେ ମଧ୍ୟ ଦଳୀୟ ପ୍ରଚାର ଓ ଦଳୀୟ ସମ୍ମିଳନୀରେ ଭାଗ ନିଅନ୍ତି । ରାଜନୈତିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିମାନଙ୍କ ସହ ତାଙ୍କୁ ସମ୍ପର୍କ ରଖିବାକୁ ହୁଏ । ସେ ମଧ୍ୟ ସବୁପ୍ରକାର ଆନୁଷ୍ଠାନିକ ଓ ଅଣାନୁଷ୍ଠାନିକ କାର୍ଯ୍ୟରେ ଭାଗ ନିଅନ୍ତି । ଉଦାହରଣସ୍ୱରୂପ, ରୁରିଟାନିଆ ସମସ୍ୟାଗୁଡ଼ିକର କୌଣସି ଗୁରୁତ୍ୱ ନ ଥିଲେ ବି ଜଣେ ବୈଦେଶିକ ମନ୍ତ୍ରୀ ରୁରିଟାନିଆଁର ରାଷ୍ଟ୍ରଦୂତଙ୍କୁ ଦେଖାକରିବାକୁ ମନାକରି ଦେଇ ପାରିବେ ନାହିଁ । ରୁରିଟାନିଆର ଜାତୀୟ-ଦିବସ ପାଳନ ପାଇଁ ଆୟୋଜିତ ସଭାରେ ତାଙ୍କୁ ନିଶ୍ଚିତ ଭାବରେ ଯୋଗଦେବାକୁ ହୋଇଥାଏ ଓ ସେଠାରେ ସେ ସମ୍ଭବତଃ ଉର୍ବ୍ବାନିଆକୁ ବିରକ୍ତ ନ କଲି ଭଳି କେତେକ ଭଲ କଥା କହନ୍ତି ।

ଏଥିରୁ ସୂଚିତ ହୁଏ ଯେ ମନ୍ତ୍ରୀ ନିଶ୍ଚିତ ଭାବରେ ବହୁ ପ୍ରଶ୍ନ ନିଷ୍ପତ୍ତି କରନ୍ତି । କେଉଁ ପ୍ରଶ୍ନଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ଓ କେଉଁ ପ୍ରଶ୍ନଗୁଡ଼ିକ ଗୁରୁତ୍ୱପୂର୍ଣ୍ଣ ନୁହେଁ, ତାହା କେହି ଜଣେ ନିଷ୍ପତ୍ତି କରିବା ଉଚିତ୍ । ଏହା ବିଶେଷତଃ ରାଜନୈତିକ ଅବସ୍ଥା ଉପରେ ନିର୍ଭର କରେ । ମନ୍ତ୍ରୀ ଓ ତାଙ୍କ ପରାମର୍ଶ ଦାତାମାନଙ୍କୁ ତାଙ୍କ ଦଳ ଓ ବିରୋଧୀ ଦଳର ମତାମତ ପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ଗତ ନିର୍ବାଚନରେ ପ୍ରଧାନମନ୍ତ୍ରୀଙ୍କୁ ସମର୍ଥନ କରିଥିବା ଲକ୍ଷ ଲକ୍ଷ ଲୋକଙ୍କୁ ନେଇ ଦଳ ଗଠିତ ହୋଇ ନ ଥାଏ; ବରଂ ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ କରୁଥିବା କେତେ ହଜାର ଲୋକଙ୍କୁ ନେଇ ଏହା ଗଠିତ ହୋଇଥାଏ । ସେମାନଙ୍କର ନିଜର ଚିନ୍ତାଧାରା ଥାଏ । ଅବଶ୍ୟ ଏହି ଚିନ୍ତାଧାରା ଅଧିକାଂଶ ସମୟରେ ଅସ୍ପଷ୍ଟ ଥାଏ । ସେମାନଙ୍କ ସରକାର ଏହି ଚିନ୍ତାଧାରାକୁ କାର୍ଯ୍ୟକାରୀ କରିବେ ବୋଲି ସେମାନେ ଆଶା କରନ୍ତି । ରାଜନୈତିକ ଦୃଷ୍ଟିକୋଣରୁ ସେମାନଙ୍କର ଯଥେଷ୍ଟ ଗୁରୁତ୍ୱ ଥାଏ, କାରଣ ନିର୍ବାଚନରେ ଦଳକୁ ବିଜୟଦ୍ୱାସଲ କରିବା ପାଇଁ ସେମାନେ ସାହାଯ୍ୟ କରିଥାଆନ୍ତି । କୌଣସି ବିଷୟରେ ସେମାନେ ଦୃଢ଼ଭାବେ ମତାମତ ବ୍ୟକ୍ତ କଲେ ସେଥିପ୍ରତି ରାଜନୈତିକ ଗୁରୁତ୍ୱ ଆରୋପ କରିବାକୁ ହୁଏ । ବିଷୟଟି ଠିକ୍ ଭାବରେ ନିଷ୍ପତ୍ତି ହେଉଛି କି ନାହିଁ ତାହା ଦେଖିବା ସଂପୃକ୍ତ ମନ୍ତ୍ରୀମାନଙ୍କର କର୍ତ୍ତବ୍ୟ । ମନ୍ତ୍ରୀ ତାଙ୍କ ପରାମର୍ଶଦାତାମାନଙ୍କୁ କହି ପାରନ୍ତି "ଆପଣମାନେ ଠିକ କଥା କହୁଛନ୍ତି, କିନ୍ତୁ ମୋତେ ମୋ ଦଳକୁ ମୋ ସାଙ୍ଗରେ ନେବାକୁ ପଡ଼ିବ" ।

ବିରୋଧୀଦଳର ଭୂମିକା ମଧ୍ୟ ଖୁବ୍ ଗୁରୁତ୍ୱପୂର୍ଣ୍ଣ, କାରଣ ଏହା ଗୋଟିଏ କ୍ଷୁଦ୍ର ଉଇହୁଙ୍କାକୁ ବିରାଟ ପର୍ବତରେ ପରିଣତ କରିପାରେ । କୌଣସି ପ୍ରଶ୍ନରେ ସର୍ବସାଧାରଣ ସ୍ୱାର୍ଥ ବିଶେଷଭାବରେ ଜଡ଼ିତ ଥିଲେ ତାହା କମନ୍‌ସସଭାରେ ଆଲୋଚିତ ହୋଇପାରେ । ଏହା ଉକ୍ତ ଗୃହରେ ଉତ୍‌ଥାପିତ ହେଲେ ସମ୍ପୃକ୍ତ ମନ୍ତ୍ରୀ ନିଶ୍ଚୟ ଏହାର ଉତ୍ତର ଦିଅନ୍ତି । ସେ ହୁଏତ ଗୋଟିଏ ଲିଖିତ ଉତ୍ତର ପାଠ କରନ୍ତି, କିନ୍ତୁ ଅନ୍ତତଃପକ୍ଷେ ତାଙ୍କୁ ଲିଖିତ ଉତ୍ତରକୁ ଅନୁଧ୍ୟାନ କରିବାକୁ ପଡ଼ିଥାଏ, କାରଣ ତା ଉପରେ ହୁଏତ ଅତିରିକ୍ତ ପ୍ରଶ୍ନ ପଚାରିଯାଇପାରେ କିମ୍ବା ମଝିରେ ମଝିରେ ବାଧା ଦିଆଯାଇପାରେ । କମନ୍‌ସସଭା ପରିସର ବାହାରେ 'ବାକ୍‌ସ' ପାଖରେ ଜଣେ କର୍ମଚାରୀ ତାଙ୍କୁ ସାହାଯ୍ୟ କରିବା ପାଇଁ ଥାଆନ୍ତି । କିନ୍ତୁ ଜଣେ ମନ୍ତ୍ରୀ ଆଗ ବେଞ୍ଚ ଠାରୁ ବହୁତ ଦୂରରେ ଥାଆନ୍ତି ଏବଂ ତାଙ୍କ କର୍ମଚାରୀଙ୍କ ଦ୍ୱାରା ସେ ପରିଚାଳିତ ହୋଇପାରନ୍ତି ନାହିଁ । ଏହି ସଭାରେ ପଚାରାଯାଉଥିବା ଅନେକ ପ୍ରଶ୍ନରେ ସାଧାରଣ ଗୁରୁତ୍ୱ ନ ଥିବା କଥା ସତ୍ୟ ଅଟେ । ସଭ୍ୟମାନଙ୍କୁ ତାଙ୍କ ନିର୍ବାଚକମାନଙ୍କୁ ସନ୍ତୁଷ୍ଟ କରିବାକୁ ହୋଇଥାଏ ଏବଂ ସେଥିପାଇଁ ପ୍ରଶ୍ନ ପଚାରିଲା ବେଳେ କେତେକ ସ୍ଥାନୀୟ ବା ବ୍ୟକ୍ତିଗତ ପ୍ରଶ୍ନ ଉତ୍‌ଥାପନ କରିବାକୁ ହୁଏ । ବେଳେବେଳେ ଯାହା ସ୍ଥାନୀୟ କିମ୍ବା ବ୍ୟକ୍ତିଗତ ବିଷୟ ପରି ଜଣାପଡ଼େ ସେଥିରୁ ବୃହତ୍ତର ସମସ୍ୟା ବାହାରିପାରେ । ଏହା ବିଶେଷତଃ ବ୍ୟକ୍ତିଗତ ସ୍ୱାଧୀନତା ସମ୍ବନ୍ଧୀୟ ପ୍ରଶ୍ନମାନଙ୍କରେ ଦେଖା-ଦେଇଥାଏ । ବ୍ୟକ୍ତିଗତ ସ୍ୱାଧୀନତା ବ୍ୟାହତ ହେଲେ ଓ ଏହା ଆପାତତଃ ଗୁରୁତର ଘଟଣା ବୋଲି ଜଣାପଡ଼ୁ ନ ଥିଲେ ବି କମନ୍‌ସ ସଭା ଏହା ଉପରେ ସର୍ବଦା ଗୁରୁତ୍ୱ ଆରୋପ କରି ଆସିଅଛି ।

କୌଣସି ନିଷ୍ପତ୍ତି ନେଲାବେଳେ ମନ୍ତ୍ରୀ ସରକାରଙ୍କ ନାମରେ ଓ ସରକାରଙ୍କ ତରଫରୁ ତାହା କରୁଛନ୍ତି ବୋଲି ଭୁଲିଯିବା ଉଚିତ୍ ନୁହେଁ । ମନ୍ତ୍ରୀଙ୍କ କାର୍ଯ୍ୟ ଫଳରେ ତାଙ୍କ ସହକର୍ମୀମାନଙ୍କ ପ୍ରତିଶ୍ରୁତି ଓ କମନ୍‌ସ ସଭା ତଥା ଦଳରେ ତାଙ୍କ ସମର୍ଥକମାନଙ୍କର ସ୍ୱାର୍ଥ ଜଡ଼ିତ ରହିଥାଏ । କୌଣସି ପ୍ରଶ୍ନ ବିଶେଷ ଗୁରୁତ୍ୱପୂର୍ଣ୍ଣ ଥିଲେ ତାହା ମନ୍ତ୍ରିମଣ୍ଡଳ ପାଖକୁ ପଠାଇ ଦିଆଯାଇଥାଏ । ଏହା ନ ହେଲେ ବି ସରକାରଙ୍କ ରାଜନୈତିକ ସ୍ଥିରତା ଓ ତାଙ୍କ ଦଳର ଲୋକପ୍ରିୟତା ବ୍ୟାହତ ନ ହେବାପରି ନିଷ୍ପତ୍ତି ନିଆଯାଇଥାଏ ।

ଖୁବ୍ ସୁଦକ୍ଷ ମନ୍ତ୍ରୀ ମଧ୍ୟ ତାଙ୍କ ପାଖକୁ ପଠାଯାଉଥିବା ନିଷ୍ପତ୍ତିଗୁଡ଼ିକର ଏକ ଦଶମାଂଶ ବି ନିଜେ ତଦାରଖ କରିପାରନ୍ତି ନାହିଁ । ମନ୍ତ୍ରୀଙ୍କୁ ପଚାରି ହୋଇ ନ ଥିବା ପ୍ରଶ୍ନଗୁଡ଼ିକର ସମାଧାନ ସରକାରୀ କର୍ମଚାରୀମାନେ ଉପସଚିବ ବା ସହାୟକ ସଚିବ ସ୍ତରରେ କରିଥାଆନ୍ତି । ଅବଶ୍ୟ ସେମାନଙ୍କ ନିଷ୍ପତ୍ତିକୁ ମନ୍ତ୍ରୀଙ୍କ ନିଷ୍ପତ୍ତି ବୋଲି ଧରି ନିଆଯାଇଥାଏ ଓ ପରେ ମନ୍ତ୍ରୀ ତାହା ଅସ୍ୱୀକାର କରିପାରନ୍ତି ନାହିଁ । ସେଗୁଡ଼ିକ ଏପରି ନିଷ୍ପତ୍ତି ହୋଇଥାଏ ଯେ, ସମୟ ଥିଲେ ମନ୍ତ୍ରୀ ଠିକ୍ ସେହିପରି ନିଷ୍ପତ୍ତି ନେଇଥାନ୍ତେ ବୋଲି ଧରି ନିଆଯାଇଥାଏ ।

ମନ୍ତ୍ରୀଙ୍କ ନିଷ୍ପତ୍ତି ପରି ସେଗୁଡ଼ିକର ମଧ୍ୟ ସମାନ ପ୍ରଭାବ ଥାଏ । ମହାମାନ୍ୟା ରାଣୀଙ୍କ ସରକାର ସେହି ନିଷ୍ପତ୍ତି କରିବା ଫଳରେ ମନ୍ତ୍ରୀ କିମ୍ବା ମନ୍ତ୍ରିମଣ୍ଡଳ ନିଷ୍ପତ୍ତି କରିଥିଲେ ଯେଉଁ ଅସୁବିଧା ଦେଖାଦେଇଥାନ୍ତା; ସେହିପରି ଅସୁବିଧା ହୁଏତ ଦେଖାଦେଇପାରେ । ମନ୍ତ୍ରୀ ଓ ତାଙ୍କ ସହକର୍ମୀ ମାନେ କମନ୍ସ ସଭାରେ ନିଜପକ୍ଷ ସମର୍ଥନ କରିବା ଉଚିତ । ଦଳୀୟ ସଂଗଠନ ମାଧ୍ୟମରେ ଏହାର ଯଥାର୍ଥତା ପ୍ରତିପାଦିତ ହୋଇଥାଏ । ସେମାନେ କୌଣସି କ୍ଷତି କରୁ-ନାହାଁନ୍ତି ବୋଲି ପ୍ରବର୍ତ୍ତାଇ ଦିଆଯାଇଥାଏ । ସୁତରାଂ ସରକାରୀ କର୍ମଚାରୀମାନେ ସରକାରୀ ନୀତି ଅଧ୍ୟୟନ କରିବା ଉଚିତ ଏବଂ ବିରୋଧୀ ଦଳ ଯେଉଁ ସମାଲୋଚନା କରିବେ ତାହାର ମହତ୍ତ୍ୱ ଉପଲବ୍ଧି କରିବା ଉଚିତ ।

"ଦ୍ୱିଦଳୀୟ ନୀତି" ଥିବା କଥା ସତ୍ୟ ଅଟେ । ଏହା ପ୍ରଶାସନିକ ଅଭିଜ୍ଞତା ଉପରେ ନିର୍ଭର କରେ ଓ ଏହାର କୌଣସି ରାଜନୈତିକ ଗୁରୁତ୍ୱ ନ ଥାଏ । ଏହା ପ୍ରତ୍ୟେକ ସରକାରରେ ବଦଳିଯାଏ । ଅବଶ୍ୟ ବିରୋଧୀ ଦଳ ଚାହିଁଲେ ସେଥିରେ ପରିବର୍ତ୍ତନ ହୋଇପାରେ । ସାଧାରଣତଃ ରାଜନୈତିକ ନୀତିକୁ ଦ୍ୱିଦଳୀୟ ନୀତି ରୂପେ ଗ୍ରହଣ କରାଯାଇ-ଥାଏ । ସରକାର ପରିବର୍ତ୍ତନ ସଙ୍ଗେ ଏହାର ପ୍ରାଧାନ୍ୟ ପରିବର୍ତ୍ତିତ ହୋଇଯାଏ, କିନ୍ତୁ ଏହାର ସାରାଂଶ ସମାନ ରହିଥାଏ । ବିଶେଷତଃ ବହିର୍ବ୍ୟାପାର ଓ ପ୍ରତିରକ୍ଷା କ୍ଷେତ୍ରରେ ଏହା ଘଟିଥାଏ । ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିପ୍ରେକ୍ଷୀରେ ପ୍ରଣୀତ ହେଉଥିବା ନୀତିଗୁଡ଼ିକ ପ୍ରତି ସରକାରରେ ପରିବର୍ତ୍ତନ ହୋଇ ନ ଥାଏ । ସୋଭିଏତ୍ ୟୁନିୟନ ସହିତ ସୁସମ୍ପର୍କ ସ୍ଥାପନ କରିବାପାଇଁ କିମ୍ବା ଅଧିକ ଅସ୍ତ୍ରଶସ୍ତ୍ର ଯୋଗାଇବା ପାଇଁ କିମ୍ବା ପ୍ରଶୁଳ୍କ ବ୍ୟବସ୍ଥାକୁ ଅଧିକ ପ୍ରୟୋଗ କରିବା ପାଇଁ ଗୋଟିଏ ଦଳ ଅପେକ୍ଷା ଆଉ ଗୋଟିଏ ଦଳ ଅଧିକ ଆଗ୍ରହ ପ୍ରକାଶ କରିପାରେ, କିନ୍ତୁ ମୁଖ୍ୟତଃ ଉଭୟଙ୍କ ଆଭିମୁଖ୍ୟ ସମାନ ଥାଏ । ସର୍ବୋପରି ଜଣେ ସରକାରୀ କର୍ମଚାରୀ ମହାମାନ୍ୟା ରାଣୀଙ୍କ ସରକାରଙ୍କ ପାଇଁ କାର୍ଯ୍ୟ କରୁଛନ୍ତି ଓ ତାଙ୍କ ନିଷ୍ପତ୍ତି ରାଜନୈତିକ ବିବାଦ ସୃଷ୍ଟି କରିପାରେ ବୋଲି ସ୍ମରଣ ରଖିବା ଉଚିତ ।

# ଷଷ୍ଠ ଅଧ୍ୟାୟ

## ମନ୍ତ୍ରିମଣ୍ଡଳ ଶାସନ

## (Cabinet Government)

**ମନ୍ତ୍ରିପରିଷଦ ଓ ମନ୍ତ୍ରିମଣ୍ଡଳ (The Ministry and the Cabinet) :**

ଗତ ଅଧ୍ୟାୟରେ ମୂଳରୁ ଶେଷ ପର୍ଯ୍ୟନ୍ତ ସରକାରୀ ପ୍ରଣାଳୀ ସମ୍ବନ୍ଧରେ ଆଲୋଚନା କରାଯାଇଛି । ଏହି ପ୍ରଣାଳୀକୁ ବୁଝିବାକୁ ହେଲେ ମୂଳରୁ ଶେଷ ପର୍ଯ୍ୟନ୍ତ ଭଲ ଭାବରେ ଅନୁଧ୍ୟାନ କରିବାକୁ ହେବ । ଏହି ପ୍ରଣାଳୀ ଅତି ଜଣାଶୁଣା, କାରଣ ମନ୍ତ୍ରୀମାନେ ବାସ୍ତବରେ ଯେଉଁ କାର୍ଯ୍ୟ କରନ୍ତି କେବଳ ପ୍ରକୃତ କରି ତାହାଠାରୁ ଅଧିକ ସମ୍ମାନ ପାଇଥାନ୍ତି । ବିଭାଗଗୁଡ଼ିକରୁ ଆସିଥିବା ଅଧିକାଂଶ ପ୍ରସ୍ତାବ ସମ୍ବନ୍ଧରେ ମନ୍ତ୍ରିମଣ୍ଡଳ ନିଷ୍ପତ୍ତି କରନ୍ତି । ସରକାରୀ ସେବାଗୋଷ୍ଠୀ ଶାସନ ଚଳାନ୍ତି ଓ ମନ୍ତ୍ରୀମାନେ ଏହି ଶାସନକୁ ନିୟନ୍ତ୍ରଣ କରନ୍ତି ।

ରାଣୀ ଗୋଟିଏ ଦଳର ନେତାଙ୍କୁ ସରକାର ଗଠନ କରିବା ପାଇଁ ନିମନ୍ତ୍ରଣ କଲା ପରେ ଓ ପ୍ରଧାନମନ୍ତ୍ରୀ ରୂପେ ସରକାର ଗଠନ କରିବା ପାଇଁ ଉପଯୁକ୍ତ ନେତା ସ୍ୱୀକୃତ ଦେଲା ପରେ ତାଙ୍କୁ ପ୍ରାୟ ଶହେ ପର୍ଯ୍ୟନ୍ତ ନିଯୁକ୍ତି ବିଷୟରେ ପରାମର୍ଶ ଦେବାକୁ ହୋଇଥାଏ । ଏହି ନିଯୁକ୍ତିକୁ ରାଜନୈତିକ ନିଯୁକ୍ତି ବୋଲି କୁହାଯାଇଥାଏ ଓ ତାହା ସଂସଦର ଉଭୟ ସଭାରେ ଥିବା ତାଙ୍କ ଦଳର ସଭ୍ୟମାନଙ୍କ ଦ୍ୱାରା ପୂରଣ କରାଯାଇଥାଏ । ଏହି ନିଯୁକ୍ତି ଦ୍ୱାରା ବିଭିନ୍ନ ପଦଗୁଡ଼ିକ ପୂରଣ ହୁଏ । ଏଗୁଡ଼ିକ ରାଷ୍ଟ୍ରର ବଡ଼ ବଡ଼ ପଦ ଓ ସରକାରଙ୍କ ପକ୍ଷରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ, ଯଥା—ବୈଦେଶିକ ମନ୍ତ୍ରଣାଳୟ, ରାଜକୋଷ, ଘରୋଇ ମନ୍ତ୍ରଣାଳୟ, ଉଲସ୍ୟାକ୍ (ଲର୍ଡ଼ ଚାନ୍ସେଲର ପଦ) ଓ ପ୍ରତିରକ୍ଷାମନ୍ତ୍ରଣାଳୟ ପ୍ରଭୃତିଠାରୁ ଆରମ୍ଭ କରି କ୍ଷୁଦ୍ର ସ୍ଥାନଗୁଡ଼ିକ, ଯଥା—ରାଜକୋଷର ଲର୍ଡ ପଦ ( ଏହା ସରକାରୀ ସଚେତକମାନଙ୍କୁ ଦିଆଯାଇ ଥାଏ ) ଓ ରାଜପରିବାର ପାଇଁ କର୍ମଚାରୀ ନିଯୁକ୍ତି ପର୍ଯ୍ୟନ୍ତ ପ୍ରସାରିତ ହୋଇଥାଏ ।

ସାଧାରଣତଃ ବ୍ରିଟିଶ ସମ୍ବିଧାନରେ ରାଜନୈତିକ ନିଯୁକ୍ତି ଓ ସ୍ଥାୟୀ ନିଯୁକ୍ତି ମଧ୍ୟରେ ପାର୍ଥକ୍ୟ ଦର୍ଶାଇବାର କୌଣସି ଯଥାର୍ଥତା ନାହିଁ । ଯେଉଁମାନେ ରାଜନୈତିକ ନିଯୁକ୍ତି ପାଇଥାନ୍ତି ସେମାନେ ସରକାରଙ୍କ ରାଜନୈତିକ କାର୍ଯ୍ୟରେ ଅଂଶ ଗ୍ରହଣ କରିଥାଆନ୍ତି । କିନ୍ତୁ ଏଥିରୁ ସୂଚୀତ ହୁଏ ନାହିଁ ଯେ, ରାଜନୈତିକ ନିଯୁକ୍ତି ପାଇଥିବା ବ୍ୟକ୍ତି ଗୁରୁତ୍ୱପୂର୍ଣ୍ଣ ରାଜନୈତିକ ନିଷ୍ପତ୍ତି ନେଇଥାଆନ୍ତି କିମ୍ବା ନେବାରେ ସାହାଯ୍ୟ କରିଥାଆନ୍ତି । ଲର୍ଡ଼ ଚ୍ୟାନ୍ସେଲର ସାଧାରଣତଃ ଜଣେ ବାରିଷ୍ଟରପଦ ଓ ସେ ଲର୍ଡ଼ ସଭାର ମଧ୍ୟ ଅଧ୍ୟକ୍ଷ । ପରିଷଦର ଲର୍ଡ଼ ପ୍ରେସିଡ଼େଣ୍ଟ ପଦର ଯଥେଷ୍ଟ ସମ୍ମାନ ନ ଥିଲେ ମଧ୍ୟ ଏହାର କାର୍ଯ୍ୟ ମୁଖ୍ୟତଃ ଆନୁଷ୍ଠାନିକ ଓ ବୈଷୟିକ ଧରଣର ଏବଂ ଲର୍ଡ଼ ପ୍ରିଭିସୀଲଙ୍କୁ କୌଣସି ବିଶେଷ କାର୍ଯ୍ୟ ଦିଆ ନ ଗଲେ ତାଙ୍କର ଆଦୌ କୌଣସି କାର୍ଯ୍ୟ ନ ଥାଏ । ଲାଙ୍କାଷ୍ଟରର ଡଚୀର ଚ୍ୟାନ୍ସେଲରଙ୍କ ପାଇଁ ସପ୍ତାହକେ ମାତ୍ର ଅଧ ଘଣ୍ଟାଏ କାର୍ଯ୍ୟ ଥିବାରୁ ଏହି ପଦର ଗୁରୁତ୍ୱ ଅଛି ବୋଲି କୁହାଯାଇ ପାରିବ ନାହିଁ । ଉପରୋକ୍ତ ପଦମାନଙ୍କ ମଧ୍ୟରୁ କେବଳ ଲର୍ଡ଼ଚ୍ୟାନ୍ସେଲର ପଦ ପାଇଁ ଉଚ୍ଚ ଧରଣର ଆଇନଗତ ଯୋଗ୍ୟତା ଓ ଦୀର୍ଘ ଅଭିଜ୍ଞତା ଆବଶ୍ୟକ ହୋଇଥାଏ । ଅନ୍ୟାନ୍ୟ ପଦଗୁଡ଼ିକ ରାଜନୀତିରେ ଗୁରୁତ୍ୱ ଥିବା ବିଜ୍ଞ ବ୍ୟକ୍ତିମାନଙ୍କ ଦ୍ୱାରା ପୂରଣ କରାଯାଇଥାଏ । ସେମାନଙ୍କ ମଧ୍ୟରୁ ଜଣେ କମନ୍ସସଭାର ନେତା କିମ୍ବା ଉପପ୍ରଧାନମନ୍ତ୍ରୀ ହୋଇ ପାରନ୍ତି । ମନ୍ତ୍ରୀ-ମଣ୍ଡଳୀସ୍ଥ ସମିତିଗୁଡ଼ିକର କାର୍ଯ୍ୟ ଖୁବ୍ ବେଶୀ ଥିବାରୁ ସମୟେ ରୁଣା ଅଧିକ ଉପସ୍ଥିତ ଥାଆନ୍ତି ।

ଗୁରୁତ୍ୱପୂର୍ଣ୍ଣ ବିଭାଗ ଗୁଡ଼ିକର ଦାୟିତ୍ୱରେ ଥିବା ମନ୍ତ୍ରିମାନଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରିବା ଉଚିତ । ଏହି ବିଭାଗଗୁଡ଼ିକର ସଂଖ୍ୟା କେତେ ତାହା ଠିକ୍ ଭାବେ ନିର୍ଣ୍ଣୟ କରିବା ସମ୍ଭବ ନୁହେଁ, କାରଣ କାର୍ଯ୍ୟଭାର କିପରି ବଣ୍ଟନ କରାଯିବ ତାହା ପ୍ରଧାନମନ୍ତ୍ରୀଙ୍କ ଉପରେ ନିର୍ଭର କରେ ଓ ଏହା ବିଭିନ୍ନ ସରକାରରେ ଭିନ୍ନ ପ୍ରକାର ହୋଇଥାଏ । ପ୍ରଧାନମନ୍ତ୍ରୀଙ୍କୁ ମଧ୍ୟ ଆଉ କେତେଗୁଡ଼ିଏ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ । ଦଳକୁ ଏକତ୍ରିତ କରି ରଖିବା ତାଙ୍କର ପ୍ରଧାନ କାର୍ଯ୍ୟ ଓ ଏଥିପାଇଁ ସେ ମୁଖ୍ୟ ରାଜନୈତିକ ସମର୍ଥକମାନଙ୍କ ପାଇଁ ନିଯୁକ୍ତି ବ୍ୟବସ୍ଥା କରିଥାନ୍ତି । ତାଙ୍କୁ ଦଳର ସବୁ କିସମର ମତାମତକୁ ସନ୍ତୁଷ୍ଟ କରିବାକୁ ପଡ଼ିଥାଏ । ଦଳର କେତେକ ନେତାଙ୍କ ବିଷୟରେ ତାଙ୍କର ଭିନ୍ନ ମତ ଥିଲେ ବି ସେମାନଙ୍କ ସହିତ ତାଙ୍କୁ ମିଳିମିଶି ଚଳିବାକୁ ପଡ଼େ । କୌଣସି ସମସ୍ୟା ଉପରେ ଜନ ଆନ୍ଦୋଳନ ଆରମ୍ଭ ହେଲେ ପ୍ରଧାନମନ୍ତ୍ରୀଙ୍କୁ ତାହା ସମାଧାନ କରିବାକୁ ପଡ଼ିଥାଏ । ଉଦାହରଣସ୍ୱରୂପ, ଗୃହ ନିର୍ମାଣ ସମସ୍ୟା ଉପରେ ଜନମତ ସୃଷ୍ଟି ହେଲେ ଓ ଏଥିପାଇଁ ବିରୋଧୀ ଦଳ ଗଠନ-ମୂଳକ ସମାଲୋଚନା କଲେ, ଏହି ସମସ୍ୟାର ସମାଧନ କରିବା ଦାୟିତ୍ୱ ଜଣେ ମନ୍ତ୍ରୀଙ୍କୁ ଦେବାକୁ ପ୍ରଧାନମନ୍ତ୍ରୀ ଉଚିତ ମନେକରନ୍ତି । ସମ୍ପୃକ୍ତ ମନ୍ତ୍ରୀ ଏହାକୁ ହୁଏତ ସମାଧାନ କରି ପାରନ୍ତି କିମ୍ବା ସମାଧାନ କରିବା ପାଇଁ ଚେଷ୍ଟା କରୁଛନ୍ତି ବୋଲି କହିପାରନ୍ତି । ସେ ଯାହା ହେଉନା କାହିଁକି ଇଂଲଣ୍ଡରେ ଗୁରୁଦାୟିତ୍ୱ ବହନ କରୁଥିବା ଚବିଶ କିମ୍ବା ପଚିଶଟି ବିଭାଗ ଅଛି ।

ବିଭାଗଗୁଡ଼ିକର ସଂଖ୍ୟା ବେଶି ନ ଥିବା ସମୟରେ ସବୁ ବିଭାଗୀୟ ମୁଖ୍ୟଙ୍କୁ ମନ୍ତ୍ରିମଣ୍ଡଳର ସଭ୍ୟ ହିସାବରେ ନିଆଯାଉଥିଲା । ଏତଦ୍‌ବ୍ୟତୀତ କେତେଗୁଡ଼ିଏ ଅବୈତନିକ ମନ୍ତ୍ରୀ ଥିଲେ । ସେମାନଙ୍କ ପରାମର୍ଶର ଗୁରୁତ୍ୱ କିମ୍ବା ସେମାନଙ୍କ ରାଜନୈତିକ ପ୍ରଭାବ ଦୃଷ୍ଟିରୁ, ସେମାନଙ୍କୁ ମନ୍ତ୍ରିମଣ୍ଡଳ ବୈଠକକୁ ନିମନ୍ତ୍ରଣ କରାଯାଉଥିଲା । ରାଷ୍ଟ୍ରର ଦାୟିତ୍ୱ ଓ କାର୍ଯ୍ୟ ପରିସର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ମନ୍ତ୍ରୀମାନଙ୍କର ସଂଖ୍ୟାବୃଦ୍ଧି ଘଟିଥିଲା । ମନ୍ତ୍ରୀମାନଙ୍କର ସଂଖ୍ୟାବୃଦ୍ଧି ସଙ୍ଗେ ମନ୍ତ୍ରିମଣ୍ଡଳର କଳେବର ମଧ୍ୟ ବୃଦ୍ଧି ପାଇଥିଲା । ୧୮୪୧ରେ ସାର୍ ରବର୍ଟ ପିଲଙ୍କ ମନ୍ତ୍ରିମଣ୍ଡଳରେ ଚଉଦ ଜଣ ମନ୍ତ୍ରୀ ଥିଲେ ଓ ସେଥିମଧ୍ୟରୁ ପାଞ୍ଚଜଣ ମନ୍ତ୍ରୀଙ୍କର ଲଘୁ ବିଭାଗୀୟ ଦାୟିତ୍ୱ ଥିଲା କିମ୍ବା ଆଦୌ ଦାୟିତ୍ୱ ନ ଥିଲା । ୧୮୭୪ରେ ଡିସରେଲିଙ୍କ ମନ୍ତ୍ରିମଣ୍ଡଳରେ ବାର ଜଣ ସଭ୍ୟ ଥିଲେ ଓ ସେମାନଙ୍କ ମଧ୍ୟରୁ ଜଣଙ୍କର ଲଘୁ ଦାୟିତ୍ୱ ଥିବା ସ୍ଥଳେ ଅନ୍ୟ ଜଣଙ୍କର ଆଦୌ କୌଣସି ଦାୟିତ୍ୱ ନ ଥିଲା । ୧୯୦୬ରେ ସାର୍ ହେନରି କ୍ୟାମ୍ପବେଲ-ବାନରମାନଙ୍କ ମନ୍ତ୍ରିମଣ୍ଡଳରେ ଊଣେଇଶ ଜଣ ସଭ୍ୟ ଥିଲେ ଓ ସେମାନଙ୍କ ମଧ୍ୟରୁ ତିନି ଜଣଙ୍କର ବିଭାଗୀୟ ଗୁରୁ ଦାୟିତ୍ୱ ନ ଥିଲା । ୧୯୩୫ରେ ବାଲଡ୍‌ଇନ୍‌ଙ୍କ ମନ୍ତ୍ରିମଣ୍ଡଳରେ ବାଇଶି ଜଣ ସଭ୍ୟ ଥିଲେ ଓ ସେମାନଙ୍କ ମଧ୍ୟରୁ ଦୁଇ ଜଣଙ୍କର ବିଭାଗୀୟ ଗୁରୁ ଦାୟିତ୍ୱ ନ ଥିଲା ।

ନିମ୍ନସ୍ତରରେ ଫଇସଲା କରାଯାଉ ନ ଥିବା ସମସ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟରେ ମନ୍ତ୍ରିମଣ୍ଡଳ ନିଷ୍ପତ୍ତି ନେଇ ଥାଆନ୍ତି । କୌଣସି ବିଷୟ ବିଶେଷ ରାଜନୈତିକ ବିବାଦ ସୃଷ୍ଟି କରୁଥିଲେ ଅଥବା ସେଥିରେ ଅନ୍ତର୍ବିଭାଗୀୟ ପ୍ରଶ୍ନ ଜଡ଼ିତ ଥିଲେ ଓ ସମ୍ପୃକ୍ତ ବିଭାଗଗୁଡ଼ିକ ସେଥିରେ ଏକମତ ହେଉ ନ ଥିଲେ, ସେହି ପ୍ରଶ୍ନର ନିଷ୍ପତ୍ତି ମନ୍ତ୍ରିମଣ୍ଡଳରେ ହୁଏ । ସୁତରାଂ ଦଳର ମୁଖ୍ୟ ରାଜନୀତିଜ୍ଞମାନଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେବା ଆବଶ୍ୟକ । ଏତଦ୍‌ବ୍ୟତୀତ ଯେଉଁ ବିଭାଗଗୁଡ଼ିକର ରାଜନୈତିକ ଗୁରୁତ୍ୱ ଥାଏ ସେହି ବିଭାଗର ମୁଖ୍ୟମାନଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନଦେବା ସୁବିଧାଜନକ ହୋଇଥାଏ । ଜଣେ ମନ୍ତ୍ରୀଙ୍କ କାର୍ଯ୍ୟ ପାଇଁ ସମସ୍ତ ସରକାରୀ କଳ ଦାୟୀ ରହୁ ଥିବାରୁ ସମ୍ପୃକ୍ତମନ୍ତ୍ରୀ ସରକାରଙ୍କ ସାଧାରଣ ନୀତି ବିଷୟରେ ଅବହିତ ରହିବା ଏକାନ୍ତ ଆବଶ୍ୟକ । ଉଦାହରଣସ୍ୱରୂପ, ଇନ୍ଧନ ଓ ଶକ୍ତି ମନ୍ତ୍ରୀଙ୍କର ଅର୍ଥନୈତିକ ନୀତି ବିଷୟରେ ଯଥେଷ୍ଟ ଜ୍ଞାନ ଥିବା ଉଚିତ । ଅପର ପକ୍ଷରେ ଗୋଟିଏ କ୍ଷୁଦ୍ରମନ୍ତ୍ରିମଣ୍ଡଳ ଠାରୁ ବୃହତ୍ତର ମନ୍ତ୍ରିମଣ୍ଡଳ ଭିନ୍ନ ଥାଏ । ୧୮୭୪ର ଡିସ୍‌ରେଲିଙ୍କ ମନ୍ତ୍ରିମଣ୍ଡଳ ପରି ଏକ ବାରଜଣିଆ ମନ୍ତ୍ରିମଣ୍ଡଳ ସେମାନଙ୍କ ପାଖରେ ଉପସ୍ଥାପିତ ପ୍ରତ୍ୟେକ ପ୍ରଶ୍ନ ପୁଙ୍ଖାନୁପୁଙ୍ଖ ଆଲୋଚନା କରି ସମାଧାନ କରିପାରୁଥିଲେ । ୧୯୬୪ର ଉଇଲସନ୍‌ଙ୍କ ମନ୍ତ୍ରିମଣ୍ଡଳ ପରି ଏକ ଚବିଶି ଜଣିଆ ମନ୍ତ୍ରିମଣ୍ଡଳ ଗୋଟିଏ ସାଧାରଣ ସଭାପରି ପ୍ରତୀୟମାନ ହୋଇଥାଏ । ଏଥିପାଇଁ ଆନୁଷ୍ଠାନିକ ପଦ୍ଧତି, ଯଥେଷ୍ଟ ସଂଖ୍ୟାରେ ସମିତି ଗଠନ, ବିରାଟ ସଚିବାଳୟ ଇତ୍ୟାଦିର ଆବଶ୍ୟକତା ଥାଏ । ଗୋଟିଏ କ୍ଷୁଦ୍ର ମନ୍ତ୍ରିମଣ୍ଡଳ ପକ୍ଷରେ ଏକମତ ହୋଇ ନିଷ୍ପତ୍ତି ଗ୍ରହଣ କରିବା ସହଜ ହୋଇଥାଏ । ଅପର ପକ୍ଷରେ ଗୋଟିଏ ବୃହତ୍ ମନ୍ତ୍ରିମଣ୍ଡଳରେ କୌଣସି ନିଷ୍ପତ୍ତି ନେବା-ବେଳେ ମତାମତ ନେବାକୁ ପଡ଼ିଥାଏ ।

ଅଭିଜ୍ଞ ରାଜନୀତିଜ୍ଞମାନେ କ୍ଷୁଦ୍ର ମନ୍ତ୍ରିମଣ୍ଡଳ ପସନ୍ଦ କରିଥାନ୍ତି; କିନ୍ତୁ ଏହାର କାରଣ କଣ ତାହା ସେମାନେ ସହଜରେ ପ୍ରକାଶ କରି ନ ଥାନ୍ତି । ବୃହତ୍ ମନ୍ତ୍ରିମଣ୍ଡଳରେ ସମିତି କାର୍ଯ୍ୟ କରିବାରେ ଯଥେଷ୍ଟ ସମୟ ଅତିବାହିତ ହୋଇଥାଏ । ଜଟିଳ ପରିସ୍ଥିତି ଯୋଗୁ ଏତେ ସମୟ ଆବଶ୍ୟକ ହୋଇଥାଏ । କୌଣସି ମନ୍ତ୍ରିମଣ୍ଡଳ କିମ୍ବା ମନ୍ତ୍ରିମଣ୍ଡଳୀୟ ସମିତିରେ ଆଲୋଚନା ପାଇଁ କେତେ ସମୟ ଦରକାର, ତାହା ସେଥିରେ ଯୋଗ ଦେଇଥିବା ସଭ୍ୟ-ମାନଙ୍କ ଉପରେ ନିର୍ଭର କରିଥାଏ । ଏହି ସଭ୍ୟମାନଙ୍କର ନିଜର ଚିନ୍ତାଧାରା ଅଥବା ଉଚ୍ଚାଭିଳାଷ ଥାଇପାରେ । କୌଣସି କ୍ଷୁଦ୍ର କିମ୍ବା ବୃହତ୍ ମନ୍ତ୍ରିମଣ୍ଡଳରେ ପରିସ୍ଥିତି ଅନୁସାରେ ପ୍ରଧାନମନ୍ତ୍ରୀଙ୍କର ପ୍ରଭାବ ଯଥେଷ୍ଟ ପଡ଼ିଥାଏ । ସଂକ୍ଷେପରେ ଗୋଟିଏ କ୍ଷୁଦ୍ର ମନ୍ତ୍ରିମଣ୍ଡଳର ଉପକାରିତା ଓ ଅପକାରିତା ବିଷୟରେ ସାଧାରଣ ଭାବରେ କିଛି କୁହାଯାଇପାରିବ ନାହିଁ । ଏହା ଅନେକାଂଶରେ ସମ୍ପୃକ୍ତ ସଦସ୍ୟମାନଙ୍କ ବ୍ୟକ୍ତିତ୍ୱ ଉପରେ ନିର୍ଭର କରେ ।

କେତେ ଜଣ ବିଭାଗୀୟ ମନ୍ତ୍ରିମାନଙ୍କୁ ବାଦ୍ ନ ଦେଲେ ମନ୍ତ୍ରିମଣ୍ଡଳର ଆକାର କ୍ଷୁଦ୍ର କରି ହେବ ନାହିଁ । ସାଧାରଣତଃ, ପୋଷ୍ଟମାଷ୍ଟର ଜେନେରାଲ୍ ଓ ନିର୍ମାଣବିଭାଗର ପ୍ରଥମ କମିସନର୍ ( ବର୍ତ୍ତମାନ ଏହାଙ୍କୁ ନିର୍ମାଣମନ୍ତ୍ରୀ କୁହାଯାଉଅଛି ) ଙ୍କୁ ଏଥିରୁ ବାଦ୍ ଦିଆଯାଇ ଥାଏ । ୧୯୧୯ ରେ ପରିବହନ ମନ୍ତ୍ରଣାଳୟ ସୃଷ୍ଟି ହୋଇଥିଲା ଓ ସେତେବେଳେ ଏହାର ମନ୍ତ୍ରୀଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେବାପାଇଁ ଯଥେଷ୍ଟ ଗୁରୁତ୍ୱ ଦିଆଯାଉ ନ ଥିଲା । ପେନ୍‌ସନ୍ ବିଭାଗୀୟ ମନ୍ତ୍ରୀ ପ୍ରାୟ ସର୍ବଦା ମନ୍ତ୍ରିମଣ୍ଡଳ ବାହାରେ ରହିଥାଆନ୍ତି । ଯୁଦ୍ଧୋତ୍ତର ମନ୍ତ୍ରିମଣ୍ଡଳରୁ ଖାଦ୍ୟ, ସହର ଓ ଗ୍ରାମାଞ୍ଚଳ ଯୋଜନା, ଯୋଗାଣ, ଶକ୍ତି, ନିର୍ମାଣ ଓ ବେସାମରିକ ଚଳାଚଳ ମନ୍ତ୍ରୀମାନଙ୍କୁ ସାଧାରଣତଃ ବାଦ୍ ଦିଆଯାଉଛି ।

୧୯୪୦ ରେ ପ୍ରତିରକ୍ଷା ମନ୍ତ୍ରଣାଳୟ ସୃଷ୍ଟି ହୋଇଥିଲା । ଏହା ଦ୍ୱାରା ମନ୍ତ୍ରିମଣ୍ଡଳରେ ସ୍ଥାନ ସଂଖ୍ୟା ହ୍ରାସ କରିବା ସମ୍ଭବପର ହୋଇଥିଲା ଓ ଏହା ଏକ ନିର୍ଦ୍ଦିଷ୍ଟ ନୀତି ଉପରେ କରାଯାଇଥିଲା । ନୌ ବିଭାଗର ପ୍ରଥମ ଲର୍ଡ, ଯୁଦ୍ଧ ବିଭାଗର ସଚିବ ଓ ବାୟୁ ବିଭାଗର ସଚିବଙ୍କ କାର୍ଯ୍ୟକୁ ପ୍ରତିରକ୍ଷା ମନ୍ତ୍ରୀ ସମ୍ପାଦନ କରୁ ନ ଥିଲେ । ସେ ସାଧାରଣ ପ୍ରତିରକ୍ଷା ନୀତି ପାଇଁ ଦାୟୀ ରହୁଥିଲେ ଓ ସ୍ଥଳ, ସମୁଦ୍ର ଓ ବାୟୁସେନାଗୁଡ଼ିକ ମଧ୍ୟରେ ଯୁଦ୍ଧ କୌଶଳରେ ଭାରସାମ୍ୟ ରକ୍ଷା କରୁଥିଲେ । ଫଳରେ ପ୍ରତିରକ୍ଷା ମନ୍ତ୍ରୀ ମନ୍ତ୍ରିମଣ୍ଡଳରେ ଏହି ତିନି ସୈନ୍ୟ ବାହିନୀର ପ୍ରତିନିଧିତ୍ୱ କରୁଥିଲେ ଓ ଏହାଦ୍ୱାରା ନୌବିଭାଗ, ସ୍ଥଳବିଭାଗ ଓ ବାୟୁ-ମନ୍ତ୍ରଣାଳୟର ମନ୍ତ୍ରୀମାନଙ୍କୁ ମନ୍ତ୍ରିମଣ୍ଡଳ ବାହାରେ ରହିବାକୁ ପଡ଼ିଲା । ଯୁଦ୍ଧ ପୂର୍ବରୁ ଏ ସମ୍ବନ୍ଧରେ ବିଶଦ ଆଲୋଚନା ହୋଇଥିଲା । ଏହି ବିଭାଗଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରିବା ପାଇଁ ଜଣେ ପ୍ରତିରକ୍ଷା ମନ୍ତ୍ରୀଙ୍କର ଆବଶ୍ୟକତା ଥିଲା । ସମ୍ପୃକ୍ତ ମନ୍ତ୍ରୀ ଅନ୍ତର୍ବିଭାଗୀୟ ସାଧାରଣ ନୀତିଗୁଡ଼ିକ ସମାଧାନ କରିବା ସଙ୍ଗେ ସଙ୍ଗେ ମନ୍ତ୍ରିମଣ୍ଡଳରେ ସମ୍ପୃକ୍ତ ତିନି ବିଭାଗର ପ୍ରତିନିଧିତ୍ୱ କରିବେ ବୋଲି ଯୁକ୍ତି ଦର୍ଶାଯାଇଥିଲା । ସାଧାରଣ ଭାବରେ ଏହି ଯୋଜନା ବିରୁଦ୍ଧରେ ମଧ୍ୟ

ମତାମତ ପ୍ରକାଶ ପାଇଥିଲା, କାରଣ ଏହା ଫଳରେ ସରକାର ଅଧିକ ଜଟିଳ ଅବସ୍ଥାରେ ପଡ଼ିବେ ବୋଲି ଆଶଙ୍କା ଥିଲା । ଜଣେ ଉଚ୍ଚମନ୍ତ୍ରୀଙ୍କର ଆବଶ୍ୟକତା ଅଛି ବୋଲି କହିବା ଅର୍ଥ ଗୋଟିଏ ଉଚ୍ଚମନ୍ତ୍ରଣାଳୟର ଆବଶ୍ୟକତା ଅଛି ବୋଲି ବୁଝାଇଥାଏ । କୌଣସି ପ୍ରସ୍ତାବକୁ କେତେଗୁଡ଼ିଏ ଅଫିସର ଆଲୋଚନା କଲା ପରେ ଓ ଜଣେ ମନ୍ତ୍ରୀ ଏ ସମ୍ବନ୍ଧରେ ନିଷ୍ପତ୍ତି ନେଲା ପରେ ତାହା ଆଉ କେତେ ଜଣ ଅଫିସରଙ୍କ ଦ୍ୱାରା ଆଲୋଚିତ ହୋଇ ଆଉ ଜଣେ ମନ୍ତ୍ରୀଙ୍କ ଦ୍ୱାରା ନିଷ୍ପତ୍ତି ନିଆଯିବା କଥା । କାର୍ଯ୍ୟ କେତେଦୂର ସମ୍ପାଦନ ହେଉଛି, ତାହା ନ ଦେଖି କାର୍ଯ୍ୟର ପରିସର ବୃଦ୍ଧି କରିବା ସର୍ବଦା ସହଜ । ସେ ଯାହା ହେଉନା କାହିଁକି, ଯୁଦ୍ଧ ସମୟରେ ଉପରୋକ୍ତ ଦୃଷ୍ଟାନ୍ତଟି ଚର୍ଚ୍ଚିଲ ସୃଷ୍ଟି କରିଥିଲେ ଓ ଯୁଦ୍ଧ ପରେ ୧୯୫୧ ରେ ସେ ତାଙ୍କ ସରକାରରେ ଏହା ଅନୁସରଣ କରିଥିଲେ । ପରିବହନ ଏବଂ ଇନ୍ଧନ ଓ ଶକ୍ତି ମଧ୍ୟରେ ସମନ୍ୱୟ ସ୍ଥାପନ କରିବା ପାଇଁ ଜଣେ ସମନ୍ୱୟ ବିଭାଗମନ୍ତ୍ରୀ ନିଯୁକ୍ତ ହୋଇ-ଥିଲେ । ଖାଦ୍ୟ ଓ କୃଷି ମନ୍ତ୍ରଣାଳୟ ମଧ୍ୟରେ ସମନ୍ୱୟ ରକ୍ଷା କରିବା ଦାୟିତ୍ୱ ପରିଷଦର ଲର୍ଡ ପ୍ରେସିଡେଣ୍ଟଙ୍କୁ ଦିଆଯାଇଥିଲା । କୌଣସି କାର୍ଯ୍ୟ ନ ଥିବା ପୋଷ୍ଟମାଷ୍ଟର ଜେନେରାଲ ବୈଜ୍ଞାନିକ ଗବେଷଣା ଓ ବିକାଶ ମଧ୍ୟରେ ସମନ୍ୱୟ ସ୍ଥାପନ କରିବା ଦାୟିତ୍ୱ ନେଇଥିଲେ । ଉପରୋକ୍ତ ବିଭାଗଗୁଡ଼ିକ ଲର୍ଡମାନଙ୍କ ଦ୍ୱାରା ପରିଚାଳିତ ହେଉଥିବାରୁ ଚର୍ଚ୍ଚିଲଙ୍କ ସମାଲୋଚକମାନେ ଏହାକୁ "ମାଲିକ" ( **Overlord** ) ବ୍ୟବସ୍ଥା ବୋଲି ଆଖ୍ୟା ଦେଇଥିଲେ ।

ଏହି ବ୍ୟବସ୍ଥା ଫଳରେ କିଛି ସମୟ ପାଇଁ ମନ୍ତ୍ରିମଣ୍ଡଳ ଗୁଡ଼ିକର ସଦସ୍ୟ ସଂଖ୍ୟା ହ୍ରାସ ପାଇଥିଲା । ୧୯୫୦ ରେ ଆଟ୍‌ଲିଙ୍କ ମନ୍ତ୍ରିମଣ୍ଡଳରେ ଅଠର ଜଣ ସଦସ୍ୟ ଥିବାବେଳେ ୧୯୫୧ରେ ଚର୍ଚ୍ଚିଲଙ୍କ ମନ୍ତ୍ରିମଣ୍ଡଳରେ ଷୋଳ ଜଣ ସଭ୍ୟ ଥିଲେ, କିନ୍ତୁ ହୋମ୍‌ଙ୍କ ମନ୍ତ୍ରି-ମଣ୍ଡଳରେ ବାଇଶି ଜଣ ସଭ୍ୟ ଥିବା ବେଳେ ୧୯୬୪ରେ ଉଇଲସନ୍‌ଙ୍କ ମନ୍ତ୍ରିମଣ୍ଡଳରେ ତେଇଶି ଜଣ ସଭ୍ୟ ଥିଲେ । ୧୯୬୪ର ଉଇଲସନ୍‌ଙ୍କ ମନ୍ତ୍ରିମଣ୍ଡଳ ବାହାରେ ଆହୁରି ଏକୋଇଶି ଜଣ ମନ୍ତ୍ରୀ ଥିଲେ ଓ ସେମାନଙ୍କ ମଧ୍ୟରୁ ସାତ ଜଣ ରାଜ୍ୟ-ସ୍ତରୀୟ ମନ୍ତ୍ରୀ ଥିଲେ । ଏହି ରାଜ୍ୟ-ସ୍ତରୀୟ ମନ୍ତ୍ରିମାନେ ଗୁରୁ ଦାୟିତ୍ୱ ଥିବା ବଡ ବଡ ବିଭାଗର ମନ୍ତ୍ରୀମାନଙ୍କୁ ସାହାଯ୍ୟ କରିବା ପାଇଁ ନିଯୁକ୍ତ ହୋଇଥିଲେ । ମନ୍ତ୍ରିମଣ୍ଡଳରେ ସଦସ୍ୟ ନ ଥିବା ମନ୍ତ୍ରି-ମାନଙ୍କ ବିଭାଗଗୁଡ଼ିକ ବିଷୟରେ ଆଲୋଚନା ହେବାବେଳେ ସେମାନେ ମନ୍ତ୍ରିମଣ୍ଡଳ ବୈଠକରେ ଯୋଗ ଦେଇଥାନ୍ତି । ସୁତରାଂ ଆଜିକାଲି ମନ୍ତ୍ରିମଣ୍ଡଳର ଆକାର ଯଥେଷ୍ଟ ବୃଦ୍ଧି ପାଇଛି ।

ଚର୍ଚ୍ଚିଲଙ୍କ "ମାଲିକ" ବ୍ୟବସ୍ଥା ସଫଳ ହୋଇ ନ ଥିଲା, କାରଣ ସେମାନେ ସମସ୍ତେ ଲର୍ଡ ଥିଲେ । ପ୍ରତିରକ୍ଷା ମନ୍ତ୍ରଣାଳୟରେ ବର୍ତ୍ତମାନ ଛଅଟି ଅଧସ୍ତନ ମନ୍ତ୍ରୀ ଅଛନ୍ତି । ସେମାନେ ହେଲେ ପଦାତିକ ସୈନ୍ୟବାହିନୀ, ବାୟୁ ସେନାବାହିନୀ ଓ ନୌସେନାବାହିନୀର

ଅଧସ୍ତନ ମନ୍ତ୍ରିବୃନ୍ଦ; କିନ୍ତୁ ଏହି ବିଭାଗର ସମସ୍ତ ଦାୟିତ୍ୱ ପ୍ରତିରକ୍ଷାମନ୍ତ୍ରୀଙ୍କ ଠାରେ ନ୍ୟସ୍ତ । ୧୯୬୪ର ଉଇଲସନ୍‌ଙ୍କ ମନ୍ତ୍ରିମଣ୍ଡଳରେ ପ୍ରାୟ "ମାଲିକ" ବ୍ୟବସ୍ଥା ପରି ବ୍ୟବସ୍ଥା କରି-ଯାଇଥିଲା, କିନ୍ତୁ ସାଧାରଣ ଭାବରେ କହିଲେ କେହି "ମାଲିକ-ମାନଙ୍କୁ" ଭଲ ପାଇ ନ ଥାନ୍ତି । ସେହି ଲର୍ଡମାନେ ନିଜକୁ ଭଲ ପାନ୍ତି କି ନାହିଁ ତାହା ମଧ୍ୟ ସନ୍ଦେହର ବିଷୟ ।

## ମିଳିତ ଦାୟିତ୍ୱ ( Collective Responsibility ) :

ମନ୍ତ୍ରିମଣ୍ଡଳୀୟ ସରକାର ସମିତିମାନଙ୍କ ଦ୍ୱାରା ଶାସିତ ହୋଇଥାଏ କିନ୍ତୁ ଏହା ସାଧାରଣ ସମିତି ଦ୍ୱାରା ପରିଚାଳିତ ସରକାରଙ୍କ ଠାରୁ ଭିନ୍ନ ଅଟେ, କାରଣ ଏଥିରେ ଦଳୀୟ ବ୍ୟବସ୍ଥା ଯୋଗୁଁ ରାଜନୈତିକ ମତାମତ ଉପରେ ସାମଞ୍ଜସ୍ୟ ରକ୍ଷା କରାଯାଇଥାଏ । ସାଧାରଣତଃ, କମନ୍‌ସ ସଭାର ଯାଞ୍ଚ କମିଟି ହେଉ କିମ୍ବା ସ୍ଥାନୀୟ ଶିକ୍ଷା ସମିତି ହେଉ ଅଥବା ଖେଳ ପାଇଁ କୌଣସି ସମିତି ହେଉ, ପ୍ରତ୍ୟେକ ସମିତିର ସଭ୍ୟମାନଙ୍କର ଭିନ୍ନ ଭିନ୍ନ ମତ ଥାଏ । କୌଣସି ବିଷୟରେ ଆଲୋଚନା ହେବାପରେ ଏକ ପ୍ରସ୍ତାବ ଅଣାଯାଇ ତା ଉପରେ ମତାମତ ନିଆଯାଇଥାଏ । ଏହି ପ୍ରସ୍ତାବକୁ ସଂଖ୍ୟାଧିକ ସଭ୍ୟ ସମର୍ଥନ କଲେ ତାହା ସମିତିର ନିଷ୍ପତ୍ତି ରୂପେ ଗୃହୀତ ହୋଇଥାଏ । ଜଣେ ସଭ୍ୟଙ୍କ ମତ ସର୍ବଦା ସଂଖ୍ୟା-ଲଘୁମତ ହେଲେ ବି ସେ ଇସ୍ତଫା ଦିଅନ୍ତି ନାହିଁ ଓ ଅଗ୍ରାହ୍ୟ ହେଉଥିଲେ ବି ସେ ସର୍ବଦା ନିଜ ମତାମତ ବ୍ୟକ୍ତ କରୁଥାଆନ୍ତି ।

ମନ୍ତ୍ରିମଣ୍ଡଳ ଏପରି ଏକ ସମିତି ନୁହେଁ । ସାଧାରଣତଃ, ଗୋଟିଏ ଦଳର ନୀତି ଗ୍ରହଣ କରୁଥିବା ସଭ୍ୟମାନଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦିଆଯାଇଥାଏ । ଏହା ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ସମର୍ଥନ ନେଇ ନିଷ୍ପତ୍ତି କରିଥାଏ । ଯେଉଁ ସଭ୍ୟଙ୍କ ମତ ସର୍ବଦା ସଂଖ୍ୟାଲଘୁ ମତ ହୁଏ, ସେ ଇସ୍ତଫା ଦେବାକୁ ଇଚ୍ଛା ପୋଷଣ କରିପାରନ୍ତି ଏବଂ ତାଙ୍କୁ ମଧ୍ୟ ଏହି କଥା କୁହାଯାଇଥାଏ । ଗୋଟିଏ ଦଳରେ ବିଭିନ୍ନ ମତବାଦ ଦେଖାଯାଇଥାଏ । ଏଥିରେ ବାମପନ୍ଥୀ ଓ ଦକ୍ଷିଣପନ୍ଥୀ, ପ୍ରଗତିଶୀଳ ଓ ରକ୍ଷଣଶୀଳ, ସକ୍ରିୟ ଓ ନିର୍ଜୀବ ଏହିପରି ଦୁଇଗୋଟି ପରସ୍ପର ବିରୋଧୀ ଶ୍ରେଣୀର ସଭ୍ୟ ଥାଆନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ ଏକ ମୌଳିକ ରାଜିନାମା ଥାଏ ଓ କେବଳ କେଉଁ ବିଷୟ ପ୍ରତି ଗୁରୁତ୍ୱ ଦିଆଯିବ ତାହା ଆଗରୁ ସ୍ଥିର ହୋଇଥାଏ । ସାଧାରଣତଃ ପ୍ରଧାନମନ୍ତ୍ରୀ ଉଭୟ ଶ୍ରେଣୀର ଲୋକମାନଙ୍କୁ ମନ୍ତ୍ରିମଣ୍ଡଳରେ ସ୍ଥାନ ଦେଇ ରାଜିନାମା ଦ୍ୱାରା ନିଷ୍ପତ୍ତି କରାଇନିଅନ୍ତି । ମନ୍ତ୍ରିମଣ୍ଡଳରେ ବିଭେଦ ଦେଖା ଦେଲେ ତାହା ଦଳକୁ ବିଭେଦଗ୍ରସ୍ତ କରିବ ଓ ଏହାଦ୍ୱାରା ଆଗାମୀ ନିର୍ବାଚନରେ ଦଳ-ହାରିଯିବାର ସମ୍ଭାବନା ଆସେ। ଉପୁଜିବ ବୋଲି ଦଳଗୁଡ଼ିକ ମଧ୍ୟରେ ଏପରି ଭାରସାମ୍ୟ ଥାଏ ଯେ, ଗୋଟିଏ ଦଳ ସମର୍ଥନ ହରାଇଲେ ଅନ୍ୟ ଗୋଟିଏ ଦଳ ସମର୍ଥନ ଲାଭ କରିଥାଏ ଓ ଏହା ଫଳରେ ବିରୋଧୀଦଳ ସଂଖ୍ୟାଗରିଷ୍ଠତା ହାସଲ କରିଥାଏ ।

ନିଷ୍ପତ୍ତି ଯାହାହେଉନା କାହିଁକି ପ୍ରତ୍ୟେକ ମନ୍ତ୍ରୀ ତାହାକୁ ଗ୍ରହଣ କରିବାକୁ ବାଧ୍ୟ । ଉକ୍ତ ନିଷ୍ପତ୍ତି ତାଙ୍କ ସହକର୍ମୀମାନଙ୍କ ମତ ବଳରେ ନିଆଯାଇଥିଲେ ବି ଏହା ତାଙ୍କ ନିଷ୍ପତ୍ତି ବୋଲି ମଧ୍ୟ ଧରି ନିଆଯାଇଥାଏ । ରାଜାଙ୍କ ଠାରୁ ମନ୍ତ୍ରୀଙ୍କୁ ରକ୍ଷା କରିବା ପାଇଁ ଅଷ୍ଟାଦଶ ଶତାବ୍ଦୀରେ ମିଳିତ ଦାୟିତ୍ୱତତ୍ତ୍ୱ ଗୃହୀତ ହୋଇଥିଲା । ବୈଷୟିକ ଦୃଷ୍ଟିକୋଣରୁ ଦେଖିଲେ ମନ୍ତ୍ରିମଣ୍ଡଳ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ସୃଷ୍ଟି ହୋଇଥିଲେ ବି ରାଜା ମନ୍ତ୍ରୀମାନଙ୍କୁ ନିଯୁକ୍ତ ଓ ବରଖାସ୍ତ କରୁଥିଲେ । ମନ୍ତ୍ରୀମାନଙ୍କୁ ରାଜାଙ୍କର ବ୍ୟକ୍ତିଗତ ପରାମର୍ଶଦାତା ରୂପେ ଗ୍ରହଣ କଲାବେଳେ ସମ୍ରାଟ ଜଣେ ମନ୍ତ୍ରୀଙ୍କୁ ଆଉ ଜଣେ ମନ୍ତ୍ରୀଙ୍କ ବିରୁଦ୍ଧରେ ବ୍ୟବହାର କରୁଥିଲେ । ଅବଶ୍ୟ ରାଜା କମନ୍ସସଭାରେ ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ସମର୍ଥନ ଆବଶ୍ୟକ କରୁଥିଲେ ଓ ତଦନୁସାରେ ସରକାରୀନୀତି ନିୟନ୍ତ୍ରଣ କରିବାକୁ ଚେଷ୍ଟା କରୁଥିଲେ । ମନ୍ତ୍ରୀମାନେ ଏକତ୍ରିତ ହୋଇ କୌଣସି ପରାମର୍ଶ ଗୃହୀତ ହେବା ପାଇଁ ଜିଦ୍ କଲେ ରାଜାଙ୍କୁ ତାହା ମାନିନେବାକୁ ପଡ଼ୁଥିଲା କିମ୍ବା ତାଙ୍କୁ ଅନ୍ୟ ଏକ ବିକଳ୍ପ ସରକାର ଲାଗି ବ୍ୟବସ୍ଥା କରିବାକୁ ହେଉଥିଲା । ତଥାପି ମନ୍ତ୍ରିମଣ୍ଡଳ କୌଣସି ବିଷୟରେ ଜିଦ୍ କଲେ ବେଳେବେଳେ ବିରୋଧୀଦଳକୁ ବିକଳ୍ପ-ସରକାର ଗଠନ କରିବା ଲାଗି ଆହ୍ୱାନ ଦିଆଯାଉଥିଲା । ସେତେବେଳେ ଦଳୀୟ ଶୃଙ୍ଖଳା ବିଶେଷ କଠୋର ନ ଥିବାରୁ ଉଭୟ ଦଳ କେତେକ ଗୋଷ୍ଠୀରେ ବିଭକ୍ତ ଥିଲେ । ରାଜା ବେଳେ ବେଳେ ଏହାର ସୁଯୋଗ ମଧ୍ୟ ନେଉଥିଲେ । ସରକାରକୁ ଭାଙ୍ଗିବାକୁ ପଡ଼ୁ ନ ଥିଲେ ବି ରାଜାଙ୍କର ଏପରି କାର୍ଯ୍ୟ ଅତୀବ କଷ୍ଟକର ଥିଲା । ସୁତରାଂ ମନ୍ତ୍ରିମଣ୍ଡଳ ଏକ ସାଧାରଣ ସାମ୍ମୁଖ୍ୟ ପରି କାର୍ଯ୍ୟ କରୁଥିଲା ।

ଜଣେ ମନ୍ତ୍ରୀ ଉଭୟ କମନ୍ସସଭା ଓ ରାଜାଙ୍କ ପାଖରେ ଉତ୍ତରଦାୟୀ ଥିଲେ । କମନ୍ସସଭା ବ୍ୟୟ ମଞ୍ଜୁର କରୁଥିଲେ ଓ ଏହି ବ୍ୟୟ ସହିତ ଜଡ଼ିତ ଥିବା ନୀତିକୁ ଆଲୋଚନା କରିବା ପାଇଁ ଦାବୀ କରୁଥିଲେ । ଏହି ଖର୍ଚ୍ଚ ବିଭିନ୍ନ ମନ୍ତ୍ରଣାଳୟ ମଧ୍ୟରେ ବାଣ୍ଟି ଦିଆଯାଉଥିଲା । ଅଟକଳରେ ଥିବା କୌଣସି ଖର୍ଚ୍ଚ ବିରୁଦ୍ଧରେ ମତଦାନ କରି କମନ୍ସସଭା କୌଣସି ମନ୍ତ୍ରଣାଳୟର ନୀତିକୁ ଅନୁମୋଦନ କରିବା ନ କରିବା ପ୍ରଶ୍ନ ନ ଥିଲା । ଏଥିପାଇଁ କୌଣସି ମନ୍ତ୍ରୀ ବ୍ୟକ୍ତିଗତଭାବେ ଦାୟୀ ବୋଲି ଭାବୁଥିଲେ ସେ ଇସ୍ତଫା ଦେଉଥିଲେ । ସରକାର ସମ୍ପୂର୍ଣ୍ଣ ରୂପେ ନିଜକୁ ଦାୟୀ ବୋଲି ଭାବୁଥିଲେ ଇସ୍ତଫା ଦେଇ ଦେଉଥିଲେ । ଜଣେ ମନ୍ତ୍ରୀଙ୍କୁ ବହିଷ୍କାର କରିବା ଅପେକ୍ଷା ସରକାରଙ୍କୁ ବହିଷ୍କାର କରିବା ଗୁରୁତର ଘଟଣା ବୋଲି ବିବେଚିତ ହେଉଥିଲା । ଊନବିଂଶ ଶତାବ୍ଦୀରେ ଜଣେ ବେସରକାରୀ ସଭ୍ୟ ନିଜ "ପ୍ରଭାବ" ଅଥବା ନିଜ ନିର୍ବାଚନ ମଣ୍ଡଳୀର ମୁଖ୍ୟ ସମର୍ଥକଙ୍କ "ପ୍ରଭାବ" ଉପରେ କମ୍ ନିର୍ଭର କରି ଅଧିକରୁ ଅଧିକ ଦଳୀୟ ସମର୍ଥନ ଉପରେ ନିର୍ଭର କରୁଥିଲେ । ସରକାରଙ୍କୁ ବହିଷ୍କାର କରିବା ପାଇଁ ସାହାଯ୍ୟ କଲେ ସେ ଦଳୀୟ ସମର୍ଥନ ହରାଉଥିଲେ । ସୁତରାଂ ଦଳର ଶକ୍ତି ଓ ଏକତା ରକ୍ଷା କରିବା ପାଇଁ ମିଳିତ ଦାୟିତ୍ୱ ଏକ ପନ୍ଥାରୂପେ ବିବେଚିତ ହେଉଥିଲା ।

ମିଳିତ ଦାୟିତ୍ୱ ନୀତି ମନ୍ତ୍ରିମଣ୍ଡଳ ପ୍ରତି ବିଶେଷ ଭାବରେ ପ୍ରଯୁଜ୍ୟ ହୋଇଥାଏ । ନୀତି ଦୃଷ୍ଟିରୁ ଦେଖିଲେ ମନ୍ତ୍ରିମଣ୍ଡଳର କୌଣସି ନିଷ୍ପତ୍ତି ପାଇଁ ମନ୍ତ୍ରିମଣ୍ଡଳର ପ୍ରତ୍ୟେକ ସଭ୍ୟ ବ୍ୟକ୍ତିଗତ ଭାବରେ ଦାୟୀ ବୋଲି ଧରିନିଆଯାଏ । ମନ୍ତ୍ରିମଣ୍ଡଳର ଗୋପନୀୟତାନୀତି ସହିତ ଏହା ଜଡ଼ିତ । ଏହାର ଉତ୍ପତ୍ତି ଭିନ୍ନ କାରଣରୁ ହୋଇଥିଲା ଓ ଏହାର ଯଥାର୍ଥତା ମଧ୍ୟ ଭିନ୍ନ କାରଣରୁ ପ୍ରତିପାଦିତ ହୋଇଥାଏ । ସମ୍ରାଟଙ୍କୁ ପରାମର୍ଶ ଦେବା ପାଇଁ ମନ୍ତ୍ରୀମାନେ ନିଯୁକ୍ତ ହେଉଥିବା ଘଟଣାରୁ ମନ୍ତ୍ରିମଣ୍ଡଳୀୟ ଗୋପନୀୟତା ସୃଷ୍ଟି ହୋଇଅଛି । ଯେପରି ଜଣେ ଆଇନଜ୍ଞ କିମ୍ବା ଡାକ୍ତରଙ୍କ ପରାମର୍ଶ ଗୋପନୀୟ ଅଟେ, ସେହିପରି ମନ୍ତ୍ରୀମାନଙ୍କ ପରାମର୍ଶ ମଧ୍ୟ ଗୋପନୀୟ । ଜଣେ ବ୍ୟକ୍ତି ନିଜ ଓକିଲ, ଡାକ୍ତର, ଋଣଦାତା କିମ୍ବା ଅଂଶୀଦାରର ପରାମର୍ଶ ବିଷୟରେ ବାହାରେ ପ୍ରକାଶ କରି ନ ଥାଏ । ମୋକଦ୍ଦମା ସପକ୍ଷରେ ଯୁକ୍ତି କରିବା ପାଇଁ ଯଥେଷ୍ଟ ପ୍ରମାଣ ନାହିଁ ବୋଲି ଓକିଲ ପରାମର୍ଶ ଦେଲେ ବି ଗୋଟିଏ ପକ୍ଷ, ଅପର ପକ୍ଷକୁ ଏହା ଜଣାଇ ନ ଥାଏ । ପ୍ରିଭିକାଉନ୍‌ସିଲର ସଭ୍ୟମାନେ ସବୁକଥା ଗୋପନୀୟ ରଖିବେ ବୋଲି ଶପଥ ନେଇଥାନ୍ତି । ମନ୍ତ୍ରୀମାନେ ପ୍ରିଭିକାଉନ୍‌ସିଲର ସଭ୍ୟ ହିସାବରେ ନେଉଥିବା ଶପଥ ଅନୁସାରେ ସେମାନେ ମଧ୍ୟ ସମସ୍ତ ବିଷୟ ଗୋପନୀୟ ରଖିବାକୁ ଚେଷ୍ଟା କରିଥାଆନ୍ତି । ଯେପରି ମିଳିତ ଦାୟିତ୍ୱର କାରଣ ବଦଳିଯାଇଛି ସେହିପରି ଗୋପନୀୟତା ରକ୍ଷାକରିବା କାରଣ ମଧ୍ୟ ବଦଳିଯାଇଛି । ମନ୍ତ୍ରିମଣ୍ଡଳ ବୈଠକ ମନ୍ତ୍ରୀମାନଙ୍କର ଏକ ଗୋପନୀୟ ବୈଠକ ଅଟେ ଓ ଏଥିରେ କେଉଁ ନୀତି ଅନୁସରଣ କରିବାକୁ ହେବ ତାହା ନିଷ୍ପତ୍ତି ହୋଇଥାଏ । ଏହି ବୈଠକରେ ସଭ୍ୟମାନେ ଖୋଲାଖୋଲି ଭାବରେ ଆଲୋଚନା କରନ୍ତି ଓ ସେମାନଙ୍କ ଚିନ୍ତାଧାରା ଅବାଧରେ ପ୍ରକାଶ କରନ୍ତି । କିଛି ଅସୁବିଧା ଦେଖାଦେଲେ ସେମାନଙ୍କ ମତାମତକୁ ପ୍ରତ୍ୟାହାର କରି ନିଅନ୍ତି ଏବଂ ଯେ କୌଣସି ବିଷୟରେ ବିନା ଦ୍ୱିଧାରେ ସେମାନଙ୍କ ସନ୍ଦେହ ପ୍ରକାଶ କରିଥାଆନ୍ତି । ଏଥିରେ ବ୍ୟକ୍ତି ତଥା ନୀତି ଉଭୟର ଆଲୋଚନା ହୋଇଥାଏ । ଏହି ପ୍ରକାର ଆଲୋଚନା ଦ୍ୱାରା ସନ୍ତୋଷଜନକ ଫଳାଫଳ ଲାଭ ହୋଇଥାଏ ଓ ସର୍ବସାଧାରଣରେ ଏପରି ଆଲୋଚନା କରିବା ସମ୍ଭବପର ହୋଇ ନ ଥାଏ । ଜଣଙ୍କ ଚିନ୍ତାଧାରାକୁ ସଂସଦରେ ପ୍ରକାଶ କରାଗଲେ କିମ୍ବା ଖବରକାଗଜରେ ପ୍ରକାଶ କରାଗଲେ, ସେ ବିନା ଦ୍ୱିଧାରେ ନିଜ ମତାମତ ପ୍ରକାଶ କରିପାରନ୍ତି ନାହିଁ । ବିଶ୍ୱବିଦ୍ୟାଳୟର ସିନେଟ, ଫୁଟବଲ କ୍ଲବର ମନୋନୀତ ସମିତି, ଘୋଡ଼ାଦୌଡ଼ର ପରିଚାଳକ ଓ କମ୍ପାନୀର ନିର୍ଦ୍ଦେଶକମାନେ ଏହିପରି ଗୋପନୀୟତା ରକ୍ଷାକରିବାର ଆବଶ୍ୟକତା ଉପଲବ୍‌ଧ କରନ୍ତି ନାହିଁ । ରାଜନୀତିରେ ଏପରି ଗୋପନୀୟତାର ବିଶେଷ ଗୁରୁତ୍ୱ ଅଛି, କାରଣ ରାଜନୀତିଜ୍ଞମାନେ ପ୍ରଚାର ଉପରେ ନିର୍ଭର କରନ୍ତି ଓ ଯେ କୌଣସି ଦଳ ମଧ୍ୟ ଜନମତ ଉପରେ ନିର୍ଭର କରିଥାଏ । ସୁତରାଂ ମନ୍ତ୍ରିମଣ୍ଡଳରେ କଣ କରିବାକୁ ହେବ ତାହା ନିଷ୍ପତ୍ତି କରିବା ସଙ୍ଗେ ସଙ୍ଗେ ବାହାରେ କଣ କହିବାକୁ ପଡ଼ିବ ତାହା ମଧ୍ୟ ଠିକ୍ କରିଥାଆନ୍ତି । ମନ୍ତ୍ରିମଣ୍ଡଳର ନିଷ୍ପତ୍ତିକୁ ମନ୍ତ୍ରୀମାନେ ବାହାରେ ସମର୍ଥନ କରନ୍ତି କିନ୍ତୁ ବିରୋଧୀ ମତାମତ ଆପାତତଃ ଅସ୍ଥାୟୀ ଓ ସାମୟିକ ମନ୍ତବ୍ୟ ସ୍ୱରୂପ ଥାଏ ଓ ଏହା ଉପରେ କୌଣସି

ଗୁରୁତ୍ୱ ଆରୋପ କରାଯାଏ ନାହିଁ । ସେମାନେ ଯାହା କହିବେ ତାହା ପ୍ରକାଶ ହୋଇ ଯିବାର ଆଶଙ୍କା ଥିଲେ ସେମାନେ ନିଜ ମତାମତ ବ୍ୟକ୍ତ କରିବାକୁ ସାହସ କରିବେ ନାହିଁ ଏବଂ ଏହା ଫଳରେ ସେମାନେ ସର୍ବୋତ୍କୃଷ୍ଟ ନିଷ୍ପତ୍ତିରେ ଉପନୀତ ହୋଇପାରିବେ ନାହିଁ ।

ମିଳିତଦାୟିତ୍ୱର ଅର୍ଥ ହେଲା ଯେ, ମନ୍ତ୍ରୀଙ୍କ ସମାଲୋଚନା କରିବା ଅର୍ଥ ସରକାରଙ୍କୁ ସମାଲୋଚନା କରିବା । ମନ୍ତ୍ରୀଙ୍କ ପରାଜୟ ସରକାରଙ୍କ ପରାଜୟ ରୂପେ ବିବେଚିତ ହୋଇଥାଏ । ମନ୍ତ୍ରିମଣ୍ଡଳର ସଦସ୍ୟମାନେ ସମାନ ମତାମତ ବ୍ୟକ୍ତ କରିଥାଆନ୍ତି ବୋଲି ଏଥିରୁ ବୁଝିବାକୁ ହୁଏ । "ସେମାନେ ସମସ୍ତେ ଏକତ୍ର ରହିବା ନିଶ୍ଚିତ କଥା" ବୋଲି ରାଣୀ ଭିକ୍ଟୋରିଆଙ୍କ ପ୍ରଥମ ପ୍ରଧାନମନ୍ତ୍ରୀ ଲର୍ଡ଼ ମେଲବୋର୍ଣ୍ଣ ପ୍ରକାଶ କରିଥିଲେ ।

ଏଥିରୁ ଏହା ସୂଚୀତ ହୁଏ ଯେ, ମନ୍ତ୍ରିମଣ୍ଡଳରେ ଜଣେ ମନ୍ତ୍ରୀ କଣ କହିଲେ ବା କ'ଣ ପ୍ରସ୍ତାବ କଲେ କିମ୍ବା ଅନ୍ୟ ଜଣେ ମନ୍ତ୍ରୀ କଣ କହିଲେ ବା କି ପ୍ରସ୍ତାବ ଦେଲେ ତାହା ପ୍ରକାଶ କରାଯାଇ ନ ଥାଏ । ଏହି ନିୟମର ଏକ ବ୍ୟତିକ୍ରମ ଅଛି । ଜଣେ ମନ୍ତ୍ରୀ ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ସହ ଏକମତ ନ ହୋଇ ଇସ୍ତଫା ଦେଲେ, ତାଙ୍କୁ ତାଙ୍କର ଇସ୍ତଫାପ୍ରଦାନର କାରଣ ପ୍ରକାଶ କରିବାକୁ ସୁଯୋଗ ଦିଆଯାଏ । ଏହା କରିବାକୁ ହେଲେ ତାଙ୍କୁ ମନ୍ତ୍ରିମଣ୍ଡଳର କେତେକ ଆଲୋଚନା କମନ୍ସସଭାରେ ପ୍ରକାଶ କରିବାକୁ ହୋଇଥାଏ । ଏଥିପାଇଁ ସେ ପ୍ରଧାନମନ୍ତ୍ରୀଙ୍କ ମାଧ୍ୟମରେ ରାଣୀଙ୍କ ଅନୁମତି ପ୍ରାର୍ଥନା କରିଥାଆନ୍ତି । ସାଧାରଣତଃ ଅନୁମତି ଦିଆଯାଇଥାଏ ଓ କେଉଁ ପରିସ୍ଥିତିରେ ସେ ଇସ୍ତଫା ଦେଲେ କେବଳ ତାହାକୁ ପ୍ରକାଶ କରିବାପାଇଁ କୁହାଯାଇଥାଏ । ଅନ୍ୟାନ୍ୟ ପରିସ୍ଥିତିରେ ମନ୍ତ୍ରିମଣ୍ଡଳ ସହ ତାଙ୍କର ମତାନ୍ତର କଥା ସେ ପ୍ରକାଶ କରି ପାରନ୍ତି ନାହିଁ । ଏଥିରେ ଅତି ଗୁରୁତ୍ୱପୂର୍ଣ୍ଣ ସତର୍କତା ଅବଲମ୍ବନ କରାଯାଇଥାଏ । ସାଧାରଣତଃ, ଯେଉଁ ପରିସ୍ଥିତିରେ ମନ୍ତ୍ରିମଣ୍ଡଳର ଜଣେ ସଦସ୍ୟ ଇସ୍ତଫା ପ୍ରଦାନ କରିଥାଆନ୍ତି, ତାହା ଏକ ପୃଥକ୍ ଘଟଣା ନ ଥାଏ । ଏହା ଧାରାବାହିକ ମତାନ୍ତରର ଚରମ ପରିଣତି ଓ ଶେଷୋକ୍ତ ଘଟଣାଟି ଓଟପିଠିରେ ଶେଷ ନଡ଼ା ବିଡ଼ା ପରି କାର୍ଯ୍ୟ କରିଥାଏ । ଇସ୍ତଫା ଦେଉଥିବା ମନ୍ତ୍ରୀ ତାଙ୍କ ମତାମତର ଦୀର୍ଘ ଇତିହାସ ପ୍ରଦାନ କଲେ ଅନ୍ୟ ମନ୍ତ୍ରୀମାନେ ମଧ୍ୟ ସେମାନଙ୍କ ମତାନ୍ତରର କାରଣମାନ ପ୍ରକାଶ କରିବାକୁ ବାଧ୍ୟ ହେବେ, ଫଳରେ ନିଶ୍ଚିତ ଭାବରେ ମନ୍ତ୍ରିମଣ୍ଡଳର ଆଲୋଚନା ସର୍ବସାଧାରଣରେ ଆଲୋଚିତ ହେବ । ଏହା କ୍ଷମତାସୀନ ଦଳ ପକ୍ଷରେ କେବଳ ଦୁର୍ଭାଗ୍ୟଜନକ ନ ହୋଇ ସାଧାରଣ ସ୍ୱାର୍ଥର ପ୍ରତିକୂଳ ହୋଇଥାଏ । ମନ୍ତ୍ରୀମାନଙ୍କ ମତାମତ ପ୍ରକାଶ କରିବାର ଭୟ ଥିଲେ, କୌଣସି ମନ୍ତ୍ରୀ ଖୋଲଖୋଲି ଭାବରେ ତାଙ୍କ ମତାମତ ପ୍ରକାଶ କରିବାକୁ ରାଜି ହେବେ ନାହିଁ ।

ମନ୍ତ୍ରିମଣ୍ଡଳର ନିଷ୍ପତ୍ତି ବ୍ୟତୀତ ଆହୁରି ଅନେକ ବିଷୟ ପ୍ରତି ମିଳିତ ଦାୟିତ୍ୱ ନୀତି ପ୍ରଯୁଜ୍ୟ ହୋଇଥାଏ । କୌଣସି ବିଷୟରେ ଯଥେଷ୍ଟ ରାଜନୈତିକ ଗୁରୁତ୍ୱ ନ ଥିଲେ କିମ୍ବା

କୌଣସି ବିଷୟରେ ନିମ୍ନସ୍ତରରେ ବିଭାଗଗୁଡ଼ିକ ମଧ୍ୟରେ ମତଭେଦ ହୋଇଥିଲେ, ତାହା ମନ୍ତ୍ରିମଣ୍ଡଳ ପାଖକୁ ଯାଏ । ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ପ୍ରଶ୍ନ ମନ୍ତ୍ରୀ କିମ୍ବା ସେମାନଙ୍କ ତରଫରୁ ସରକାରୀ କର୍ମଚାରୀମାନେ ନିଷ୍ପତ୍ତି କରନ୍ତି । ମନ୍ତ୍ରୀମାନଙ୍କ ତରଫରୁ ସରକାରୀକର୍ମଚାରୀମାନେ ନିଷ୍ପତ୍ତି ନେବା କଥା ପୂର୍ବରୁ ସୂଚନା ଦିଆଯାଇଅଛି ଏବଂ ମନ୍ତ୍ରିମଣ୍ଡଳ ତରଫରୁ ମନ୍ତ୍ରୀମାନେ ମଧ୍ୟ ନିଷ୍ପତ୍ତି ନେଇଥାଆନ୍ତି । ସୁତରାଂ ପ୍ରଶାସନ କଳ ମଧ୍ୟରେ ସରକାରୀ ନୀତି ପ୍ରତିଧ୍ୱନିତ ହୁଏ ଓ ମନ୍ତ୍ରିମଣ୍ଡଳ ଏଥିପାଇଁ ମିଳିତ ଭାବରେ ଦାୟୀ ରହନ୍ତି । ଏହି ନୀତିକୁ ବେଶି ଦୂର ଆଗେଇ ନେବା ଉଚିତ ନୁହେଁ । ଉଦାହରଣସ୍ୱରୂପ, ସହରାଞ୍ଚଳର ଜଣେ ପୋଲିସକର୍ମଚାରୀ ମଧ୍ୟ ରାଜାଙ୍କ ସେବକ; ସେ ଲାଞ୍ଚ ନେଲେ ମନ୍ତ୍ରିମଣ୍ଡଳ ଲାଞ୍ଚ ନେଲା ବୋଲି କମନ୍‌ସସଭା କେବେହେଲେ ଅଭିଯୋଗ କରି ନ ଥାଏ । ସହରାଞ୍ଚଳ ପୋଲିସ୍ ସଂସ୍ଥାରେ ଦୁର୍ନୀତି ପ୍ରବେଶ ପାଇଁ ସୁଯୋଗ ଦେଇଥିବାରୁ ଏହା ମନ୍ତ୍ରିମଣ୍ଡଳର ଦୋଷ ବୋଲି ଅଭିଯୋଗ ହୋଇପାରେ । ଆଉ ମଧ୍ୟ କେତେକ ଘଟଣାରେ ନିଜର କିମ୍ବା ନିଜ ଅଧସ୍ତନ କର୍ମଚାରୀଙ୍କର ଭୁଲ୍ ପାଇଁ ମନ୍ତ୍ରିମାନେ ବ୍ୟକ୍ତିଗତ ଭାବରେ ଦାୟୀ ହୋଇଥିଲେ ଇସ୍ତଫା ଦେବାକୁ ବାଧ୍ୟ ହୁଅନ୍ତି । ୧୯୧୭ରେ ମେସୋପୋଟାମିଆ ସମ୍ବନ୍ଧରେ ନିଯୁକ୍ତ ହୋଇଥିବା ରୟାଲ-କମିଶନ୍ ଭାରତ ମନ୍ତ୍ରଣାଳୟ ବିରୁଦ୍ଧରେ କେତେକ କଟୁ ମନ୍ତବ୍ୟ କରିଥିଲେ ଓ ଏହା ଫଳରେ ବିଭାଗୀୟ ମନ୍ତ୍ରୀ ଅଷ୍ଟିନ୍ ଚେମ୍ବର୍ଲେନ ଇସ୍ତଫା ଦେଇଥିଲେ । ୧୯୩୫ରେ ଆବିସିନିଆ ବିଷୟରେ ଲିଭାଲଙ୍କ ସହିତ ହୋଇଥିବା ବୁଝାମଣା ପାଇଁ ସାରସାମୁଏଲହୋର ବ୍ୟକ୍ତିଗତ ଭାବରେ ଦାୟିତ୍ୱ ମାନି ନେଇଥିଲେ ଓ ଏଥିପାଇଁ ଇସ୍ତଫା ଦେଇଥିଲେ । ଏହି ବିଷୟ ମନ୍ତ୍ରିମଣ୍ଡଳର ଅନୁମୋଦନ ଲାଭ କରିଥିଲା ସତ୍ୟ; କିନ୍ତୁ ସରକାରଙ୍କ ବିରୁଦ୍ଧରେ ସାଧାରଣ ସମାଲୋଚନାକୁ ଏଡ଼ାଇ ଦେବାପାଇଁ ସାର୍ ସାମୁଏଲ ଇସ୍ତଫା ଦେବା ନିମିତ୍ତ ଆଗେଇ ଆସିଥିଲେ ।

ମିଳିତ ଦାୟିତ୍ୱ ନୀତିରୁ ଏହା ସୂଚିତ ହୁଏ ଯେ ସଂସଦୀୟ ସମାଲୋଚନା କୌଣସି ମନ୍ତ୍ରୀ କିମ୍ବା ସରକାରୀ କର୍ମଚାରୀଙ୍କ ବିରୁଦ୍ଧରେ ନ ହୋଇ ମୋଟ ଉପରେ ସରକାରଙ୍କ ବିରୁଦ୍ଧରେ କରାଯାଇଥାଏ । ସରକାରୀକର୍ମଚାରୀ ନିଜ କାର୍ଯ୍ୟ ପାଇଁ ସମାଲୋଚିତ ହୁଅନ୍ତି ନାହିଁ । ବାସ୍ତବିକ ସରକାରୀ ସେବାଗୋଷ୍ଠୀ ସର୍ବଦା ପଛରେ ଅଜଣା ଭାବରେ ରହିଥାନ୍ତି । ବୈଦେଶିକ ବ୍ୟାପାରରେ ଏହା ସମ୍ଭବ ନୁହେଁ । ବୈଦେଶିକ ମନ୍ତ୍ରଣାଳୟର ମୁଖ୍ୟ ଦାୟିତ୍ୱ ବୈଦେଶିକ ବ୍ୟାପାରର ଜଣେ ସ୍ଥାୟୀ ଉପସଚିବଙ୍କ ଅଧୀନରେ ଥାଏ । ହଜାରକେ ଜଣେ ବ୍ୟକ୍ତି ହୁଏତ ତାଙ୍କ ନାମ ଜାଣି ନ ଥାନ୍ତି, କିନ୍ତୁ ମିଳିତ ଜାତିସଙ୍ଘ ଉପରେ ଭାଷଣ ଦେବାପାଇଁ ବେଳେ ବେଳେ କର୍ମଚାରୀମାନଙ୍କୁ ପଡ଼ିଥାଏ । ଉପନିବେଶଗୁଡ଼ିକରେ ସ୍ଥାନୀୟ କର୍ମଚାରୀମାନଙ୍କ ନାମ ଜଣାପଡ଼ିଯାଏ ଏବଂ ସ୍ଥାନୀୟ ଖବରକାଗଜରେ ସେମାନଙ୍କ ନାମ ଓ ଦକ୍ଷତା ବିଷୟରେ ପ୍ରକାଶ ପାଇଥାଏ । ଫଳରେ ଜଣେ ଗଭର୍ଣ୍ଣରଙ୍କୁ ଶାସନର ଦୋଷତ୍ରୁଟି ପାଇଁ ଦାୟୀ କରାଯାଇ ତାଙ୍କୁ ପ୍ରତ୍ୟାହାର କରାଯିବାର ଆବଶ୍ୟକତା ପଡ଼ିପାରେ । ମିଳିତ ଦାୟିତ୍ୱ ଚିନ୍ତାଧାରାକୁ ଅଧିକ ଦୂର ଆଗେଇ ନେଇ ଏହାକୁ ଏକ କାଳ୍ପନିକ ବସ୍ତୁରେ ପରିଣତ କରାଯାଇପାରେ ।

ସ୍ୱୀକାରଖଣ୍ଡରେ ବିଦ୍ରୋହ ଦେଖାଦେଲେ ସରକାରଙ୍କୁ ଏଥିପାଇଁ ଦୋଷ ଦିଆଯାଇପାରେ କିନ୍ତୁ ଜଲ୍ କମିସନ୍‌ର ଠିକ ସମୟରେ କାର୍ଯ୍ୟ କରିଥିଲେ ବିଦ୍ରୋହ ହୋଇ ନ ଥାନ୍ତା ବୋଲି ଅଭିଯୋଗକୁ ସରକାର ଅସ୍ୱୀକାର କରିପାରନ୍ତି ନାହିଁ ।

ଦାୟିତ୍ୱସମ୍ପନ୍ନ ମନ୍ତ୍ରୀ କେବେହେଲେ ଲୁଚି ରହିପାରିବେ ନାହିଁ । ନିଜ ସୁନାମ ଓ ପ୍ରଶଂସାରେ ହୁଏତ ମନ୍ତ୍ରୀ ଅଭିଭୂତ ହୋଇ ପାରନ୍ତି, କିନ୍ତୁ ସେ ତାଙ୍କ ଅଧସ୍ତନ କର୍ମଚାରୀମାନଙ୍କୁ ପ୍ରଶଂସା କରିବାରେ କ୍ୱଚିତ୍ ଦ୍ୱିଧା ବୋଧ କରନ୍ତି । ମିଳିତ ଦାୟିତ୍ୱ ସିଦ୍ଧାନ୍ତକୁ ସମ୍ପୂର୍ଣ୍ଣ ଭାବେ କାର୍ଯ୍ୟକାରୀ କଲେ ସବୁପ୍ରକାର ସଫଳତା ପାଇଁ ସରକାର ପ୍ରଶଂସାର୍ହ ବୋଲି ମନ୍ତ୍ରୀ କହିବା ଉଚିତ । କିନ୍ତୁ ଏହା ଆଶା କରିବା ସମ୍ଭବ ନୁହେଁ । ସର୍ବୋପରି, ବିରୋଧୀ ଦଳ ମନ୍ତ୍ରୀଙ୍କ ମାଧ୍ୟମରେ ସରକାରଙ୍କୁ ନିନ୍ଦା କରିଥାଆନ୍ତି ଏବଂ ମନ୍ତ୍ରୀଙ୍କୁ ମଧ୍ୟ ନିନ୍ଦା କରିବାକୁ ବିରୋଧୀ ଦଳ ପଛଘୁଞ୍ଚା ଦିଅନ୍ତି ନାହିଁ । ପ୍ରତ୍ୟେକ ସରକାରରେ ଏପରି କେତେ ଜଣ ମନ୍ତ୍ରୀ ଥାଆନ୍ତି ଯେଉଁମାନଙ୍କୁ ସହଜରେ ସମାଲୋଚନା କରାଯାଇପାରେ । ସେହି ମନ୍ତ୍ରୀମାନଙ୍କର ହୁଏତ ଜଟିଳ ବିଭାଗୀୟ ସମସ୍ୟା ଥାଏ ଅଥବା ସଂସଦୀୟ ସମାଲୋଚନାର ମୁକାବିଲା କରିବାପାଇଁ ସେମାନେ ଅନଭିଜ୍ଞ ଥାଆନ୍ତି । ସେମାନଙ୍କ ସମାଲୋଚନା ଦ୍ୱାରା ରାଜନୈତିକ ପ୍ରଚାର ହୋଇଥାଏ ଓ ସେଥିପାଇଁ ସେମାନଙ୍କୁ ସମାଲୋଚନା କରାଯାଇଥାଏ କିନ୍ତୁ ଅନ୍ୟ ମନ୍ତ୍ରୀମାନେ ସେମାନଙ୍କୁ ରକ୍ଷା କରିଥାଆନ୍ତି ଓ ସମାଲୋଚନା ପ୍ରକୃତରେ ମନ୍ତ୍ରୀମାନଙ୍କ ପ୍ରତି ଉଦ୍ଦିଷ୍ଟ ନ ହୋଇ ବାସ୍ତବରେ ସରକାରଙ୍କ ପ୍ରତି ଉଦ୍ଦିଷ୍ଟ ହୋଇଥାଏ । ପ୍ରଧାନମନ୍ତ୍ରୀ ଚାହିଁଲେ ସୁବିଧା ପାଇଁ ଜଣେ କଷ୍ଟସହିଷ୍ଣୁ ମନ୍ତ୍ରୀଙ୍କୁ ଅନ୍ୟ ଏକ ବିଭାଗର ଦାୟିତ୍ୱ ଦେଇ ପାରନ୍ତି, କିନ୍ତୁ ବିରୋଧୀଦଳର ଉଦ୍ଦେଶ୍ୟ ଏହା ନ ଥାଏ । ଆସନ୍ତା ନିର୍ବାଚନରେ ସରକାର କିପରି ଜନ ସମର୍ଥନ ହରାଇବେ ତାହାହିଁ ବିରୋଧୀ ଦଳର ମୂଳ ଉଦ୍ଦେଶ୍ୟ ।

ଉପରୋକ୍ତ ଆଲୋଚନାରେ ମିଳିତ ଦାୟିତ୍ୱର ଗୁରୁତ୍ୱ ଉପଲବ୍ଧି କରାଯାଇପାରେ । ତାତ୍ତ୍ୱିକ ଦୃଷ୍ଟି କୋଣରୁ ମିଳିତ ଦାୟିତ୍ୱର ଅର୍ଥ ହେଲା, କମନ୍ସସଭା ସରକାରଙ୍କ କାର୍ଯ୍ୟ କିମ୍ବା କୌଣସି କାର୍ଯ୍ୟର କୌଣସି ଅଂଶକୁ ସମର୍ଥନ ନ କଲେ, ଏହା ସରକାରଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ଆଗତ କରି ସରକାରଙ୍କୁ ଇସ୍ତଫା ଦେବାପାଇଁ କିମ୍ବା ସଂସଦକୁ ଭାଙ୍ଗିଦେବା ପାଇଁ ବାଧ୍ୟ କରିପାରେ । ଦଳୀୟ ସଂଗଠନ ଯୋଗୁ ଏହା ବେଳେବେଳେ କାଳ୍ପନିକ ବିଷୟ ବୋଲି ମନେ ହୋଇଥାଏ । ସରକାର ଏକ ଦଳୀୟ ସରକାର ହୋଇଥିବାରୁ ଓ ଏହାକୁ ସଂଖ୍ୟାଗରିଷ୍ଠ ସଭ୍ୟ ସମର୍ଥନ କରୁଥିବାରୁ ସାଧାରଣ ଅବସ୍ଥାରେ ସଂଖ୍ୟାଗରିଷ୍ଠ ସଭ୍ୟମାନେ ସରକାରଙ୍କୁ ସମର୍ଥନ କରିଥାଆନ୍ତି । ସରକାରଙ୍କୁ ସଂସଦରେ ପରାଜିତ କରିବାପାଇଁ ବିରୋଧୀଦଳ ପ୍ରକୃତରେ ଆଶା କରି ନ ଥାନ୍ତି । ଆସନ୍ତା ନିର୍ବାଚନବେଳେ ନିର୍ବାଚନମଣ୍ଡଳୀରେ ସରକାରଙ୍କୁ ପରାଜିତ କରିବା ପାଇଁ ବିରୋଧୀଦଳ ଆଶା କରିଥାନ୍ତି । ସମାଲୋଚନା ଦ୍ୱାରା ଜନମତ ଧୀରେ ଧୀରେ ପରିବର୍ତ୍ତିତ ହେବ ବୋଲି ବିରୋଧୀ ଦଳର ଆଶା ଥାଏ ।

ଉପରୋକ୍ତ ବ୍ୟବସ୍ଥାରୁ ଗ୍ରୀକ ପ୍ରବଚନ "ଧୀର ପାଣି ପଥର କାଟେ" କଥା ସତ୍ୟ ବୋଲି ପ୍ରମାଣିତ ହୁଏ, ଏପରିକି ଦଳ ପ୍ରତି ଖୁବ୍ ଟାଣୁଆ ଆନୁଗତ୍ୟ ଥିବା ସଭ୍ୟ ମଧ୍ୟ ଦଳ-ଠାରୁ ଭିନ୍ନମତ ପୋଷଣ କରିଥାନ୍ତି । ସାଧାରଣ ନିର୍ବାଚକର ଦଳପ୍ରତି ଟାଣୁଆ ଆନୁଗତ୍ୟ ନ ଥାଏ, ସେ ସାଧାରଣତଃ ଜାତି ବା ଶ୍ରମିକ-ଦଳକୁ ସମର୍ଥନ କରିଥାଏ । ସମାଲୋଚନା ଦ୍ୱାରା ରାଜନୈତିକ ପ୍ରଶ୍ନ ଉତ୍ଥାପିତ ହେବା ଫଳରେ କିମ୍ବା ବିଭିନ୍ନ ବିଷୟ-ଗୁଡ଼ିକରେ ବିରୋଧୀ ଦଳ ସର୍ବଦା ସମାଲୋଚନା କରିବା ଫଳରେ, ସରକାରଙ୍କ ବିପକ୍ଷରେ ମତଦାନ ନ କଲେ ସୁଦ୍ଧା ସରକାରଙ୍କ ସପକ୍ଷରେ ମତଦାନ ନ କରିବା ପାଇଁ ବିରୋଧୀଦଳ ସାଧାରଣ ନିର୍ବାଚକକୁ ପ୍ରଭାବିତ କରିପାରନ୍ତି; ସର୍ବୋପରି ଅସନ୍ତୋଷ ହୃଦୟଖଣ୍ଡପରି କ୍ରମଶଃ ବୃଦ୍ଧି ପାଇ-ଥାଏ । ଏହି ଅସନ୍ତୋଷ ସାଧାରଣ ଓ ବ୍ୟକ୍ତିଗତ ଅନୁଷ୍ଠାନ, କ୍ୟାଣ୍ଟିନ୍ ଓ ଅଫିସ, ରେଳ ଓ ଟ୍ରାମରେ ଓ ଶେଷରେ ଭୋଟ ବାକ୍ସ ପର୍ଯ୍ୟନ୍ତ ବ୍ୟାପିଯାଏ ।

ସରକାରଙ୍କୁ ରକ୍ଷା କରିବାକୁ ହେଲେ ମିଳିତ ଦାୟିତ୍ୱର ଆବଶ୍ୟକତା ଥାଏ । ବ୍ୟକ୍ତିଗତ ଭାବରେ ମତଭେଦ ଥାଇପାରେ, କିନ୍ତୁ ତାହା ସାଧାରଣରେ ପ୍ରକାଶ ପାଇବା ଉଚିତ ନୁହେଁ । ପୁନଶ୍ଚ ଜଣେ ମନ୍ତ୍ରୀଙ୍କୁ ଆତ୍ମରକ୍ଷା କରିବା ପାଇଁ ଛାଡ଼ିଦିଆଯିବା ଉଚିତ ନୁହେଁ । ସଂସଦ ଭିତରେ ଓ ବାହାରେ ମନ୍ତ୍ରିମଣ୍ଡଳ ତାଙ୍କୁ ସମର୍ଥନ କରିବା ଦରକାର । ସାଧାରଣତଃ ମନ୍ତ୍ରିମଣ୍ଡଳର ସହକର୍ମୀମାନେ ତାଙ୍କୁ ସମର୍ଥନ କରିଥାଆନ୍ତି । ପରମ୍ପରା ଅନୁସାରେ ଉଭୟ ବାଚନିକ ଓ ଲିଖିତ ମତଦାନ ଦ୍ୱାରା ଅନ୍ୟମାନେ ମନ୍ତ୍ରୀଙ୍କୁ ସମର୍ଥନ କରନ୍ତୁ ବୋଲି ପ୍ରଧାନମନ୍ତ୍ରୀ ଆହ୍ୱାନ କରି ଥାଆନ୍ତି । ସରକାରୀ ନୀତି ସହିତ ଏକମତ ନ ହେଲେ ଜଣେ ସଂସଦୀୟ ସଚିବ କିମ୍ବା କନିଷ୍ଠ ମନ୍ତ୍ରୀ ନୀରବରେ ମତଦାନରୁ ବିରତ ହୋଇ ଥାଆନ୍ତି । ସାଧାରଣତଃ ଜଣେ ବ୍ୟକ୍ତି ମନ୍ତ୍ରିମଣ୍ଡଳରେ ଥା'ନ୍ତୁ ବା ନ ଥା'ନ୍ତୁ, କୌଣସି ଆଲୋଚନାରେ ଭାଗ ନେଇଥାନ୍ତୁ ବା ନ ଥା'ନ୍ତୁ, ସେ ସରକାରଙ୍କୁ ସମର୍ଥନ କରିଥାଆନ୍ତି ।

ମିଳିତ ଦାୟିତ୍ୱ ବ୍ୟବସ୍ଥା କାର୍ଯ୍ୟକାରୀ କରିବା ସହଜ ନୁହେଁ, ବିଶେଷତଃ ଇଂଲଣ୍ଡ ବାହାରେ ଥିବା ଅପରିପକ୍ୱ ଗଣତନ୍ତ୍ର ଗୁଡ଼ିକରେ ଏହା ସହଜରେ କାର୍ଯ୍ୟକାରୀ ହୋଇପାରେ ନାହିଁ । ଯୁଗ୍ବୀ ଫୁଟବଲ ଦଳ ଅଥବା ଗୋଟିଏ ସୁସଂଗଠିତ ନାଟକ ଦଳରେ ଆବଶ୍ୟକ ହେଉଥିବା ଦଳୀୟ ଏକତା ପରି ଏଠାରେ ମଧ୍ୟ ଆବଶ୍ୟକ ହୋଇଥାଏ । ଚଳଚ୍ଚିତ୍ର ଭାଷାରେ କହିବାକୁ ଗଲେ ରାଜନୀତିଜ୍ଞମାନେ ନିଜକୁ "ଅଭିନେତା" ( Stars ) ବୋଲି ମନେ କରି ଥାଆନ୍ତି ଏବଂ ସରକାରଙ୍କ ସପକ୍ଷରେ ପ୍ରଚାର ନ କରି ନିଜ ପ୍ରଚାରକୁ ଉତ୍ସାହିତ କରିଥା'ନ୍ତି । ଉଦାହରଣସ୍ୱରୂପ, ଜଣେ ଶିକ୍ଷାମନ୍ତ୍ରୀ ମହାମାନ୍ୟା ରାଣୀଙ୍କ ସରକାରଙ୍କ ଶିକ୍ଷାନୀତି ବ୍ୟତୀତ ନିଜର ନୀତି ନାହିଁ ବୋଲି ଭାବିବା ସହଜ ନୁହେଁ । ସେହିପରି ସେ ନିଜପାଇଁ ନ କହି ସରକାରଙ୍କ ପାଇଁ କହିବା ଓ ନିଜ ବିଭାଗର ସଫଳତା ପାଇଁ ପ୍ରଶଂସା ନିଜ ଉପରକୁ ନ ଆଣି ସରକାରଙ୍କୁ ଦେବା ସହଜ ହୋଇ ନ ଥାଏ ।

## ମନ୍ତ୍ରିମଣ୍ଡଳୀୟ ପଦ୍ଧତି ( Cabinet Procedure )

ଯୁଦ୍ଧ ପୂର୍ବରୁ ସପ୍ତାହରେ ଥରେ ଦୁଇ ଘଣ୍ଟା ପାଇଁ ମନ୍ତ୍ରିମଣ୍ଡଳ ବୈଠକ ବସୁଥିଲା ଓ ଏହା ବର୍ଷକେ ପ୍ରାୟ ବାଇଶି ସପ୍ତାହ ବସୁଥିଲା । ଯୁଦ୍ଧ ସମୟ ଠାରୁ ସାଧାରଣତଃ ପ୍ରତ୍ୟେକ ସପ୍ତାହରେ ମନ୍ତ୍ରିମଣ୍ଡଳର ବୈଠକ ସପ୍ତାହକେ ଦୁଇଥର ବସି ଆସୁଅଛି । ସରକାରୀ ସମ୍ବନ୍ଧରେ ଜଟିଳତା ସମ୍ବନ୍ଧରେ ଧାରଣା କଲାବେଳେ ଏହି ବୈଠକ ଖୁବ୍ କମ୍ ବୋଲି ଜଣାପଡ଼େ । କ୍ଷମତା ହସ୍ତାନ୍ତର ଓ ଅନ୍ୟାନ୍ୟ ସାଂଗଠନିକ ବ୍ୟବସ୍ଥା ଫଳରେ ସରକାରଙ୍କ କାର୍ଯ୍ୟ ବୃଦ୍ଧି ସମସ୍ୟାର ସମାଧାନ ହୋଇପାରିଛି ।

ମିଳିତ ଦାୟିତ୍ୱ ନୀତି ଫଳରେ ମନ୍ତ୍ରିମଣ୍ଡଳ ପାଖକୁ ବିଭାଗମାନଙ୍କ ଦ୍ୱାରା ପ୍ରେରିତ ସମସ୍ୟାଗୁଡ଼ିକ ସୀମିତ ହୋଇଯାଇଛି । ମନ୍ତ୍ରୀଙ୍କ ନାମରେ ଓ ମନ୍ତ୍ରୀଙ୍କ ତରଫରୁ ସହାୟକ ସଚିବ କାର୍ଯ୍ୟ କରି ଥାଆନ୍ତି । ମହାମାନ୍ୟା ରାଣୀଙ୍କ ସରକାରଙ୍କ ତରଫରୁ ଓ ସରକାରଙ୍କ ନାମରେ ମନ୍ତ୍ରୀ କାର୍ଯ୍ୟ କରନ୍ତି । ସୁତରାଂ ମନ୍ତ୍ରିମଣ୍ଡଳ ସମ୍ମୁଖରେ କୌଣସି ବିଷୟ ଉପସ୍ଥାପିତ ହୋଇଥିଲେ କିମ୍ବା ମନ୍ତ୍ରିମଣ୍ଡଳକୁ ସହାୟକ ସଚିବ ଏକ ସ୍ମାରକପତ୍ର ଦେଇଥିଲେ ସେଥିରେ ମନ୍ତ୍ରିମଣ୍ଡଳ ଯେଉଁ ନିଷ୍ପତ୍ତି ନେଇଥାନ୍ତେ, ସହାୟକ ସଚିବ ସେହି କ୍ଷେତ୍ରରେ ସେପରି ନିଷ୍ପତ୍ତି ନେଇ ଥାଆନ୍ତି । ଯେଉଁଠାରେ କୌଣସି ବିଷୟରେ ବିଶେଷ ରାଜନୈତିକ ଗୁରୁତ୍ୱ ଥାଏ କିମ୍ବା ଯେଉଁଠାରେ ଦୁଇଟି ବିଭାଗ ମଧ୍ୟରେ କୌଣସି ରାଜିନାମା ହୋଇପାରେ ନାହିଁ, ସେପରି କ୍ଷେତ୍ରରେ ନିଷ୍ପତ୍ତି ପାଇଁ ସମସ୍ୟାଟି ମନ୍ତ୍ରିମଣ୍ଡଳ ପାଖକୁ ପଠାଯାଇଥାଏ ।

ବିଭାଗଗୁଡ଼ିକ ମଧ୍ୟରେ ବେଳେ ବେଳେ ମତଭେଦ ଦେଖାଦେଇଥାଏ । ସରକାରଙ୍କ କାର୍ଯ୍ୟ ପରିସର ପ୍ରାୟ ପତିଣ କିମ୍ବା ତଦୁର୍ଦ୍ଧ୍ୱ ବିଭାଗଗୁଡ଼ିକ ମଧ୍ୟରେ ସୀମିତ ନ ଥାଏ । ବୈଦେଶିକ ନୀତି ବାଣିଜ୍ୟକୁ ପ୍ରଭାବିତ କରିଥାଏ ଓ ବାଣିଜ୍ୟ ମଧ୍ୟ ବୈଦେଶିକ ନୀତିକୁ ପ୍ରଭାବିତ କରିଥାଏ । ଖାଦ୍ୟ ଓ କୃଷିମନ୍ତ୍ରୀ ଉଭୟ ଘନିଷ୍ଠ ଭାବରେ ସଂପୃକ୍ତ ( ଏପରିକି ଏହା ବର୍ତ୍ତମାନ ଜଣେ "ଉପରିଷ୍ଟ ଲର୍ଡ" ଦ୍ୱାରା ପରିଚାଳିତ ହେଉଅଛି ) । ପରିବହନ, ଇନ୍ଧନ, ବାଣିଜ୍ୟ, ଯୋଗାଣ ଓ ଅର୍ଥନୈତିକ ନୀତିରେ ବେଳେ ବେଳେ ସାମଞ୍ଜସ୍ୟ ଥାଏ । ସାମାଜିକ ସେବାଗୁଡ଼ିକ ମଧ୍ୟ ପରସ୍ପର ଘନିଷ୍ଠ ଭାବରେ ସଂପୃକ୍ତ । ସର୍ବୋପରି ପ୍ରତ୍ୟେକ ସମସ୍ୟାର ଅର୍ଥନୈତିକ ଦିଗ ଅଛି ଏବଂ ପ୍ରତ୍ୟେକ ବିଭାଗ ସର୍ବଦା ରାଜକୋଷ ସହ ପରାମର୍ଶ କରନ୍ତି । ପ୍ରତ୍ୟେକ ବିଷୟରେ ମଧ୍ୟ କର୍ମଚାରୀ ନିଯୁକ୍ତ ସମସ୍ୟା ଥାଏ ଓ ଏଥିପାଇଁ ଏହା ରାଜକୋଷର ପରିଚାଳନା ବିଭାଗ ସହିତ ସଂପୃକ୍ତ ହୋଇଥାଏ ।

ବିଭାଗଗୁଡ଼ିକ ମଧ୍ୟରେ ସର୍ବଦା ଦ୍ୱନ୍ଦ୍ୱ ଥାଏ ବୋଲି ଏଥିରୁ ସୂଚିତ ହୁଏ ନାହିଁ; ପରନ୍ତୁ ସେମାନେ ପରସ୍ପର ପରାମର୍ଶ କରି କାର୍ଯ୍ୟ କରିବା ସାଧାରଣ ପଦ୍ଧତି ଅଟେ । ସଂପୃକ୍ତ କର୍ମଚାରୀ ଟେଲିଫୋନରେ ତାଙ୍କ ଉଚ୍ଚ ଅଫିସରଙ୍କ ସହିତ କଥାବାର୍ତ୍ତା କରିପାରନ୍ତି କିମ୍ବା

ତାଙ୍କୁ ସାକ୍ଷାତ କରି ପାରନ୍ତି କିମ୍ବା ସ୍ମାରକ ପତ୍ର ମାଧ୍ୟମରେ ତାଙ୍କ ସମ୍ମତି ନେଇପାରନ୍ତି । ପ୍ରତ୍ୟେକ ସମସ୍ୟା ସରକାରୀ କର୍ମଚାରୀଙ୍କ କାର୍ଯ୍ୟ ପରିସର ବୃଦ୍ଧି କରିଥାଏ । ପ୍ରତ୍ୟେକ ଉଚ୍ଚ ଅଫିସରଙ୍କ କାର୍ଯ୍ୟଭାର ବହୁତ ଅଧିକ ଥିବାରୁ ସେ ତାଙ୍କ ନିଜ ସ୍ୱାର୍ଥଦୃଷ୍ଟିରୁ ଖୁବ୍ କମ୍ ମତଭେଦ ସୃଷ୍ଟି କରିଥାଆନ୍ତି । ଏହି ମତଭେଦ ବୃଦ୍ଧି ପାଇଲେ ଏକ ଅଣାନୁଷ୍ଠାନିକ ସମ୍ମିଳନୀ ଅଥବା ଅନ୍ତର୍ବିଭାଗୀୟ ସମିତି ନିଯୁକ୍ତ କରାଯାଇ ତାହା ସମାଧାନ କରାଯାଏ । ଦରକାର ପଡ଼ିଲେ ମନ୍ତ୍ରୀମାନଙ୍କୁ ଆଲୋଚନା ପାଇଁ ଡକାଯାଏ । କେବଳ ଶେଷ ଅବସ୍ଥାରେ ଏହି ସମସ୍ୟାକୁ ମନ୍ତ୍ରିମଣ୍ଡଳ ସମ୍ମୁଖରେ ଉପସ୍ଥାପିତ କରାଯାଏ । କୌଣସି ସମସ୍ୟାର ଗୁରୁତ୍ୱ କମ୍ ଥିଲେ ସେହି ସମସ୍ୟାକୁ ବିଭାଗମାନଙ୍କ ହାତରେ ଛାଡ଼ିଦେବା ପାଇଁ ମନ୍ତ୍ରିମଣ୍ଡଳ ନିର୍ଦ୍ଦେଶ ଦେଇଥାଏ ।

ଏପରିକି କୌଣସି ବିଷୟ ମନ୍ତ୍ରିମଣ୍ଡଳ ସମ୍ମୁଖକୁ ଆସିଲେ ତାହା ବୋଧହୁଏ ମନ୍ତ୍ରିମଣ୍ଡଳୀୟ ସମିତିପାଖକୁ ପଠାଯାଇଥାଏ । ଊନବିଂଶ ଶତାବ୍ଦୀରେ ବେଳେ ବେଳେ ମନ୍ତ୍ରିମଣ୍ଡଳୀୟ ସମିତି ଗଠିତ ହେଉଥିଲା, କିନ୍ତୁ ବିଂଶ ଶତାବ୍ଦୀରେ ଏହା ଏକ ଧାରାବାହିକ ପଦ୍ଧତିରେ ପରିଣତ ହୋଇଥିଲା । ମୁଖ୍ୟତଃ ସାମ୍ରାଜ୍ୟ ପ୍ରତିରକ୍ଷା ସମିତି ସହିତ ଏହାର ସମ୍ପର୍କ ଥିଲା । ସାମ୍ରାଜ୍ୟ ପ୍ରତିରକ୍ଷା ସମିତି ୧୯୧୪ର ବିଶ୍ୱଯୁଦ୍ଧ ପୂର୍ବରୁ ଓ ଦୁଇ ବିଶ୍ୱଯୁଦ୍ଧର ମଧ୍ୟବର୍ତ୍ତୀ କାଳରେ ମନ୍ତ୍ରିମଣ୍ଡଳ ଦ୍ୱାରା ନିୟନ୍ତ୍ରିତ ହୋଇ ପ୍ରତିରକ୍ଷା ସମସ୍ୟା ବୁଝୁଥିଲା । ଏହାକୁ ଏବେ ପ୍ରତିରକ୍ଷା ସମିତି କୁହାଯାଉଅଛି । ସାମ୍ରାଜ୍ୟ ପ୍ରତିରକ୍ଷା ସମିତି ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ନିଯୁକ୍ତ ଏକ ସମିତି ଥିଲା ଓ ଏହା ଏକ ମନ୍ତ୍ରିମଣ୍ଡଳୀୟ ସମିତି ନ ଥିଲା । ଏହା ବହୁସଂଖ୍ୟକ ଉପସମିତି ମାଧ୍ୟମରେ କାର୍ଯ୍ୟ କରୁଥିଲା । ଏହାର ଏକ ସ୍ଥାୟୀ ସଚିବାଳୟ ଥିଲା, କିନ୍ତୁ ସେତେବେଳେ ମନ୍ତ୍ରିମଣ୍ଡଳର ଏପରି ସଚିବାଳୟ ନ ଥିଲା । ୧୯୧୬ରେ ଯୁଦ୍ଧକାଳୀନ ମନ୍ତ୍ରିମଣ୍ଡଳ, ସମିତି ଓ ଉପସମିତିଗୁଡ଼ିକୁ ମିଶାଇ ଦେବାପାଇଁ ଚେଷ୍ଟା କରିଥିଲେ, ଫଳରେ ସ୍ୱାଧୀନ ଭାବରେ ବିକାଶ ଲାଭ କରୁଥିବା ସମିତିଗୁଡ଼ିକ ମନ୍ତ୍ରିମଣ୍ଡଳୀୟ ସଂଗଠନର ଏକ ଅଂଶ ରୂପେ ବିବେଚିତ ହେଉଥିଲା । କୌଣସି ବିଷୟ ଅଧିକାଂଶବେଳେ ଉପସ୍ଥାପିତ ହେଉଥିଲେ ସେଥିପାଇଁ ସ୍ଥାୟୀ ସମିତି ନିଯୁକ୍ତ କରାଯାଉଥିଲା ଓ ବିଶେଷ ସମସ୍ୟାଗୁଡ଼ିକ ପାଇଁ ତଦର୍ଥ ସମିତି ବା ଆଡ଼ହକ ସମିତି ନିଯୁକ୍ତ କରାଯାଉଥିଲା । ଥରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଏକ ସମୀକ୍ଷା କରାଯାଇଥିଲା ଓ ଚାନ୍‌ସେଲର୍ ଅଫ୍ ଦ ଏକ୍‌ସଚେକର ଏଗାରଗୋଟି ମନ୍ତ୍ରିମଣ୍ଡଳୀୟ ସମିତିର ସଭ୍ୟ ଥିଲେ । ଯୁଦ୍ଧୋତ୍ତର କାଳରେ ସମିତି କାର୍ଯ୍ୟ ହ୍ରାସ ପାଇଛି ବୋଲି କହିବା ସମ୍ଭବ ନୁହେଁ । କେତେକ ବ୍ୟତିକ୍ରମକୁ ଛାଡ଼ିଦେଲେ ମନ୍ତ୍ରିମଣ୍ଡଳୀୟ ସମିତିଗୁଡ଼ିକର ନାମ ଓ କାର୍ଯ୍ୟ ବାହାରେ ପ୍ରକାଶ କରାଯାଏ ନାହିଁ, କାରଣ ଏହା ଦ୍ୱାରା ମନ୍ତ୍ରିମଣ୍ଡଳର ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଗୁଡ଼ିକ ବାହାରେ ପ୍ରକାଶ ହେବାର ସମ୍ଭାବନା ଥାଏ । ଉଦାହରଣସ୍ୱରୂପ, ୧୯୧୪ ପୂର୍ବରୁ ଗଠିତ ସାମ୍ରାଜ୍ୟ ପ୍ରତିରକ୍ଷା ସମିତି ଗୋଟିଏ ବିଦେଶୀ ଦେଶର ସମୀପବର୍ତ୍ତୀ ଅଞ୍ଚଳରେ ନୌସେନାର କାର୍ଯ୍ୟାବଳୀ ତଦାରଖ କରୁଥିଲା । ସମିତିର ଏହି କାର୍ଯ୍ୟକୁ

ବାହାରେ ପ୍ରକାଶ କରାଯାଇଥିଲେ କେବଳ ବିଦେଶୀ ଦେଶ ନୁହେଁ, ବରଂ ଅନ୍ୟାନ୍ୟ ନୌଶକ୍ତିଗୁଡ଼ିକ ମଧ୍ୟ ସେଠାରେ ଇଂଲଣ୍ଡର ନୌସେନାବାହିନୀ କଣ କରୁଛନ୍ତି ତାହା ଜାଣିବା ପାଇଁ ନିଜର ଗୁପ୍ତ ସଂଗଠନକୁ ଲଗାଇ ଦେଇଥାନ୍ତି ।

ମନ୍ତ୍ରିମଣ୍ଡଳରେ ବିଭାଗୀୟ ଗୁରୁଦାୟିତ୍ୱ ନ ଥିବା କେତେଜଣ ମନ୍ତ୍ରୀଙ୍କ ଉପସ୍ଥିତି ଆବଶ୍ୟକ ହୋଇଥାଏ, କାରଣ ସେମାନେ କେବଳ ମନ୍ତ୍ରିମଣ୍ଡଳୀୟ ଆଲୋଚନାରେ ସାହାଯ୍ୟ ନ କରି ବିଭିନ୍ନ ମନ୍ତ୍ରିମଣ୍ଡଳୀୟ ସମିତିଗୁଡ଼ିକର ଅଧ୍ୟକ୍ଷରୂପେ କାର୍ଯ୍ୟ କରିଥାଆନ୍ତି । ଏହା ଦ୍ୱାରା ସେମାନେ ବିଭାଗୀୟ ମନ୍ତ୍ରୀମାନଙ୍କ କାର୍ଯ୍ୟଭାର ଲାଘବ କରିଥାଆନ୍ତି । ଆଉ ମଧ୍ୟ ମନ୍ତ୍ରିମଣ୍ଡଳର ସଦସ୍ୟ ନ ଥିବା ମନ୍ତ୍ରୀ, ସଂସଦୀୟ ସଚିବ, ଏପରିକି ସରକାରୀ କର୍ମଚାରୀମାନେ ମଧ୍ୟ ମନ୍ତ୍ରି-ମଣ୍ଡଳୀୟ ସମିତିଗୁଡ଼ିକରେ ଉପସ୍ଥିତ ରହନ୍ତି । ପୁନଶ୍ଚ ଗୁରୁତ୍ୱପୂର୍ଣ୍ଣ ସମିତି ଗୁଡ଼ିକରେ ମୁଖ୍ୟ ବିଭାଗଗୁଡ଼ିକର ମନ୍ତ୍ରୀମାନଙ୍କୁ ନିଆଯାଇଥାଏ । ଏହା ଫଳରେ ସଂପୃକ୍ତ ମନ୍ତ୍ରୀମାନଙ୍କୁ ବିଭାଗୀୟ ଓ ସଂସଦୀୟ ଦାୟିତ୍ୱ ସହିତ ସମିତିର କଠିନ କାର୍ଯ୍ୟ ମଧ୍ୟ କରିବାକୁ ପଡ଼ିଥାଏ । ଫଳରେ ସେମାନଙ୍କୁ ଅଧିକ କାର୍ଯ୍ୟଭାର ବହନ କରିବାକୁ ପଡ଼ିଥାଏ ।

ଏକ ସୁସଂଗଠିତ ମନ୍ତ୍ରିମଣ୍ଡଳୀୟ ସଚିବାଳୟ ପ୍ରତିଷ୍ଠିତ ହୋଇଥିଲେ ଏହି କାର୍ଯ୍ୟଭାର କମ୍ ହୋଇ ଯାଇଥାନ୍ତା । ଆଶ୍ଚର୍ଯ୍ୟର କଥା, ୧୯୧୬ ପର୍ଯ୍ୟନ୍ତ କୌଣସି ମନ୍ତ୍ରିମଣ୍ଡଳୀୟ ସଚିବାଳୟ ନ ଥିଲା । ସେତେବେଳେ ମନ୍ତ୍ରିମଣ୍ଡଳୀୟ ଆଲୋଚନା ଏତେ ଗୋପନୀୟ ଥିଲା ଯେ, ମନ୍ତ୍ରିମାନଙ୍କୁ କୌଣସି ଟିପ୍ପଣୀ ଲେଖିବାକୁ ଅନୁମତି ଦିଆଯାଉ ନ ଥିଲା । ପ୍ରଧାନମନ୍ତ୍ରୀ ଏକ ଔପଚାରିକ କାର୍ଯ୍ୟ ନିର୍ଘଣ୍ଟ ନିଜ ସମ୍ମୁଖରେ ରଖିଥିଲେ ଓ ମନ୍ତ୍ରିମଣ୍ଡଳୀୟ ନିଷ୍ପତ୍ତି ଜଣାଇ ଦେବାଲାଗି ରାଜାଙ୍କ ନିକଟକୁ ଗୋଟିଏ ଚିଠି ଲେଖିଥିଲେ । ଏହି ଚିଠିକୁ ଛାଡ଼ିଦେଲେ ମନ୍ତ୍ରିମଣ୍ଡଳୀୟ ନିଷ୍ପତ୍ତିଗୁଡ଼ିକ ଲିଖିତ ଭାବରେ ରହୁ ନ ଥିଲା । ମନ୍ତ୍ରୀମାନେ ସେମାନଙ୍କ ସ୍ମରଣଶକ୍ତି ଉପରେ ନିର୍ଭର କରି ବିଭାଗମାନଙ୍କୁ ଆବଶ୍ୟକ ନିର୍ଦ୍ଦେଶ ଦେଉଥିଲେ । ପରେ କେଳେବେଳେ ବିଶେଷ ବିବାଦୀୟ ପରିସ୍ଥିତିରେ କଣ ନିଷ୍ପତ୍ତି ନିଆଯାଇ ଥିଲା, ତାହା ମନ୍ତ୍ରୀମାନେ ପରସ୍ପର ପଚାରୁଥିଲେ । ସାମ୍ରାଜ୍ୟ ପ୍ରତିରକ୍ଷା ସମିତି ଏକ ଗୋପନୀୟ ସଂସ୍ଥା ଥିଲା । ଏହା ଏକ ଜଟିଳ ସଂସ୍ଥା ଥିବାରୁ ଏହା ପାଇଁ ଗୋଟିଏ ସଚିବାଳୟ ଥିଲା । ଏହି ସଂସ୍ଥାକୁ ୧୯୧୬ରେ ଯୁଦ୍ଧ ମନ୍ତ୍ରିମଣ୍ଡଳରେ ମିଶାଇ ଦିଆଯିବା ଫଳରେ ଏହାର ସଚିବାଳୟକୁ ମଧ୍ୟ ମିଶାଇ ଦିଆଯାଇଥିଲା । ବାସ୍ତବିକ୍ ସଚିବାଳୟ ନ ଥିଲେ ଯୁଦ୍ଧକାଳୀନ ମନ୍ତ୍ରିମଣ୍ଡଳ କାର୍ଯ୍ୟ କରି ପାରି ନ ଥାନ୍ତା । ୧୯୨୨ରେ ମିଳିତ ମନ୍ତ୍ରିମଣ୍ଡଳ ଭାଙ୍ଗିଯିବା ପରେ ଏହି ସଚିବାଳୟକୁ ଉଠାଇ ଦେବା ପାଇଁ ପ୍ରସ୍ତାବ ହୋଇଥିଲା । କିନ୍ତୁ ଏଠାରେ ଏକ ବିଜ୍ଞ ପରାମର୍ଶ ଦିଆଯାଇଥିଲା ଯେ ସଚିବାଳୟ ନ ଥିଲେ ବହୁ ସମିତି ମାଧ୍ୟମରେ କାର୍ଯ୍ୟ କରୁଥିବା ଆଧୁନିକ ମନ୍ତ୍ରିମଣ୍ଡଳ କାର୍ଯ୍ୟକରି ପାରିବ ନାହିଁ ।

ଚିଠିପତ୍ର ପଠାଇବାରେ ସଚିବାଳୟ ବହୁ ଭାବରେ ସାହାଯ୍ୟ କରିଥାଏ । ପ୍ରଥମତଃ, ଏହା ମନ୍ତ୍ରିମଣ୍ଡଳର କାର୍ଯ୍ୟ ନିର୍ଘଣ୍ଟ ପ୍ରସ୍ତୁତ କରେ ଓ ଏହା ଫଳରେ କେଉଁ ବିଷୟ ମନ୍ତ୍ରିମଣ୍ଡଳ ସମ୍ମୁଖରେ ଉପସ୍ଥାପିତ ହେବ, ତାହା ନିର୍ଣ୍ଣୟ କରିବାକୁ ପ୍ରଧାନମନ୍ତ୍ରୀଙ୍କୁ ସାହାଯ୍ୟ କରେ । ଦ୍ୱିତୀୟତଃ, କାର୍ଯ୍ୟନିର୍ଘଣ୍ଟରେ ଥିବା ବିଭିନ୍ନ ବିଷୟରେ ଏହା ସଂପୃକ୍ତ ବିଭାଗଗୁଡ଼ିକରୁ ସ୍ମାରକପତ୍ର ସଂଗ୍ରହ କରେ । ମନ୍ତ୍ରିମଣ୍ଡଳ ପାଖକୁ କୌଣସି ସ୍ମାରକ ପତ୍ର ପଠାଯିବା ପୂର୍ବରୁ ଏହା ବିଭିନ୍ନ-ଭାବରେ ଆଲୋଚିତ ହୋଇଥାଏ ଓ ଏଥିପାଇଁ ମନ୍ତ୍ରିମଣ୍ଡଳ ଖୁବ୍ ଶୀଘ୍ର ନିଷ୍ପତ୍ତି ନେବା ସହଜ ହୋଇଥାଏ । ମନ୍ତ୍ରିମଣ୍ଡଳ କୌଣସି ପ୍ରଶ୍ନକୁ ପୁଙ୍ଖାନୁପୁଙ୍ଖ ଆଲୋଚନା ନ କରି କେବଳ ନୀତି ସମ୍ବନ୍ଧରେ ଆଲୋଚନା କରନ୍ତି । ପ୍ରଶାସନିକ ସଂସ୍ଥା ସେହି ବିଷୟକୁ ଠିକ ଭାବରେ କାର୍ଯ୍ୟକାରୀ କରିଥାଏ ଓ ପ୍ରତ୍ୟେକ ପ୍ରଶାସକର ସେହି ବିଷୟରେ ଯଥେଷ୍ଟ ଧାରଣା ଥାଏ । ଅପର ପକ୍ଷରେ ଗୋଟିଏ ବିଷୟରେ ଠିକ ନକି ବିଷୟ ବିଗ୍ଭର କରିବା ମନ୍ତ୍ରିମଣ୍ଡଳର କାର୍ଯ୍ୟ ନୁହେଁ । ଏହା କେବଳ ସଂପୃକ୍ତ ସ୍ମାରକ ପତ୍ରକୁ ବିଗ୍ଭର କରି ଥାଏ । ତୃତୀୟତଃ, ମନ୍ତ୍ରିମଣ୍ଡଳରେ ସଦସ୍ୟ ନ ଥିବା ମନ୍ତ୍ରୀମାନେ ସେମାନଙ୍କ ବିଭାଗୀୟ ଆଲୋଚନା ବେଳେ ଯେପରି ମନ୍ତ୍ରିମଣ୍ଡଳ ବୈଠକରେ ଉପସ୍ଥିତ ରହନ୍ତି ତାହା ଦେଖିବା ମଧ୍ୟ ସଚିବାଳୟର ଦାୟିତ୍ୱ । ଚତୁର୍ଥତଃ, ନିଷ୍ପତ୍ତିଗୁଡ଼ିକୁ ସଚିବାଳୟ ଲେଖିରଖିବା ଫଳରେ ସମସ୍ତ ପ୍ରଶ୍ନ ସମ୍ବନ୍ଧରେ ନିଷ୍ପତ୍ତି ହେଲାକି ନାହିଁ ତାହା ଦେଖିବା ସଚିବାଳୟର ଅନ୍ୟ ଏକ କାର୍ଯ୍ୟ ଅଟେ । ଶେଷରେ ସଚିବାଳୟ ଗୃହୀତ ନିଷ୍ପତ୍ତି ବା ମନ୍ତ୍ରିମଣ୍ଡଳର "ବିବରଣୀ" **(Minutes)** ବିଭାଗମାନଙ୍କୁ ପଠାଇଥାଏ ଓ ମନ୍ତ୍ରିମଣ୍ଡଳୀୟ ନିଷ୍ପତ୍ତି ଅନୁସାରେ ବିଭାଗଗୁଡ଼ିକ କାର୍ଯ୍ୟାନୁଷ୍ଠାନ କରନ୍ତି ।

ଉପରୋକ୍ତ ପଦ୍ଧତି ମଧ୍ୟ ମନ୍ତ୍ରିମଣ୍ଡଳୀୟ ସମିତିଗୁଡ଼ିକ ପ୍ରତି ପ୍ରଯୁଜ୍ୟ ହୋଇଥାଏ । ଏହି ସମିତିଗୁଡ଼ିକ ବେଳେ ବେଳେ କୌଣସି ପ୍ରଶ୍ନର ସମାଧାନ କରିଥାଆନ୍ତି ଓ ଅନ୍ୟକେତେକ ସମୟରେ ମନ୍ତ୍ରିମଣ୍ଡଳକୁ କେବଳ ନିଜ ରିପୋର୍ଟ ଦେଇଥାଆନ୍ତି ।

## ସରକାର ଓ ଜନମତ ( Government and Opinion ) :

ମନ୍ତ୍ରିମଣ୍ଡଳ କେଉଁ ପରିସ୍ଥିତିରେ ନିଷ୍ପତ୍ତି ଗ୍ରହଣ କରିଥାନ୍ତି ତାହା ମନେ ରଖିବା ଆବଶ୍ୟକ । ସାଧାରଣତଃ ବିଭାଗଗୁଡ଼ିକରୁ ଆସିଥିବା ସମସ୍ୟାମାନ ମନ୍ତ୍ରିମଣ୍ଡଳ ସମ୍ମୁଖରେ ଉପସ୍ଥାପିତ ହୋଇଥାଏ । ସେଗୁଡ଼ିକ ହୁଏତ ଦଳୀୟ କାର୍ଯ୍ୟକ୍ରମର ଅଂଶ ହୋଇଥାଇପାରେ କିମ୍ବା କୌଣସି ବିଷୟ କାର୍ଯ୍ୟକାରୀ କରିବା ସମୟରେ ଉକ୍ତ ସମସ୍ୟା ଉପସ୍ଥାପିତ ହେବା ଫଳରେ ମନ୍ତ୍ରୀ ବାଧହୋଇ ତାହା ମନ୍ତ୍ରିମଣ୍ଡଳ ପାଖକୁ ପଠାଇଥାନ୍ତି । ଅଧିକାଂଶ ସମୟରେ ସମସ୍ୟାଟି ପ୍ରଶାସନ କ୍ଷେତ୍ରରୁ ସୃଷ୍ଟି ହୋଇଥାଏ ଓ ପ୍ରଶାସକମାନେହିଁ ତାହା ଆରମ୍ଭ କରି ଥାଆନ୍ତି । ସେ ଯାହା ହେଉନା କାହିଁକି, ଯେଉଁ ନିଷ୍ପତ୍ତି ଗ୍ରହଣ କରାଯାଏ, ତାହା ସଂସଦରେ ସମାଲୋଚିତ ହେବାର ଭୟଥାଏ । ବିରୋଧୀଦଳ କିପରି କାର୍ଯ୍ୟ କରେ ତାହା ଆଗରୁ ଆଲୋଚନା କରାଯାଇଛି ।

ସରକାରଙ୍କୁ ଅପ୍ରିୟ କରାଇ ଆଗାମୀ ନିର୍ବାଚନରେ ଜନସମର୍ଥନ ହ୍ରାସ କରାଇବା ଏହାର ଲକ୍ଷ୍ୟ ଅଟେ । ସରକାରଙ୍କ ପ୍ରତ୍ୟେକ ନିଷ୍ପତ୍ତିକୁ କପଟଭାବରେ ସମାଲୋଚନା କରିହେବ ତାହା ବିରୋଧୀଦଳ ସର୍ବଦା ଭାବିଥାଏ । ସରକାରୀ ନୀତିକୁ ଘନିଷ୍ଠ ଭାବରେ ଅନୁଧ୍ୟାନ କରିବାପାଇଁ ବିରୋଧୀଦଳରେ କେତେକ ଅଭିଜ୍ଞ ବିଶେଷଜ୍ଞ ଥାନ୍ତି । ବିରୋଧୀଦଳ ପ୍ରତି ସହାନୁଭୂତି ପ୍ରଦର୍ଶନ କରୁଥିବା ବାହାରର ବିଶେଷଜ୍ଞମାନଙ୍କ ସାହାଯ୍ୟ ମଧ୍ୟ ନିଆଯାଇଥାଏ ଓ ସେମାନେ ସେମାନଙ୍କ ବୈଷୟିକ ଜ୍ଞାନ ଓ ଅଭିଜ୍ଞତା ଦୃଷ୍ଟିରୁ ସରକାରୀ ନୀତିର ସମାଲୋଚନା କରିବାରେ ବିରୋଧୀ-ଦଳକୁ ସାହାଯ୍ୟ କରନ୍ତି । ସରକାରଙ୍କ ପରି ବିରୋଧୀଦଳ ମଧ୍ୟ ନିର୍ବାଚନମଣ୍ଡଳୀଗୁଡ଼ିକ ସହିତ ଘନିଷ୍ଠ ସମ୍ପର୍କସ୍ଥାପନ କରିଥାଆନ୍ତି ଓ କେଉଁଠାରେ ଦୋଷ ଦୁର୍ବଳତା ରହିଲା ତାହା ଜାଣିବା ପାଇଁ ଚେଷ୍ଟା କରନ୍ତି । ଦୈନିକ ଖବରକାଗଜରେ ଓ ସାପ୍ତାହିକ ପତ୍ରପତ୍ରିକାରେ ପ୍ରକାଶ ପାଉଥିବା ସମାଲୋଚନାକୁ ବିରୋଧୀଦଳ ସ୍ୱାଗତ କରିଥାଏ । ପ୍ରଧାନତଃ, ଏହାର ସମାଲୋଚନା କମନ୍‌ସ୍‌ସଭା ମଧ୍ୟରେ ସୀମିତ ଥାଏ । ବିଭିନ୍ନ ବିଷୟରେ ସ୍ପଷ୍ଟୀକରଣ ଦେବା ପାଇଁ ଓ ନିଜକୁ ରକ୍ଷା କରିବାପାଇଁ ଏହା ସରକାରଙ୍କୁ ବାଧ୍ୟ କରିଥାଏ । ରାଜନୈତିକ ବିବାଦର ବିଭିନ୍ନଦିଗ ଖବରକାଗଜରେ ପ୍ରକାଶ କରିବାରେ ଏହା ନେତୃତ୍ୱ ନେଇଥାଏ । ଗୋଟିଏ ପକ୍ଷରେ ଏହା ଜନମତ ସୃଷ୍ଟିକରେ ଓ ଅପର ପକ୍ଷରେ ଏହା ଜନମତ ସୃଷ୍ଟି କରିବା ପାଇଁ ସାହାଯ୍ୟ କରେ ।

ପ୍ରତ୍ୟେକ ସରକାର ଜାଣିଶୁଣି ଅତି ଅଳ୍ପ ଅପ୍ରିୟ ନିଷ୍ପତ୍ତି ନେଇଥାନ୍ତି, କାରଣ ଆଉ ଅଧିକ ନିଷ୍ପତ୍ତି ନେଲେ ତାହା ଅଧିକ ଅପ୍ରିୟ ହେବ ବୋଲି ବିଶ୍ୱାସ ଥାଏ । କୌଣସି ବ୍ୟକ୍ତି "ଟିକସ" ଚାହେଁ ନାହିଁ । ବାଣିଜ୍ୟ-ବ୍ୟବସାୟର ମାନ୍ଦା ଅବସ୍ଥା ସୃଷ୍ଟି ହେଲେ ବେକାର ସମସ୍ୟା ସ୍ୱଳ୍ପବେତନ ଓ ଅଧିକ ସମୟ ଖଟଣି ପରି ଏହାର ପରିଣତିକୁ କେହି ଭଲ ପାଇ ନ ଥାନ୍ତି । ମୁଦ୍ରା-ସ୍ଫୀତିକୁ ରୋକିବା ପାଇଁ କୌଣସି ସରଳ ବ୍ୟବସ୍ଥା ଗ୍ରହଣ କରାଗଲେ ତାହା ହଠାତ୍ ଅପ୍ରିୟ ହୋଇ ନ ଥାଏ, କିନ୍ତୁ ଦରଦାମ୍ ବଢିଗଲେ ତୀବ୍ର ସମାଲୋଚନା କରାଯାଇ-ଥାଏ । ଗୋଟିଏ ସରକାର ନିଜ କାର୍ଯ୍ୟକୁ ସହଜ ମନେକରି ବିରୋଧୀ ଦଳର ଭବିଷ୍ୟତ-ବାଣୀପ୍ରତି ବେଖାତିର ମନୋଭାବ ପ୍ରଦର୍ଶନ କରିପାରେ; କିନ୍ତୁ ବିରୋଧୀ ଦଳର ଭବିଷ୍ୟତ ବାଣୀ ସତ୍ୟବୋଲି ପ୍ରମାଣିତ ହେଲେ ଜନମତ ବିରୋଧୀଦଳ ସପକ୍ଷରେ ଯାଏ । ସୁତରାଂ ବିରୋଧୀ-ଦଳର ସମାଲୋଚନା ଫଳରେ ସରକାର ସର୍ବୋଚ୍ଚ ପ୍ରଶାସକ ବ୍ୟବସ୍ଥା କରି ସତର୍କତା ଅବଲମ୍ବନ କରନ୍ତି । ବିରୋଧୀଦଳ ସର୍ବଦା ସଫଳତା ହାସଲ କରି ନ ଥାଏ । ମିକ୍‌ଓ୍ୟାର୍‌ଙ୍କ ପରି ସବୁବେଳେ କିଛି ନା କିଛି ଘଟିବ ବୋଲି ସରକାର ଆଶା କରିଥାଆନ୍ତି ଓ ବେଳେ-ବେଳେ କିଛି ନା କିଛି ମଧ୍ୟ ଘଟିଥାଏ । ବିରୋଧୀଦଳ ରହିବା ଫଳରେ ସରକାର ନିଜ କଥା କହିବାକୁ ସୁଯୋଗ ପାଇବା ସଙ୍ଗେ ସଙ୍ଗେ ଆତ୍ମରକ୍ଷା କରି ଥାଆନ୍ତି । ସରକାରଙ୍କର ପ୍ରତ୍ୟେକ କାର୍ଯ୍ୟ ସମ୍ବନ୍ଧରେ ରାଜନୈତିକ ଯୁକ୍ତି ଦର୍ଶାଯାଇଥାଏ ।

କମନସ୍ ସଭା ଗୃହରେ ଯେଉଁ ଯୁକ୍ତିତର୍କ ହୋଇଥାଏ, ତାହା ତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହି ସଭାର ସମର୍ଥନ ଲାଭ ପାଇଁ ଉଦ୍ଦିଷ୍ଟ ଥିଲେ ସୁଦ୍ଧା, ବାସ୍ତବରେ ଏହା ନିର୍ବାଚକମାନଙ୍କ ପ୍ରତି ଉଦ୍ଦିଷ୍ଟ ଥାଏ । ସରକାର ସଂଖ୍ୟା ଗରିଷ୍ଠତା ରକ୍ଷା କରିବାକୁ ଚାହିଁଥାନ୍ତି ଓ ବିରୋଧୀଦଳ ଏହାକୁ ନଷ୍ଟକରି ଦେବାକୁ ବ୍ୟଗ୍ର ଥାଆନ୍ତି । ଅବଶ୍ୟ ଜନସାଧାରଣଙ୍କୁ ନିବେଦନ କରିବାରେ ବିପଦ ଅଛି । ସମସ୍ତେ ବନ୍ଧୁକ ଅପେକ୍ଷା ଲହୁଣୀକୁ ବେଶୀ ଚାହାଁନ୍ତି । ଗୋଲା ବାରୁଦ ଦରକାର ବେଳେ ସରକାର ଲହୁଣୀ ବ୍ୟବସ୍ଥା କରିବା ପାଇଁ ହୁଏତ ଇଚ୍ଛା କରିପାରନ୍ତି । ମୁକ୍ତ ଛଳରେ ବିରୋଧୀଦଳ ପ୍ରକାଶ କରିପାରେ ଯେ, ଏହା କ୍ଷମତାରେ ଥିଲେ ଅଧିକ ଓ ଭଲ ଲହୁଣୀ ଯୋଗାଇ ଦେଇ ପାରିଥାଆନ୍ତା । ଜଣେ ସଚ୍ଚୋଟ ଲୋକ କମନ୍ସ ସଭାର ଯେ କୌଣସି ପକ୍ଷରେ ଥାଆନ୍ତୁ ପଛକେ କୌଣସି ଦଳୀୟ ଚିନ୍ତାଧାରାକୁ ବିଚାରକୁ ନ ନେଇ ହୁଏତ ଅଧିକ ଗୋଲାବାରୁଦ ଦରକାର ବୋଲି କହିପାରନ୍ତି । ଜଣେ ଅନ୍ଧଲୋକ ଅପେକ୍ଷା ଅନ୍ୟ କେହି ଏପରି ଅନ୍ଧହୋଇ ନ ଥାନ୍ତି ଏବଂ ସବୁଠାରୁ ଭଲ ଫଳ ମିଳିବ ବୋଲି ସମସ୍ତେ ଆଶା କରି ଥାଆନ୍ତି । ଆର ସପ୍ତାହରେ କାଲେ କଣ ଘଟିଯିବ ବୋଲି ଭାବି ଏହି ସପ୍ତାହରେ ଖାଇ ପିଇ ଆନନ୍ଦରେ ରହିବା ସହଜ । ଗୋଟିଏ ପକ୍ଷ ହାରିଯିବାର ନିଶ୍ଚିତ ସମ୍ଭାବନା ଦେଖି ମଧ୍ୟ ହଜାର ହଜାର ଲୋକ ଘୋଡ଼ା ଦୌଡ଼କୁ ଆସନ୍ତି ଓ ଲକ୍ଷ ଲକ୍ଷ ଲୋକ ଫୁଟବଲ୍ ଖେଳ ଦେଖିବା ପାଇଁ ରୁଣ୍ଡ ହୁଅନ୍ତି । ଏଥି ସହିତ ରାଜନୈତିକ ଦଳଗୁଡ଼ିକ ଅତି ସୁପରିଚିତ ଥିବାରୁ ଏହାର ସୁବିଧା ନେଇ ଦଳର ସୁବିଧା କରିବାକୁ ସେମାନେ ପଛଘୁଞ୍ଚା ଦେଇ ନ ଥାନ୍ତି । ସେମାନଙ୍କ ଅର୍ଥନୀତିଜ୍ଞମାନେ ଅର୍ଥନୈତିକ ବିକାଶ ସମୟରେ ଅଧିକ ସଞ୍ଚୟ କରିବାକୁ ଓ ଅର୍ଥନୈତିକ ମାନ୍ଦାବସ୍ଥାରେ ଅଧିକ ଖର୍ଚ୍ଚ କରିବାକୁ ସେମାନଙ୍କୁ ପରାମର୍ଶ ଦେଇଥାନ୍ତି; କିନ୍ତୁ ବାସ୍ତବ କ୍ଷେତ୍ରରେ ମାନ୍ଦାବସ୍ଥା ସୃଷ୍ଟି ନ ହେବ ବୋଲି ଭାବି ସେମାନେ ଅର୍ଥନୈତିକ ବିକାଶ ସମୟରେ ଅଧିକ ଖର୍ଚ୍ଚ କରିଥାଆନ୍ତି । ଅର୍ଥନୈତିକ ମାନ୍ଦାବସ୍ଥା ସମୟରେ ଅର୍ଥନୈତିକ ପ୍ରଗତି ଲାଗି ଅଧିକ ଖର୍ଚ୍ଚ କରାଯାଇଥାଏ ( ଅଧିକ ଋଣ ବ୍ୟବସ୍ଥା କରି ) ।

ଅପର ପକ୍ଷରେ ପ୍ରତ୍ୟେକ ବ୍ୟକ୍ତି ଦାୟିତ୍ୱ-ସମ୍ପନ୍ନ ଥିବାରୁ ଯେ କୌଣସି ବିଷୟ ତାଙ୍କୁ ବୁଝାଇଦେଲେ ସେ ତାହା ଗ୍ରହଣ କରିନଥାନ୍ତି । ଶାସନ କେବଳ ଗଣତାନ୍ତ୍ରିକ ହୋଇଥିବାରୁ, ଏକ ଖରାପ ଗଣତନ୍ତ୍ରକୁ ଭଲ ବୋଲି କୁହାଯାଇ ପାରିବ ନାହିଁ । ଯେଉଁ ସରକାରୀ ବ୍ୟବସ୍ଥା ଗଣତାନ୍ତ୍ରିକ ନୁହେଁ ତାହା ହୁଏତ ବର୍ତ୍ତମାନ ଖରାପ ହୋଇପାରେ କିମ୍ବା ଖୁବ୍ ଶୀଘ୍ର ଖରାପ ହୋଇଯିବାର ସମ୍ଭାବନା ଥାଏ । ଏହାର କାରଣ ହେଉଛି ଯେ, ଅନିୟନ୍ତ୍ରିତ କ୍ଷମତା ସର୍ବଦା କ୍ଷମତାସୀନ ବ୍ୟକ୍ତିକୁ ଖରାପ କରିଥାଏ । ମୋଟ ଉପରେ ବ୍ରିଟେନ୍ ତାର ରାଜନୀତିଜ୍ଞ ମାନଙ୍କୁ ବିଶ୍ୱାସ କରେ । ସେମାନେ ସର୍ବଦା ଠିକ୍ ନ ଥାନ୍ତି କିନ୍ତୁ ଦଳୀୟ ସୁବିଧା ପାଇଁ ଜାତୀୟ ସ୍ୱାର୍ଥକୁ ଦଳିଦେବା ପାଇଁ ଖୁବ୍ କମ୍ ସରକାର ପ୍ରସ୍ତୁତ ଥାଏ । ନେତୃତ୍ୱ ସୃଷ୍ଟି ହୋଇଥାଏ ଓ ନିର୍ବାଚକମାନେ ବିଜ୍ଞ ନେତୃତ୍ୱ ପ୍ରତି ଆସ୍ଥାଜ୍ଞାପନ କରିଥାନ୍ତି । ବିରୋଧୀ-ଦଳର ସମାଲୋଚନା ଦ୍ୱାରା ସରକାର ଜନମତ ସହିତ ଘନିଷ୍ଠ ସମ୍ପର୍କ ରଖି ଥାଆନ୍ତି । ସରକାର ଜନମତକୁ ଅନୁ-ସରଣ କରିବା ସଙ୍ଗେ ସଙ୍ଗେ ଜନମତକୁ ନେତୃତ୍ୱ ବି ଦେଇଥାନ୍ତି ।

ଦଳଗୁଡ଼ିକ ମଧ୍ୟରେ ଯେଉଁ ସୂକ୍ଷ୍ମ ବିଭାଜନ ଥାଏ, ତାହା ବ୍ରିଟିଶ୍ ଗଣତନ୍ତ୍ରର ଏକ ବୈଶିଷ୍ଟ୍ୟ ଓ ଏତଦ୍ୱାରା ଦଳଗୁଡ଼ିକ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥାଏ । ଜନମତର ଅଳ୍ପ ପରିବର୍ତ୍ତନ ହେଲେ ଆଗାମୀ ନିର୍ବାଚନରେ ସରକାର ହାରିଯିବାର ଯଥେଷ୍ଟ ସମ୍ଭାବନା ଥାଏ । ସୁତରାଂ ସରକାର ଜନମତ ପ୍ରତି ସଚେତ ରହିବା ଉଚିତ ଏବଂ ଏହି ମତାମତ ଏକ ପକ୍ଷରେ ଦଳ ମାଧ୍ୟମରେ ଓ ଅପର ପକ୍ଷରେ ସଂସଦ ମାଧ୍ୟମରେ ପ୍ରକାଶ ପାଇଥାଏ ।

# ସପ୍ତମ ଅଧ୍ୟାୟ

## ପ୍ରଧାନମନ୍ତ୍ରୀ

## ( The Prime Minister )

**ପ୍ରଧାନମନ୍ତ୍ରୀ ପଦ ( The office of the Prime Minister ) :**

ଅଧିକାଂଶ ଉଚ୍ଚପଦବୀ ପରି ପ୍ରଧାନମନ୍ତ୍ରୀ ପଦବୀ ଏହି ପଦ-ମଣ୍ଡନକାରୀ ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ଉପରେ ନିର୍ଭର କରେ । ଅବଶ୍ୟ ଏହା ମଧ୍ୟ ଚଳଣି ଓ ପରମ୍ପରା ଉପରେ ନିର୍ଭର କରେ । "ପ୍ରଧାନମନ୍ତ୍ରୀ" ଶବ୍ଦ ଫରାସୀ ଭାଷାରୁ ଆସିଅଛି । ଅନ୍ୟାନ୍ୟ ବହୁ ନାମ ପରି ଏହି ନାମକୁ ଇଂଲଣ୍ଡ ରାଜନୀତିରେ ପ୍ରଥମରୁ ଘୃଣା ଚକ୍ଷୁରେ ଦେଖାଯାଉଥିଲା । ୧୭୨୧ରୁ ୧୭୪୨ ପର୍ଯ୍ୟନ୍ତ ସାର୍ ରବର୍ଟ ଓ୍ୱାଲପୋଲ୍ ରାଜକୋଷର ପ୍ରଥମ ଶ୍ରୀପତି-ପଦରେ ରହିଥିଲେ । ସେ "ପ୍ରଧାନମନ୍ତ୍ରୀ" ପଦ ଗ୍ରହଣ କରିବାକୁ ଅନିଚ୍ଛୁକ ଥିଲେ । ୧୭୪୧ ରେ ଏହି ପଦର ବିକାଶ ବିରୁଦ୍ଧରେ ଲର୍ଡ଼ମାନେ ଆପତ୍ତି କରିଥିଲେ । ସେ ଯାହା ହେଉନା କାହିଁକି ଏହି ପଦର ବିକାଶ ଆବଶ୍ୟକ ଥିଲା । କେବଳ ଇଂରାଜୀ ଜାଣି ନ ଥିବାରୁ ନୁହେଁ, ବରଂ ଇଂଲଣ୍ଡର ପରିସ୍ଥିତି ବିଷୟରେ ଅଜ୍ଞ ଥିବାରୁ ପ୍ରଥମ ଜର୍ଜ କ୍ୱଚିତ୍ ମନ୍ତ୍ରିମଣ୍ଡଳ ବୈଠକରେ ଯୋଗ ଦେଉଥିଲେ । ତାଙ୍କ ସ୍ଥାନରେ ଆଉ ଜଣେ ବ୍ୟକ୍ତିଙ୍କୁ କାର୍ଯ୍ୟ କରିବାକୁ ପଡ଼ୁଥିଲା । ତାଙ୍କ ଅନୁପସ୍ଥିତି ଫଳରେ ଯେଉଁ ପ୍ରତିକ୍ରିୟା ହେଲା, ତାକୁ ଅବଶ୍ୟ ଅତି ରଞ୍ଜିତ କରି କୁହାଯାଇ ନ ପାରେ । ସେତେବେଳକୁ ମନ୍ତ୍ରିମଣ୍ଡଳୀୟ ପଦ୍ଧତି ପ୍ରଚଳିତ ହୋଇ ନ ଥିଲା । କେତେକ ପ୍ରଭାବଶାଳୀ ମନ୍ତ୍ରୀଙ୍କ ସହିତ କାର୍ଯ୍ୟ କରିବାକୁ ଓ୍ୱାଲ୍‌ପୋଲ୍ ବାଧ୍ୟ ଥିବାରୁ, ସେ କ୍ୱଚିତ୍ ସମ୍ପୂର୍ଣ୍ଣ ମନ୍ତ୍ରିମଣ୍ଡଳର ବୈଠକ ଆହ୍ୱାନ କରୁଥିଲେ । ଓ୍ୱାଲ୍‌ପୋଲ୍‌ଙ୍କ କ୍ଷମତା ପଦବୀ ଅପେକ୍ଷା ତାଙ୍କ ବ୍ୟକ୍ତିତ୍ୱ ଉପରେ ଅଧିକ ନିର୍ଭର କରୁଥିଲେ । ହାନୋଭର ରାଜବଂଶକୁ ହ୍ୱିଗ୍‌ମାନେ ଗ୍ରହଣ କରୁଥିବାରୁ ରାଜା ପ୍ରଥମ ଜର୍ଜ ସେମାନଙ୍କ ଉପରେ ନିର୍ଭର କରିବା ପାଇଁ କୃଷ୍ଣିତି କରିଥିଲେ ।

ଆଧୁନିକ ଅର୍ଥରେ ଓ୍ୟାଲ୍‌ପୋଲ୍ ହ୍ୱିଗ୍‌ମାନଙ୍କ ନେତା ନ ଥିଲେ, ସେ କେବଳ ସେମାନଙ୍କ ମଧ୍ୟରେ ପ୍ରଭାବଶାଳୀ ଥିଲେ । ଏହା ସତ୍ତ୍ୱେ ତାଙ୍କ ସ୍ଥିତି ସମ୍ରାଟଙ୍କ ସଦିଚ୍ଛା ଉପରେ ନିର୍ଭର କରୁଥିଲା । ୧୭୪୨ରେ ତାଙ୍କର ପରାଜୟ ଓ ପରବର୍ତ୍ତୀ ଇସ୍ତଫାରୁ ଜଣାପଡ଼ିଥିଲା ଯେ, ସେ ସଂସଦରେ ସଂଖ୍ୟାଗରିଷ୍ଠ ସଭ୍ୟଙ୍କ ସମର୍ଥନ ଆବଶ୍ୟକ କରୁଥିଲେ ଓ ଏଥିପାଇଁ ସେ ରାଜାଙ୍କ ସମର୍ଥନ କେତେକାଂଶରେ ଗ୍ରହଣ କରିଥିଲେ । ପ୍ରାସାଦର ବ୍ୟକ୍ତିଗତ ବ୍ୟୟବରାଦ ସମ୍ବନ୍ଧରେ ସେ ରାଜାଙ୍କୁ ପରାମର୍ଶ ଦେଇଥିଲେ ଓ ଅଧିକାଂଶ ରାଜକୀୟ ଅନୁଗ୍ରହ ନିୟନ୍ତ୍ରଣ କରୁଥିଲେ । ରାଜା ଶାସନ କରୁଥିବାରୁ ରାଜାଙ୍କ ସରକାରକୁ ବିରୋଧ କରିବା ଦେଶପ୍ରୀତି ନୁହେଁ ବୋଲି ବିଚାର କରାଯାଉଥିଲା । ରାଜା ଖରାପ ପରାମର୍ଶଦାତା ବାଛିଲେ କିମ୍ବା ପରାମର୍ଶଦାତାମାନେ ତାଙ୍କୁ ମନ୍ଦ ପରାମର୍ଶ ଦେଲେ ବୋଲି ଅନେକେ ଅଭିଯୋଗ କରିପାରନ୍ତି, କିନ୍ତୁ ରାଜାଙ୍କୁ ସମର୍ଥନ କରିବା ଉଚିତ ବୋଲି ଭାବି ଅନେକ ସରକାରଙ୍କୁ ସମର୍ଥନ କରୁଥିଲେ ।

ଓ୍ୟାଲ୍‌ପୋଲ୍‌ଙ୍କ ଦୀର୍ଘଶାସନ କାଳ ମଧ୍ୟରେ ସଂସଦର କ୍ଷମତା ବୃଦ୍ଧି ପାଇଥିଲା । କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ରାଜା ତୃତୀୟ ଜର୍ଜ ଏହି ବିକାଶରେ ବାଧା ଦେଇଥିଲେ; କିନ୍ତୁ ଆମେରିକାର ଉପନିବେଶ ଗୁଡ଼ିକୁ ହରାଇଥିବା ଯୋଗୁଁ ୧୭୮୨ ରେ ଲର୍ଡ଼ନର୍ଥ ପରାଜିତ ହେବାପରେ ସଂସଦ ନିଜ କ୍ଷମତା ଫେରି ପାଇବାକୁ ଦାବୀ କରିଥିଲା । ପ୍ରଧାନତଃ ଦୁର୍ନୀତି ଓ ଅନୁଗ୍ରହ ବିରୁଦ୍ଧରେ ସଂସଦର ସଂଗ୍ରାମ ଆରମ୍ଭ ହୋଇଥିଲା । ରାଜାଙ୍କ ସମର୍ଥନ ଯୋଗୁଁ ୧୭୮୪ରେ ଉଇଲିୟମ୍ ପିଟ୍ ନିର୍ବାଚନରେ ବିଜୟ ହାସଲ କରିଥିଲେ କିନ୍ତୁ ଏହା ପରଠାରୁ ପ୍ରଧାନମନ୍ତ୍ରୀମାନେ ରାଜାଙ୍କ ଉପରେ ନିର୍ଭର ନ କରି ସଂସଦ ଉପରେ ଅଧିକ ନିର୍ଭର କରିବାକୁ ଆରମ୍ଭ କଲେ । ତଥାପି ସେ ଯେ ହେଉଥାନ୍ତୁ, ନିଁ କାହିଁକି, "ସମ୍ରାଟଙ୍କର ବନ୍ଧୁମାନଙ୍କ" ଉପରେ ପ୍ରଧାନମନ୍ତ୍ରୀଙ୍କୁ ନିର୍ଭର କରିବାକୁ ପଡ଼ୁଥିଲା । କିନ୍ତୁ ସେ ଦଳର ନେତାରୂପେ ପରିଚିତ ଥିଲେ ଓ ଏଥିପାଇଁ ଦଳର ଶକ୍ତି ଉପରେ ତାଙ୍କ ଶକ୍ତି ନିର୍ଭର କରୁଥିଲା । ୧୮୩୨ ପରେ ମତାଧିକାର ସମ୍ପ୍ରସାରିତ ହେବା ଓ କ୍ଷୁଦ୍ର ବୁରୋଗୁଡ଼ିକ ମତାଧିକାରରୁ ଉଚ୍ଛେଦ ହେବା ଫଳରେ ନିର୍ବାଚନରେ ସେମାନଙ୍କ ପ୍ରଭାବ ହ୍ରାସ ପାଇଥିଲା । ନିର୍ବାଚକମାନେ ପୃଷ୍ଠପୋଷକ ମାନଙ୍କ ମନୋନୀତ ବ୍ୟକ୍ତିମାନଙ୍କୁ ଭୋଟ ନ ଦେଇ ଦଳଗୁଡ଼ିକୁ ଭୋଟ ଦେଲେ । ୧୮୩୪ରେ ସାର ରବର୍ଟ ପୀଲ ଟାମ୍‌ବର୍ଥ ଠାରେ ନିର୍ବାଚକମାନଙ୍କ ପ୍ରତି ଯେଉଁ ନିବେଦନ କରିଥିଲେ ତାହା ପ୍ରକୃତରେ ନିଜ "ବନ୍ଧୁମାନଙ୍କୁ" ନିର୍ବାଚିତ କରିବା ପାଇଁ ଜନସାଧାରଣଙ୍କୁ ଏକ ନିବେଦନ ଥିଲା । ନିର୍ବାଚନ ପ୍ରଚାରରେ ଦଳୀୟ ଗ୍ରୁପ ସର୍ବଶ୍ରେଷ୍ଠ ଉପାୟ ରୂପେ ବିବେଚିତ ହେଲା । ଦଳୀୟ ନିର୍ବାଚକମାନଙ୍କୁ ତାଲିକାଭୁକ୍ତ କରିବା ପାଇଁ ବିଭିନ୍ନ ସଂଗଠନ ପ୍ରତିଷ୍ଠା କରାଯାଇ-ଥିଲା ଓ ସେଗୁଡ଼ିକୁ ପ୍ରଚାର ମାଧ୍ୟମରେ ଗଠିତ କରାଯାଇଥିଲା ।

ଉପରୋକ୍ତ ବିକାଶ ଫଳରେ ଦଳୀୟ ନେତାମାନଙ୍କ ସମ୍ମାନ ବୃଦ୍ଧିପାଇଥିଲା ଏବଂ ବାସ୍ତବରେ ସେ କ୍ଷମତାଶାଳୀ ପ୍ରଧାନମନ୍ତ୍ରୀ ଥିଲେ । ୧୮୬୫ରେ ପାମରଷ୍ଟନ୍‌ଙ୍କ ମୃତ୍ୟୁ

ପରେ ଆରମ୍ଭ ହୋଇଥିବା ଓ ୧୮୮୧ରେ ଡିସରେଲିଙ୍କ ମୃତ୍ୟୁ ପରେ ଶେଷ ହୋଇଥିବା ଗ୍ଲାଡ଼ଷ୍ଟୋନ୍ ଓ ଡିସ୍ରେଲିଙ୍କ ମଧ୍ୟରେ ବିବାଦ ଫଳରେ ପ୍ରଧାନମନ୍ତ୍ରୀଙ୍କ ପଦର ମର୍ଯ୍ୟାଦା ବୃଦ୍ଧି ପାଇଥିଲା । ଦଳୀୟ ବିବାଦ ଅଧିକାଂଶ ସ୍ଥଳରେ ବ୍ୟକ୍ତିଗତ ବିବାଦ ଥିଲା । କେବଳ ଜାତି ବା ଉଦାରବାଦୀମାନେ ବ୍ରିଟେନକୁ ଶାସନ କରିବେ କି ନାହିଁ ତାହା ପ୍ରଶ୍ନ ନ ଥିଲା, ବରଂ ଡିସରେଲି କିମ୍ବା ଗ୍ଲାଡ଼ଷ୍ଟୋନ୍ଙ୍କ ମଧ୍ୟରୁ କିଏ ପ୍ରଧାନମନ୍ତ୍ରୀ ହେବେ ତାହା ହିଁ ପ୍ରଶ୍ନ ଥିଲା । ନେତାଙ୍କ ବ୍ୟକ୍ତିତ୍ୱ ଅନୁସାରେ ତାଙ୍କ ବ୍ୟକ୍ତିଗତ ନିବେଦନର ପ୍ରଭାବ ପଡ଼ୁ ଥିଲା । ଶ୍ରମିକଦଳ, ଦଳ ଉପରେ ଅଧିକ ପ୍ରାଧାନ୍ୟ ଦେବାଫଳରେ ନେତାଙ୍କ ଗୁରୁତ୍ୱ କମିଗଲା । ଜାତିମାନେ ଅନେକାଂଶରେ ନେତାଙ୍କ ଉପରେ ନିର୍ଭର କରିଥାନ୍ତି । ଅବଶ୍ୟ ମ୍ୟାକ୍‌ମିଲାନ୍ଙ୍କ ଅପେକ୍ଷା ହୋମଙ୍କ ଉପରେ ଜାତିମାନେ କମ୍ ନିର୍ଭର କରୁଥିଲେ । ଆଉ ମଧ୍ୟ ୧୯୨୨ର ଲୟଡ଼ ଜର୍ଜଙ୍କ ପରି ନେତା ଦଳ ପାଇଁ ଏକ ବୋଝ ସ୍ୱରୂପ ହୋଇଥିଲେ ।

ପ୍ରଧାନମନ୍ତ୍ରୀ ମନୋନୟନ କରିବା ରାଣୀଙ୍କର ସର୍ବଶ୍ରେଷ୍ଠ ଓ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟବୋଲି ପୂର୍ବରୁ ସୂଚନା ଦିଆଯାଇଅଛି । ବାସ୍ତବରେ ତାଙ୍କୁ ସାଧାରଣତଃ କିଛି କରିବାକୁ ପଡ଼େ ନ ଥାଏ । ଗୋଟିଏ ଦଳ ନିର୍ବାଚନରେ ବିଜୟ ଲାଭ କଲେ ସେହି ଦଳର ନେତା ନିଶ୍ଚିତ ଭାବରେ ପ୍ରଧାନମନ୍ତ୍ରୀ ହେଉଥିଲେ । ପ୍ରଧାନମନ୍ତ୍ରୀଙ୍କ ମୃତ୍ୟୁ କିମ୍ବା ଅବସର ଗ୍ରହଣ ପରେ ଦଳର ସଂଖ୍ୟାଗରିଷ୍ଠତା ଥିଲେ ରାଣୀଙ୍କୁ ବିଶେଷ କିଛି କରିବାକୁ ପଡ଼େ ନ ଥାଏ । ଏପରିକି ଆନୁଷ୍ଠାନିକ ଭାବରେ ଦଳରେ ଦ୍ୱିତୀୟ ନେତା ନ ଥିଲେ ମଧ୍ୟ, ମନ୍ତ୍ରୀମାନଙ୍କ ମଧ୍ୟରୁ ଯାହାର ଖ୍ୟାତି ଅଧିକ ଥାଏ ତାଙ୍କୁ ସାଧାରଣତଃ ପ୍ରଧାନମନ୍ତ୍ରୀ ପଦ ପାଇଁ ଯୋଗ୍ୟ ବୋଲି ଧରି ନିଆଯାଉଥାଏ । ସେପରି ବ୍ୟକ୍ତି ଠିକ୍ ସମୟରେ ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କରିଥାଆନ୍ତି । ୧୯୩୭ରେ ନେଭିଲ ଚେମ୍ବରଲେନ୍ଙ୍କ ସମୟରେ ଏହିପରି ଘଟିଥିଲା । ୧୯୨୩ରେ ( ବୋନର୍ ଲଙ୍କ ଇସ୍ତଫା ପରେ ) କିମ୍ବା ୧୯୪୦ରେ ( ନେଭିଲ ଚେମ୍ବରଲେନଙ୍କ ଇସ୍ତଫା ପରେ ) ପ୍ରଧାନମନ୍ତ୍ରୀ ବାଛିବାରେ ରାଜନୈତିକ ଅସୁବିଧା ଦେଖାଦେଇଥିଲା ଓ ସେତେବେଳେ ରାଜାଙ୍କୁ ପ୍ରଭାବଶାଳୀ ଭୂମିକା ଗ୍ରହଣ କରିବାକୁ ପଡ଼ିଥିଲା । ପ୍ରଧାନମନ୍ତ୍ରୀ ରାଣୀଙ୍କର ପ୍ରଥମ ମନ୍ତ୍ରୀ ଓ ସରକାରର ମୁଖ୍ୟ ହେବା ସଙ୍ଗେ ସଙ୍ଗେ ଦଳର ନେତା ମଧ୍ୟ ଅଟନ୍ତି । ଦଳକୁ ପରିଚାଳିତ କଲାପରି ଜଣେ ନେତା ଯୋଗାଇବା ମଧ୍ୟ ରାଣୀଙ୍କର କର୍ତ୍ତବ୍ୟ । ପ୍ରଧାନମନ୍ତ୍ରୀଙ୍କ କାର୍ଯ୍ୟାବଳୀ ପର୍ଯ୍ୟାଲୋଚନା କଲେ ଏହା ସ୍ୱତଃ ଜଣାଯାଇଥାଏ ।

### କାର୍ଯ୍ୟାବଳୀ ( **Function** ) :

ପ୍ରଥମତଃ, ପ୍ରଧାନମନ୍ତ୍ରୀ ରାଣୀଙ୍କର ବ୍ୟକ୍ତିଗତ ପରାମର୍ଶଦାତା ଅଟନ୍ତି । ଏବେ ରାଣୀ ପ୍ରତ୍ୟକ୍ଷ ରାଜନୀତିରେ ଅଂଶ ଗ୍ରହଣ କରୁନାହାଁନ୍ତି, ତଥାପି ତାଙ୍କ ସହିତ ପରାମର୍ଶ କରାଯାଇଥାଏ ଏବଂ ସେ ଉପଦେଶ ଦେଇଥାଆନ୍ତି କିମ୍ବା ସତର୍କ ରହିବା ପାଇଁ କହି-

ଥାଆନ୍ତି । ସୁତରାଂ ପ୍ରଧାନମନ୍ତ୍ରୀଙ୍କ ସହିତ ତାଙ୍କର ଘନିଷ୍ଠ ସମ୍ପର୍କ ଥାଏ । ସାଧାରଣ ଘଟଣାଗୁଡ଼ିକ ସହିତ ତାଙ୍କର ସମ୍ପର୍କ ଥାଏ । କେଉଁଠାରେ ତ୍ରୁଟି ପରିଲକ୍ଷିତ ହେଲେ ସେ ସରକାରଙ୍କୁ ଏହାର କାରଣ ପଚାରି ପାରନ୍ତି । ଏପରି ସମୟ ଆସେ ଯେତେବେଳେ ତାଙ୍କ ବ୍ୟକ୍ତିଗତ ସମ୍ମାନ ମଧ୍ୟରେ ସରକାରଙ୍କୁ କେତେକ ସାହାଯ୍ୟ ଦେଇ-ଥାଆନ୍ତି । ଫ୍ରାନ୍‌ସ ସହିତ ସନ୍ଧି କରିବାର ଆବଶ୍ୟକତା ଅନୁଭୂତ ହେବାପରେ ରାଜା ସପ୍ତମ ଏଡ଼ଓ୍ୱାର୍ଡ ପ୍ୟାରିସ୍ ଯାଇ ନିଜ ବ୍ୟକ୍ତିଗତ ଲୋକପ୍ରିୟତା ବଳରେ ସୁସ୍ଥ ଜନମତ ସୃଷ୍ଟି କରିବାରେ ସାହାଯ୍ୟ କରିଥିଲେ । ୧୯୨୧ରେ ଆୟରଲ୍ୟାଣ୍ଡ ସମସ୍ୟାର ସମାଧାନ ପାଇଁ ରାଜା ପଞ୍ଚମ ଜର୍ଜଙ୍କୁ ଅନୁରୋଧ କରାଯାଇଥିଲା । ଲୋକମାନଙ୍କ ମନୋବଳକୁ ଟାଣ ରଖିବା ପାଇଁ ୧୯୪୦ ଓ ୧୯୪୧ରେ ରାଜା ଷଷ୍ଠ ଜର୍ଜ ବୋମା ବିଧ୍ୱସ୍ତ ଅଞ୍ଚଳଗୁଡ଼ିକ ପରିଦର୍ଶନ କରିଥିଲେ । ରାଜ୍ୟଗୋଷ୍ଠୀ ଦେଶମାନଙ୍କୁ ସମ୍ରାଟମାନେ ଗିବା ଫଳରେ ସେହି ଦେଶଗୁଡ଼ିକ ସହିତ ଘନିଷ୍ଠ ସମ୍ପର୍କ ସ୍ଥାପିତ ହୋଇଥାଏ ( ରାଣୀ ପୂର୍ବ ଆଫ୍ରିକାରେ ଥିବା ସମୟରେ ତାଙ୍କ ପିତାଙ୍କର ମୃତ୍ୟୁ ଖବର ପାଇଥିଲେ ) । ଉପରୋକ୍ତ ଉଦାହରଣଗୁଡ଼ିକୁ ଉଲ୍ଲେଖଯୋଗ୍ୟ ଦୃଷ୍ଟାନ୍ତ ରୂପେ ଧରାଯାଇପାରେ । ରାଣୀଙ୍କୁ ସର୍ବଦା ଶାସନର ଅଙ୍ଗରୂପେ ବିବେଚନା କରାଯାଇଥାଏ ଓ ଇଂରେଜମାନଙ୍କ ମଧ୍ୟରେ ଏକତା ରକ୍ଷା କରିବାରେ ରାଣୀଙ୍କ ଅବଦାନ ଯଥେଷ୍ଟ ବୋଲି କୁହାଯାଇଥାଏ । ୧୮୬୧ ରେ ଯୁବରାଜ କନସର୍ଟଙ୍କ ମୃତ୍ୟୁ ହେବା ପରେ ରାଣୀ ଭିକ୍ଟୋରିଆ ସାଧାରଣ କାର୍ଯ୍ୟଗୁଡ଼ିକୁ ବାତିଲ କରିଦେବା ଫଳରେ ଯେଉଁ ଅସୁବିଧା ସୃଷ୍ଟି ହୋଇଥିଲା ତାହା ଡିସ୍‌ରେଲି ବୁଝି ପାରିଥିଲେ ଓ ଏହି ଅଭ୍ୟାସକୁ ବଦଳାଇବା ପାଇଁ ଚେଷ୍ଟା କରିଥିଲେ । ରାଣୀଙ୍କ ସାମାଜିକ କାର୍ଯ୍ୟଗୁଡ଼ିକ, ଯଥା :—ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ସଂସଦ ଉନ୍ମୋଚନ, ରାଣୀଙ୍କ ଜନ୍ମଦିବସ ପାଳନ, ସମୁଦ୍ରରେ ଜାହାଜ ଭସାଣ, ଶିଳ୍ପ ସହର ପରିଦର୍ଶନ, ସୈନ୍ୟବାହିନୀ ପର୍ଯ୍ୟବେକ୍ଷଣ, ଉପଯୁକ୍ତ ବ୍ୟକ୍ତିଙ୍କୁ ଅନୁଗ୍ରହ ପ୍ରଦାନ, ସିଂହାସନ ଆରୋହଣ ଉତ୍ସବ ଓ ଜୁବୁଲି ପାଳନ ପ୍ରଭୃତିକୁ ସରକାରୀ ଦାୟିତ୍ୱ ରୂପେ ଗ୍ରହଣ କରାଯାଇ-ଥାଏ ଓ ଏଥିପାଇଁ ରାଣୀ ପରାମର୍ଶ ଆବଶ୍ୟକ କରିଥାନ୍ତି । ଅଷ୍ଟମ ଏଡ଼୍‌ଓ୍ୱାର୍ଡ଼ଙ୍କ ଉଦାହରଣରୁ ଦେଖିଲେ ଜଣାଯାଏ ଯେ, ରାଜାଙ୍କ ବ୍ୟକ୍ତିଗତ ଜୀବନ ଉପରେ ମଧ୍ୟ ଜନସାଧାରଣ ଗୁରୁତ୍ୱ ଆରୋପ କରିଥାନ୍ତି । ଏହିଭଳି ପରିସ୍ଥିତିରେ ରାଜା ଅଷ୍ଟମ ଏଡ଼ଓ୍ୱାର୍ଡ଼ଙ୍କର ବର୍ତ୍ତମାନ ଡିଭୋର୍ସର ଉଦ୍ଦେଶ୍ୟ ଥିବା ଶ୍ରୀମତୀ ସିମ୍‌ସନଙ୍କ ସହିତ ପ୍ରସ୍ତାବିତ ବିବାହ ସମ୍ବନ୍ଧରେ ପ୍ରଧାନ-ମନ୍ତ୍ରୀଙ୍କ ପରାମର୍ଶ ଚୂଡ଼ାନ୍ତ ଥିଲା ।

ଗଣରାଜ୍ୟମାନଙ୍କରେ ଏପରି ସମସ୍ୟା ଆସେ ଯେତେବେଳେ ରାଜନୀତିଜ୍ଞମାନେ ଦେଶ ସପକ୍ଷରେ କହିଥାଆନ୍ତି କିନ୍ତୁ ଏହି ସମସ୍ୟା ସାଧାରଣତଃ ରାଜତନ୍ତ୍ରରେ ଦେଖା ଦେଇ ନ ଥାଏ । କୌଣସି ଜାତୀୟ ଅଭିଳାଷ ପ୍ରକାଶ କରିବାକୁ ହେଲେ, ରାଣୀହିଁ ତାହାକୁ ପ୍ରକାଶ କରନ୍ତି । ରାଣୀ ଏହା ପ୍ରକାଶ କଲେ, ସେଥିରେ କୌଣସି ରାଜନୈତିକ ଅଭିସନ୍ଧି ଆରୋପ କରାଯାଏ ନାହିଁ । ଜଣେ ରାଜନୀତିଜ୍ଞ ତାହା ପ୍ରକାଶ କଲେ, ସେଥିରୁ ରାଜନୈତିକ ବାଦାନୁବାଦ ସୃଷ୍ଟି

ହେବାର ସମ୍ଭାବନା ଥାଏ । ଅବଶ୍ୟ ଏପରି ସମୟ ଆସେ, ଯେତେବେଳେ କି ପ୍ରଧାନମନ୍ତ୍ରୀଙ୍କୁ ଏହି କାର୍ଯ୍ୟ କରିବାକୁ ପଡ଼ିଥାଏ । ଏଠାରେ ଗୋଟିଏ ଉଦାହରଣ ଦେଲେ ଯଥେଷ୍ଟ ହେବ । ୧୯୫୧ରେ ଗ୍ଲାସଗୋ ବିଶ୍ୱବିଦ୍ୟାଳୟ ତାହାର ପଞ୍ଚଶତ ଜନ୍ମବାର୍ଷିକୀ ପାଳନ କରିଥିଲା । ଏହି ଉପଲକ୍ଷେ, ରାଜ୍ୟଗୋଷ୍ଠୀ ଓ ଅନ୍ୟାନ୍ୟ ବିଦେଶୀ ରାଷ୍ଟ୍ରର ବିଶ୍ୱବିଦ୍ୟାଳୟମାନଙ୍କରୁ ଆସିଥିବା ପ୍ରତିନିଧିମାନଙ୍କୁ ଏକ ନୈଶ ଭୋଜି ଦିଆଯାଇଥିଲା । ଏହି ନୈଶ ଭୋଜିରେ ପ୍ରଧାନମନ୍ତ୍ରୀ ଆଟ୍‌ଲି ମୁଖ୍ୟବକ୍ତା ଥିଲେ । ତାଙ୍କ ଭାଷଣରେ ଦଳୀୟ ଚିନ୍ତାଧାରା ପ୍ରକାଶ ନ କରିବାକୁ ସେ ଯଥାସାଧ୍ୟ ସହିତ ଚେଷ୍ଟା କରିଥିଲେ । ଯେତେବେଳେ ସେ ଲଣ୍ଡନ ଯିବାପାଇଁ ବିଦାୟ ନେଲେ, ସେତେବେଳେ ଦର୍ଶକବୃନ୍ଦ ସ୍ୱତଃ ଦଣ୍ଡାୟମାନ ହୋଇ ତାଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିଥିଲେ । ଅବଶ୍ୟ ସେହି ଦର୍ଶକମାନଙ୍କ ମଧ୍ୟରୁ ପାଞ୍ଚଭାଗରୁ ଚାରିଭାଗ ଯୁକ୍ତ ରାଜ୍ୟର ନିର୍ବାଚକ ଥିଲେ ଏବଂ ସେମାନଙ୍କୁ ମତଦାନ ପାଇଁ କୁହାଯାଇଥିଲେ ସେମାନେ ଆଟ୍‌ଲିଙ୍କ ବିରୁଦ୍ଧରେ ମତଦାନ କରିଥାନ୍ତେ । ଆଟ୍‌ଲି ଶ୍ରମିକ ଦଳର ପ୍ରଧାନମନ୍ତ୍ରୀ ନ ଥିଲେ, ସେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ଥିଲେ ଓ ବ୍ରିଟେନ୍‌ର ଲୋକମାନଙ୍କ ତରଫରୁ ପ୍ରତିନିଧିତ୍ୱ କରୁଥିଲେ । କମନ୍‌ସସଭାରେ ସେ ଯେତେବେଳେ ଅଭିନନ୍ଦନ କିମ୍ବା ଶୋକ ପ୍ରସ୍ତାବ ଆଗତ କରୁଥିଲେ, ସେତେବେଳେ ସମଗ୍ର ବ୍ରିଟେନ୍‌ର ପ୍ରତିନିଧିତ୍ୱ କରୁଥିଲେ।

ପ୍ରଧାନମନ୍ତ୍ରୀ ବସ୍ତୁତଃ ଗୋଟିଏ ଦଳର ନେତା ଅଟନ୍ତି । ଆନୁଷ୍ଠାନିକ ଭାବରେ ଦଳରେ ତାଙ୍କର ପ୍ରଭାବ ଉପରେ ତାଙ୍କର ସ୍ଥିତି ନିର୍ଭର କରେ । ଜାତିଦଳରେ ସଂସଦୀୟ ଦଳ ( ଏଥିରେ ସମସ୍ତ ଜାତି ସଦସ୍ୟ ଓ ଲର୍ଡ଼ମାନଙ୍କୁ ଅନ୍ତର୍ଭୁକ୍ତ କରାଯାଇଥାଏ ), ଗ୍ରହଣ କରାଯାଇଥିବା ସଦସ୍ୟବୃନ୍ଦ ଓ ଜାତି ସଂଗଠନର ଜାତୀୟ ଇଉନିୟନ, ଦଳର ପ୍ରଧାନମନ୍ତ୍ରୀଙ୍କୁ ମନୋନୟନ କରିଥାଆନ୍ତି ଓ ପ୍ରଧାନମନ୍ତ୍ରୀଙ୍କୁ ସେମାନେ ମଧ୍ୟ ବହିଷ୍କାର କରିପାରନ୍ତି; କିନ୍ତୁ ଏହି ମନୋନୟନ ସର୍ବଦା ସର୍ବସମ୍ମତିକ୍ରମେ କରାଯାଇଥାଏ । କେବଳ ଚରମ ପରିସ୍ଥିତିରେ ତାଙ୍କୁ ବହିଷ୍କାର ପାଇଁ ପ୍ରସ୍ତାବ ଆଗତ କରାଯାଇଥାଏ ଓ ଏହାଦ୍ୱାରା ଦଳରେ ଗୁରୁତର ମତଭେଦ ଥାଏ ବୋଲି ପ୍ରକାଶ ପାଇଥାଏ । ଜାତି ଦଳର କେନ୍ଦ୍ରୀୟ କାର୍ଯ୍ୟାଳୟ ଦଳର କେନ୍ଦ୍ରସ୍ଥଳ ଅଟେ ଓ ଏହାକୁ ବାସ୍ତବରେ ପ୍ରଧାନମନ୍ତ୍ରୀ ନିୟନ୍ତ୍ରଣ କରିଥାଆନ୍ତି । ଆନୁଷ୍ଠାନିକ ଭାବରେ ଜଣେ ଶ୍ରମିକ ଦଳର ପ୍ରଧାନମନ୍ତ୍ରୀଙ୍କର ଏହିପରି ଦୃଢ଼ ସ୍ଥିତି ନ ଥାଏ । ସେ କେବଳ ସଂସଦୀୟ ଶ୍ରମିକଦଳର ନେତା ଓ ନିଜ ପଦବୀ ବଳରେ ଶ୍ରମିକ ଦଳର ଜାତୀୟ କାର୍ଯ୍ୟକାରୀ ସମିତିର ଜଣେ ସଦସ୍ୟ ଅଟନ୍ତି । ନିଜଦଳକୁ ନିଜ ପଛରେ ରଖିବା ପ୍ରଧାନମନ୍ତ୍ରୀଙ୍କର ଏକ ବିଶେଷ କାର୍ଯ୍ୟ ହୋଇଥିବାରୁ ଉପରୋକ୍ତ ପାର୍ଥକ୍ୟ ବାସ୍ତବ କ୍ଷେତ୍ରରେ ପରିଲକ୍ଷିତ ହୋଇ ନ ଥାଏ । ଏପରିକି ବାଲଡ଼ୁଇନ୍‌ଙ୍କ ପରି ଜଣେ ଜାତି ପ୍ରଧାନମନ୍ତ୍ରୀଙ୍କୁ ତାଙ୍କ ସହ ଭିନ୍ନ ମତ ପୋଷଣ କରୁଥିବା ଲୋକମାନଙ୍କ ସହିତ ସଂଗ୍ରାମ କରିବାକୁ ପଡ଼ିଥିଲା । କିନ୍ତୁ ଶ୍ରମିକ ଦଳର ପ୍ରଧାନମନ୍ତ୍ରୀଙ୍କୁ ସର୍ବଦା ଏକ ବାମପନ୍ଥୀ ଗୋଷ୍ଠୀ ସାହାଯ୍ୟ କରିଥାଆନ୍ତି ଓ ତାଙ୍କର ପ୍ରତ୍ୟେକ କାର୍ଯ୍ୟକୁ ଆଗେଇ ନେବା ପାଇଁ ଚାହିଁ ଥାଆନ୍ତି । ଅବଶ୍ୟ ଏହି ଆଗଭର

ହେବାର ଉଦ୍ଦେଶ୍ୟ କଣ, ତାହା ସର୍ବଦା ଜଣାପଡ଼ି ନ ଥାଏ । ଦଳକୁ ଆଗାମୀ ନିର୍ବାଚନରେ ବିଜୟହାସଲ କରିବାକୁ ପଡ଼ିଥାଏ । ଏହି ବିଷୟରେ ବିଭିନ୍ନ ଲୋକ ଭିନ୍ନ ଭିନ୍ନ ମତ ବ୍ୟକ୍ତ କରିଛନ୍ତି । ଏ କଥା ନିଶ୍ଚିତ ଯେ, ଦଳ ମଧ୍ୟରେ ବିଭେଦ ଦେଖାଗଲେ ନିର୍ବାଚନରେ ଦଳ ହାରିଯାଇ ପାରେ । ଡିସରେଲୀଙ୍କ ମତରେ ପିଲ୍‌ଙ୍କର ସବୁଠାରୁ ବଡ଼ ଦୋଷ ଥିଲା ଯେ, ସେ ୧୮୪୬ରେ ଦଳକୁ ଭାଙ୍ଗି ଦେଇଥିଲେ ଓ ବିରୋଧୀଦଳ ଅଧିକ କାଳ ଶାସନରେ ରହିବା କଥାକୁ ନାପସନ୍ଦ କରିଥିଲେ । ୧୮୮୫ରେ ଗ୍ଲାଡ୍‌ଷ୍ଟୋନ୍ ଉଦାରବାଦୀ ଦଳ ମଧ୍ୟରେ ବିଭେଦ ସୃଷ୍ଟି କରିଥିଲେ ଏବଂ ( ସେ ଆଉ ଥରେ ୧୮୯୨ ରେ ପ୍ରଧାନମନ୍ତ୍ରୀ ହୋଇଥିଲେ ) ୧୯୦୬ ପର୍ଯ୍ୟନ୍ତ ଉଦାରବାଦୀମାନଙ୍କ ପୂର୍ବରୁ କ୍ଷମତା ଆଉ ଫେରି ନ ଥିଲା । ୧୯୧୬ରେ ଲଏଡ଼ ଜର୍ଜ ଉଦାରବାଦୀ ଦଳକୁ ଭାଙ୍ଗି ଦେଇଥିଲେ, ଏହା ଫଳରେ ଏହି ଦଳ ଆଉ କ୍ଷମତାକୁ ଆସି ପାରି ନ ଥିଲା । ୧୯୩୧ରେ ରାମସେ ମାକ୍‌ଡୋନାଲ୍‌ଡ ଶ୍ରମିକଦଳକୁ ପନ୍ଦର ବର୍ଷ ପର୍ଯ୍ୟନ୍ତ ବିରୋଧୀ ପକ୍ଷରେ ରଖାଇ ଦେଇଥିଲେ । ଉଭୟ ସଂସଦରେ ଓ ଦେଶରେ ଦଳୀୟ ସଂଖ୍ୟାଗରିଷ୍ଠତା ହାସଲ କରିବା ପ୍ରଧାନମନ୍ତ୍ରୀଙ୍କର ଗୋଟିଏ ମୌଳିକ କର୍ତ୍ତବ୍ୟ ଓ ଏହି ଦିଗରେ ପ୍ରଧାନମନ୍ତ୍ରୀ ବହୁ ସମୟ ଓ ଶକ୍ତି ବ୍ୟୟ କରିଥାଆନ୍ତି ।

ବାହାର ସମସ୍ୟା ଅପେକ୍ଷା ସଂସଦର ସମସ୍ୟା ଭିନ୍ନ ଅଟେ । ସଂସଦରେ ଦଳର କେତେଜଣ ସଭ୍ୟ ଥାଆନ୍ତି ଓ ସେମାନଙ୍କ ମଧ୍ୟରୁ ଏକ ଶହ ପର୍ଯ୍ୟନ୍ତ ମନ୍ତ୍ରୀପରିଷଦର ସଭ୍ୟ ଥାଆନ୍ତି । ରାଜନୀତିଙ୍କ ହିସାବରେ ସେମାନେ ନିଜ ବିଷୟରେ ବହୁ ଉଚ୍ଚକଥା ଭାବିଥାଆନ୍ତି । ଲର୍ଡ଼ ହୋଇଥିଲେ ସେମାନେ ନିଜ ବିଷୟରେ ଅଧିକ ଭାବିବାର କିଛି କାରଣ ଅଛି । ନିଜ ନିର୍ବାଚନମଣ୍ଡଳୀରେ ସିଂହପରି ଗର୍ଜନ କରିଥିବାଜଣେ ନୂତନ ସଦସ୍ୟ ସଂସଦରେ ନିଜକୁ ଏକୁଟିଆ ମନେ କରନ୍ତି । ସେ ନିଜେ କୌଣସି ଖରାପ କାର୍ଯ୍ୟ ନ କଲେ କେହି ତାଙ୍କ ବିଷୟରେ ଭାବି ନ ଥାନ୍ତି । ତାଙ୍କୁ କ୍ୱଚିତ୍ କହିବାକୁ ସୁଯୋଗ ମିଳେ ଓ ଅଧିକାଂଶ ସମୟରେ ତାଙ୍କୁ ନିଜ ଦଳ ସପକ୍ଷରେ ମତଦାନ କରିବାକୁ ପଡ଼ିଥାଏ । ସଚେତକମାନେ ତାଙ୍କ ପିଛା ଲାଗିଥାନ୍ତି । ପ୍ରଧାନମନ୍ତ୍ରୀ ସରକାରୀ ସଚେତକମାନଙ୍କୁ ନିୟନ୍ତ୍ରିତ କରିଥାଆନ୍ତି । ସମସ୍ତଙ୍କ ସହିତ ଅଛା ପରିହାସ କରୁଥିବା ଚର୍ଚ୍ଚିଲଙ୍କ ପରି ପ୍ରଧାନମନ୍ତ୍ରୀ ଓ ଜାଣିଶୁଣି ଦୂର ରହୁଥିବା ନେଭିଲ୍ ଚେମ୍ବରଲେନ୍‌ଙ୍କ ପରି ପ୍ରଧାନମନ୍ତ୍ରୀ ଅପେକ୍ଷାକୃତ ଅଧିକ ସୁବିଧାରେ ଥାଆନ୍ତି । ସଂସଦ ବାହାରେ ପ୍ରଧାନମନ୍ତ୍ରୀ ଜଣେ ବ୍ୟକ୍ତି ହେବା ପରିବର୍ତ୍ତେ ନିଜ ବ୍ୟକ୍ତିତ୍ୱ ଉପରେ ଅଧିକ ନିର୍ଭର କରିଥାଆନ୍ତି । ରାଜ ପରିବାରର ସଭ୍ୟମାନେ ଉପସ୍ଥିତ ନ ଥିଲେ ପ୍ରଧାନମନ୍ତ୍ରୀଙ୍କ ଗୁରୁତ୍ୱ ଯଥେଷ୍ଟ ଥାଏ । ସେ ଅନେକାଂଶରେ ଜଣେ ଚଳଚ୍ଚିତ୍ର ଅଭିନେତା ପରି କାର୍ଯ୍ୟ କରିଥାଆନ୍ତି । ଅବଶ୍ୟ ସେ କୌଣସି ଲାଭଜନକ କମ୍ପାନୀରେ ନିଯୁକ୍ତ ହୋଇ ନ ଥାନ୍ତି କିମ୍ବା ତାଙ୍କ ବିଷୟରେ ପ୍ରଚାର କରିବା ପାଇଁ ସେ କୌଣସି ପ୍ରଚାରକ ନିଯୁକ୍ତ କରି ନ ଥାନ୍ତି । ଏହା ନ ହୋଇଥିଲେ ବି ତାଙ୍କୁ ନିଶ୍ଚିତ ଭାବରେ ନିଜ ଖ୍ୟାତି ବଢ଼ାଇବାକୁ ପଡ଼ିଥାଏ । ଏଥିପାଇଁ ତାଙ୍କ କେଶବିନ୍ୟାସ, ତାଙ୍କ ସିଗାରେଟ ନଳୀ, ତାଙ୍କ ସିଗାରେଟ୍ , ଏପରିକି ତାଙ୍କ

ଛଡ଼ା କିମ୍ବା ତାଙ୍କର ଚନ୍ଦ୍ରାମୁଣ୍ଡ ତାଙ୍କୁ ସାହାଯ୍ୟ କରିଥାଏ । ଅପର ପକ୍ଷରେ କେବଳ କଳାକୌଶଳ ଓ ଅଙ୍ଗଭଙ୍ଗୀ ଦ୍ୱାରା ଦଳ ପରିଚାଳିତ ହୁଏ ନାହିଁ । ଜନମତର ପରିବର୍ତ୍ତନ ପ୍ରତି ଉପଯୁକ୍ତ ଧ୍ୟାନ, ସାଧାରଣ ଲୋକର ଚିନ୍ତାଧାରାକୁ ବୁଝିବାର ଯୋଗ୍ୟତା, ଉଚ୍ଚାଭିଳାଷୀ ରାଜନୀତିଜ୍ଞମାନଙ୍କ ଦ୍ୱାରା କରାଯାଇଥିବା ମନ୍ତ୍ରଣାଗୁଡ଼ିକୁ ସମାଧାନ କରିବାର ଶକ୍ତି, ସଂକ୍ଷେପରେ କହିଲେ ଦୃଢ଼ ବିଚାର କରିବାର ସାମର୍ଥ୍ୟ ଦଳର ପରିଚାଳନା ପାଇଁ ଆବଶ୍ୟକ ହୋଇଥାଏ । ଆଧୁନିକ ଯୁଗର ପ୍ରଧାନମନ୍ତ୍ରୀମାନଙ୍କ ମଧ୍ୟରୁ ବୋଧହୁଏ ବାଲ୍‌ଡ଼ୁଇନ୍ ସବୁଠାରୁ ଅଧିକ ସଫଳତା ହାସଲ କରିପାରିଥିଲେ । ଦଳ ପରିଚାଳନାରେ ସେ ଖୁବ୍ ଦୃଢ଼ଥିଲେ; କିନ୍ତୁ ସର୍ବସାଧାରଣରେ ସେ ଜଣେ ଅମାୟିକ ବ୍ୟକ୍ତି ପରି ଜଣାପଡ଼ୁଥିଲେ । ତାଙ୍କଠାରେ ଉଭୟ ସର୍ପର ଜ୍ଞାନ ଓ କପୋତ ପକ୍ଷୀର ସରଳତା ଏକାଧାରରେ ରହିଥିଲା ।

ପୁନଶ୍ଚ, ପ୍ରଧାନମନ୍ତ୍ରୀ ମନ୍ତ୍ରିମଣ୍ଡଳର ଅଧ୍ୟକ୍ଷ ଅଟନ୍ତି । ସେ ଗୋଟିଏ ଗୋଷ୍ଠୀ ଗଠନ କରିଥାଆନ୍ତି ଓ ଏହି ଗୋଷ୍ଠୀକୁ ଗୋଟିଏ ଦଳ ହିସାବରେ ରଖିଥାଆନ୍ତି । ଗୋଟିଏ ଗୋଷ୍ଠୀର ରାଜନୀତିଜ୍ଞମାନଙ୍କୁ ପରିଚାଳନା କରାଇବା ବୋଧହୁଏ ସବୁଠାରୁ କଷ୍ଟକର ବ୍ୟାପାର । ଏହାର କାରଣ ହେଉଛି ଯେ, ଗୋଷ୍ଠୀର ସଫଳତା ଉପରେ ତାଙ୍କ ରାଜନୈତିକ ଭବିଷ୍ୟତ ନିର୍ଭର କରୁଛି ବୋଲି ପ୍ରତ୍ୟେକ ସଦସ୍ୟ ଜାଣିଥାନ୍ତି ଓ ଖୁବ୍ କମ୍ ଲୋକ ଅଧ୍ୟକ୍ଷ ବା କ୍ୟାପ୍‌ଟେନ୍ ହେବା ପାଇଁ ଆଗେଇ ଆସିଥାନ୍ତି । ବ୍ୟକ୍ତିଗତ ଅଭିଳାଷ ଓ ଜନସାଧାରଣଙ୍କ ମଙ୍ଗଳ ପାଇଁ ଚିନ୍ତା କରିବା ମଧ୍ୟରେ ପାର୍ଥକ୍ୟ ଦେଖିବା କଦାପି ସହଜ ହୋଇ ନ ଥାଏ । କେତେକ ବ୍ୟକ୍ତି ଜୋସେଫ୍ ଚେମ୍ବରଲେନଙ୍କୁ ଜଣେ ବିଶିଷ୍ଟ ରାଜନୈତିକ ଦୂରଦ୍ରଷ୍ଟା ରୂପେ ଚିହ୍ନଣ କରିଥାନ୍ତି; କିନ୍ତୁ ଆଉ କେତେକ ତାଙ୍କୁ ଦୁଇଥର ଭୁଲ୍ କରିଥିବା ଜଣେ ଉଚ୍ଚାଭିଳାଷୀ ରାଜନୀତିଜ୍ଞ ରୂପେ ଦେଖିଥାଆନ୍ତି । ସେ ଯାହା ହେଉନା କାହିଁକି ଏପରିକି ଜଣେ ଗ୍ଲାଡ଼ଷ୍ଟୋନ୍ କିମ୍ବା ଜଣେ ବାଲଫୋର୍‌ଙ୍କ ପାଇଁ ସେ ଜଣେ ଅସନ୍ତୁଷ୍ଟ ସହକର୍ମୀ ଥିଲେ । ତାଙ୍କ ସମସାମୟିକ ଥିବା ସାର୍ ଉଇଲିୟମ୍ ହାରକୋର୍ଟ ମଧ୍ୟ ସେହିପରି ଅସୁବିଧାରେ ପଡ଼ିଥିଲେ । ଅତ୍ୟାଧୁନିକ ସମୟରେ ଲୟଡ଼ ଜର୍ଜ, ଚର୍ଚ୍ଚିଲ (ବାଲଡ଼୍ଇନ୍‌ଙ୍କ ସରକାରରେ), କ୍ରିପସ୍ ( ଯୁଦ୍ଧ ପୂର୍ବରୁ ) ଓ ଆନେଇଉରିନ୍ ବିଭାନ ପ୍ରଭୃତି ଅନ୍ୟ କେତେଗୁଡ଼ିଏ ଦୃଷ୍ଟାନ୍ତ ଅଛି । ମନ୍ତ୍ରିମଣ୍ଡଳରେ ଉଚ୍ଛୃଙ୍ଖଳ ସଦସ୍ୟ ନ ଥିଲେ ବି ବ୍ୟାପକ ବିବାଦୀୟ ବିଷୟଗୁଡ଼ିକ ଉପରେ ଶୀଘ୍ର ରାଜିନାମାରେ ପହଞ୍ଚିବା ସହଜ ହୋଇ ନ ଥାଏ । ଜନମତ ଏଥିରେ ସାହାଯ୍ୟ କରିଥାଏ, କିନ୍ତୁ ଜନମତର ଲକ୍ଷ୍ୟ କେଉଁ ଆଡ଼କୁ ତାହା ନିର୍ଦ୍ଦିଷ୍ଟ ଭାବରେ ଜଣାପଡ଼େ ନାହିଁ । ଅଧିକାଂଶ ସମୟରେ ମନ୍ତ୍ରିମଣ୍ଡଳକୁ ଅପ୍ରିୟ ନିଷ୍ପତ୍ତି ନେବାକୁ ହୋଇଥାଏ, କାରଣ ସେପରି ନିଷ୍ପତ୍ତି ନିଆ ନ ହେଲେ ଅନ୍ୟାନ୍ୟ ନିଷ୍ପତ୍ତିଗୁଡ଼ିକ ଅଧିକ ଅପ୍ରିୟ ହେବାର ଆଶଙ୍କା ଥାଏ ।

ଉପରୋକ୍ତ ଉଦାହରଣଗୁଡ଼ିକ ପ୍ରତ୍ୟେକ ସପ୍ତାହରେ ଦେଖିବାକୁ ମିଳିଥାଏ । ଅଧିକାଂଶ ସମୟରେ ଖରାପ ବିଷୟମାନଙ୍କ ମଧ୍ୟରୁ ଗୋଟିକୁ ବାଛିବାକୁ ପଡ଼ିଥାଏ ।

ମନ୍ତ୍ରିମଣ୍ଡଳର ଗୋଟିଏ ଅଂଶ ଏଥିରୁ ଗୋଟିଏ ବିଷୟ ଗ୍ରହଣ କରୁଥିବାବେଳେ ଅନ୍ୟ ସଦସ୍ୟମାନେ ଆଉ ଏକ ବିଷୟ ଗ୍ରହଣ କରନ୍ତି । ପ୍ରଧାନମନ୍ତ୍ରୀ ମଧ୍ୟ ମନ୍ତ୍ରିମଣ୍ଡଳ ଉପରେ ନିଜର ମତ ଲଦି ଦେବାକୁ ଚେଷ୍ଟା କରିପାରନ୍ତି । ଗ୍ଲାଡ୍‌ଷ୍ଟୋନ ସର୍ବଦା ଏହା କରୁଥିବାରୁ ଦଳମଧ୍ୟରେ ବିଭେଦ ସୃଷ୍ଟି ହେବାର ଉପକ୍ରମ ହୋଇଥିଲା । ପ୍ରଶୁଲ୍କ ସଂସ୍କାର ବିଷୟରେ ବାଲଫୋର ଯେପରି କାଳକ୍ଷେପଣ ନୀତି ଅବଲମ୍ବନ କରୁଥିଲେ, ଅନ୍ୟ ପ୍ରଧାନମନ୍ତ୍ରୀ ସେପରି କରିପାରନ୍ତି । ୧୮୫୨ରେ ଆବରଡ଼ୀନଙ୍କ ପରି ପ୍ରଧାନମନ୍ତ୍ରୀ ରାଜନାମାରେ ପହଞ୍ଚିବା ପାଇଁ ଚେଷ୍ଟା କରିଥିଲେ । ଏହି ଉଦାହରଣ ଏକ ସନ୍ତୋଷଜନକ ଉଦାହରଣ ନୁହେଁ । ଏହି ରାଜନାମା ଫଳରେ କ୍ରିମିଆ ଯୁଦ୍ଧ ଆରମ୍ଭ ହୋଇଥିଲା ଓ ଏହାକୁ ବର୍ତ୍ତମାନ ଇତିହାସରେ ଏକ ଭୁଲ ପଦକ୍ଷେପ ବୋଲି ଚିହ୍ନଣ କରାଯାଉଅଛି । କୌଣସି କଥାକୁ ବ୍ୟକ୍ତିଗତ ଭାବରେ ଗ୍ରହଣ ନ କଲେ ମଧ୍ୟ ପ୍ରଧାନମନ୍ତ୍ରୀ ସଂଖ୍ୟାଗରିଷ୍ଠ ମତକୁ ଗ୍ରହଣ କରିବାର ଆବଶ୍ୟକତା ଅନୁଭବ କରିପାରନ୍ତି । ମନ୍ତ୍ରିମଣ୍ଡଳ ପରିଚାଳନା କରିବା ପ୍ରଧାନମନ୍ତ୍ରୀଙ୍କର ନିଶ୍ଚିତ ଭାବରେ ସବୁଠାରୁ କଷ୍ଟକର କାର୍ଯ୍ୟ ଅଟେ । ଏହାଦ୍ୱାରା କୌଣସି ବିଷୟରେ କେବଳ ନିଷ୍ପତ୍ତି ନ ନେଇ କୌଶଳ ସମ୍ବନ୍ଧରେ ମଧ୍ୟ କଷ୍ଟକର ନିଷ୍ପତ୍ତି ନେବାକୁ ହୋଇଥାଏ ।

ପୁନଶ୍ଚ ପ୍ରଧାନମନ୍ତ୍ରୀ କେବଳ ମନ୍ତ୍ରିମଣ୍ଡଳ ପ୍ରଶ୍ନଗୁଡ଼ିକ ସହ ଜଡ଼ିତ ନୁହନ୍ତି, ବିଭାଗ-ଗୁଡ଼ିକରେ କ'ଣ ହେଉଛି ସେଥିପ୍ରତି ତାଙ୍କୁ ନିଶ୍ଚିତ ଭାବରେ ଦୃଷ୍ଟି ଦେବାକୁ ହୋଇଥାଏ । ସାର୍ ରବର୍ଟ ପିଲ୍‌ଙ୍କୁ ଏହି ବିଷୟରେ ଏକ ଆଦର୍ଶ ପ୍ରଧାନମନ୍ତ୍ରୀ ରୂପେ ନିଆଯାଇଥାଏ । ୧୮୪୬ରେ ତାଙ୍କ ଦଳରେ ବିଭେଦ ସୃଷ୍ଟି ହେବାଠାରୁ ତାଙ୍କୁ ଆଉ ଆଦର୍ଶ ପ୍ରଧାନମନ୍ତ୍ରୀରୂପେ କ୍ୱଚିତ୍ ବିବେଚନା କରାଯାଇଥିଲା । ଅବଶ୍ୟ ମନ୍ତ୍ରୀମାନଙ୍କ ଦ୍ୱାରା ଆଲୋଚିତ ହେଉଥିବା ସମସ୍ତ ଗୁରୁତ୍ୱପୂର୍ଣ୍ଣ ବିଷୟଗୁଡ଼ିକୁ ପୀଲ୍ ଜାଣିଥିଲେ ଓ ଆବଶ୍ୟକ ପଡ଼ିଲେ ଯେ କୌଣସି ବିଷୟରେ ସେ ହସ୍ତକ୍ଷେପ କରୁଥିଲେ । ବର୍ତ୍ତମାନ ସରକାରଙ୍କ କାର୍ଯ୍ୟ ଅଦ୍ଭୁତ ଭାବେ ବୃଦ୍ଧିପାଇଥିବାରୁ ସେପରି ଠିକ୍‌ନିଖି ଦୃଷ୍ଟିଦେବା ପ୍ରଧାନମନ୍ତ୍ରୀଙ୍କ ପକ୍ଷରେ ଆଉ ସମ୍ଭବପର ନୁହେଁ । କିନ୍ତୁ ମନ୍ତ୍ରୀଙ୍କର ପ୍ରତ୍ୟେକ କାର୍ଯ୍ୟ ରାଜନୈତିକ ବିବାଦ ସୃଷ୍ଟି କରିବାର ଆଶଙ୍କା ଥିବାରୁ, ଏଥିପାଇଁ ପ୍ରଧାନମନ୍ତ୍ରୀ ନିଶ୍ଚିତଭାବରେ ତାଙ୍କର ଗୋଟିଏ କାନକୁ ଖୋଲି ରଖିବା ଉଚିତ । ତାଙ୍କ ସହିତ ପରାମର୍ଶ କରିବାକୁ ଇଚ୍ଛୁକ ଥିବା ମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ ସାଧାରଣତଃ ସେପରି ସୁଯୋଗ ଦେବା ଉଚିତ । ଘଟଣା ଘଟିବା ସମୟରେ ଉପଯୁକ୍ତ ପରାମର୍ଶ ଦେବାର ଯୋଗ୍ୟତା ଉପରେ ତାଙ୍କ ସଫଳତା ନିର୍ଭର କରେ । ବୈଦେଶିକ ବ୍ୟାପାର ବିଷୟ ସର୍ବଦା କାର୍ଯ୍ୟକ୍ରମରେ ଥିବାରୁ ବୈଦେଶିକ ମନ୍ତ୍ରୀଙ୍କ ସହିତ ପ୍ରଧାନମନ୍ତ୍ରୀଙ୍କର ଘନିଷ୍ଠ ସମ୍ପର୍କ ଥାଏ । ଚାନ୍‌ସେଲର ଅଫ୍ ଦି ଏକ୍‌ସଚେକର ଏଗାର ନମ୍ବର ଡାଉନିଙ୍ଗ୍ ଷ୍ଟ୍ରୀଟ୍‌ରେ ବାସକରୁଥିବାରୁ ସେ ପ୍ରଧାନମନ୍ତ୍ରୀଙ୍କର ଅତି ନିକଟରେ ରହିଥାଆନ୍ତି ଓ ସେଥିପାଇଁ ସେ ତାଙ୍କ ସହିତ ନିୟମିତ ପରାମର୍ଶ କରିବାର ସୁଯୋଗ ପାଇଥାଆନ୍ତି । ଅନ୍ୟ ମନ୍ତ୍ରୀମାନଙ୍କ ପାଇଁ ପ୍ରଧାନମନ୍ତ୍ରୀଙ୍କ ଦ୍ୱାର ସର୍ବଦା ଉନ୍ମୁକ୍ତ ରହିବା ଉଚିତ । ତାଙ୍କର ନିର୍ମଳ ଚିନ୍ତା, ସୂକ୍ଷ୍ମ ବିଚାର ଓ ସାମର୍ଥ୍ୟଥିବା

ଆବଶ୍ୟକ । ବାଲଡ୍‌ୱିନ୍‌ଙ୍କ ପରି ବୃଦ୍ଧିରେ ଅଲସୁଆ ଥିଲେ ଅଥବା ମ୍ୟାକ୍‌ଡୋନାଲଙ୍କ ପରି ସହଜରେ ମିଳାମିଶା କରୁ ନ ଥିଲେ, ସେ ତାଙ୍କ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରିପାରିବେ ନାହିଁ ।

ଏହାପରେ କମନ୍‌ସ ସଭା ପରିଚାଳନା ଦାୟିତ୍ୱ ଅଛି । କମନ୍‌ସ ସଭାର ନିର୍ଦ୍ଦିଷ୍ଟ ଜୀବନକାଳ ଓ ପରମ୍ପରା ଥିବାରୁ ଏହାର ପରିଚାଳନା ଦଳୀୟ ସଂଖ୍ୟାଗରିଷ୍ଠତା ପରିଚାଳନା ପରି ନୁହେଁ । ବିଶେଷତଃ ଏହି ସଭାର କାର୍ଯ୍ୟ ସର୍ବସାଧାରଣଙ୍କ ସମ୍ମୁଖରେ ପରିଚାଳିତ ହେଉଥିବା ବେଳେ ଦଳୀୟ କାର୍ଯ୍ୟ ବ୍ୟକ୍ତିଗତ ଭାବରେ ପରିଚାଳିତ ହୋଇଥାଏ । ବର୍ତ୍ତମାନ ଏହି ଗୃହର ପରିଚାଳନା କାର୍ଯ୍ୟ ତଦାରଖ କରିବାର ଭାର ଆଉ ଜଣେ ମନ୍ତ୍ରୀଙ୍କୁ ଦିଆଯାଇଅଛି । ବେଳେବେଳେ ଲର୍ଡ଼ ପ୍ରିଭିସିଲ କିମ୍ବା ପରିଷଦର ଲର୍ଡ଼ ପ୍ରେସିଡେଣ୍ଟଙ୍କୁ ଏହି ଦାୟିତ୍ୱ ଦିଆଯାଇଥାଏ ଓ ତାଙ୍କୁ ଗୃହର ନେତା ବୋଲି କୁହାଯାଇଥାଏ । କିନ୍ତୁ ଏହା ଦ୍ୱାରା ପ୍ରଧାନମନ୍ତ୍ରୀଙ୍କୁ ସରକାରୀ ଦଳର ନେତୃତ୍ୱ ନେବାରୁ ବଞ୍ଚିତ କରାଯାଇ ନ ଥାଏ । ସରକାର ପରାଜିତ ହୋଇଯିବାର ଭୟ ଏକ ସମସ୍ୟାରୂପେ ନ ଥାଏ । ଦଳ ଭାଙ୍ଗି ନ ଗଲେ ଅଥବା ଦଳର ଖୁବ୍ ସ୍ୱଳ୍ପ ସଂଖ୍ୟାଗରିଷ୍ଠତା ଥିଲେ, ସରକାର ଭାଙ୍ଗିଯିବାର ଆଶଙ୍କା ଥାଏ । ଏହି ସଭା "ଇଉରୋପର ଏକ ସର୍ବଶ୍ରେଷ୍ଠ ମଞ୍ଚ" ସ୍ୱରୂପ । ଇଂଲଣ୍ଡରେ ଏହା ଏକମାତ୍ର ତର୍କସଭା ଯାହାର ଆଲୋଚନା ବିବରଣୀ ଲକ୍ଷ ଲକ୍ଷ ଲୋକ ପଢ଼ନ୍ତି କିମ୍ବା ତାହା ଉପରେ ଆଖି ପକାଇଥାନ୍ତି । ସରକାରଙ୍କୁ ସଂଖ୍ୟାଗରିଷ୍ଠତା ବଜାୟ ରଖିବାକୁ ହେଲେ ସର୍ବଦା ସତର୍କ ରହିବାକୁ ପଡ଼ିଥାଏ । ସରକାରଙ୍କୁ ଗୃହର ପ୍ରତ୍ୟେକ ବିଭାଜନ ( Division ) ବେଳେ ବିଜୟ ହାସଲ କରିବାକୁ ପଡ଼ିଥାଏ, ତଥାପି ଦଳ ହୁଏତ ଆଗାମୀ ନିର୍ବାଚନରେ ହାରି ଯାଇପାରେ । ସର୍ବୋପରି ଏହି ସଭା ଏକ ମନୁଆଁ ସଂସ୍ଥା ଅଟେ । ଏହାପ୍ରତି ଅବହେଳା ବା ଅସମ୍ମାନ ପ୍ରଦର୍ଶନ ହେଉଛି ବୋଲି ଜାଣିଲେ ଏହା ତୀକ୍ଷଣଭାବେ ପ୍ରତିକ୍ରିୟା ପ୍ରକାଶ କରିଥାଏ । ସୁତରାଂ ପ୍ରଧାନମନ୍ତ୍ରୀଙ୍କୁ "କମନ୍‌ସ ସଭାର ଜଣେ ଉତ୍ତମ ବ୍ୟକ୍ତି" ବୋଲି କୁହାଯାଇଥାଏ । ବାଲଡ୍‌ୱିନ୍ କିମ୍ବା ଚର୍ଚ୍ଚିଲଙ୍କ ପରି ପ୍ରଧାନମନ୍ତ୍ରୀ ଏହି ସଭାର ପରମ୍ପରା ପ୍ରତି ସମ୍ମାନ ପ୍ରଦର୍ଶନ କରି ସଭାର କାର୍ଯ୍ୟ ଭଲ ଭାବରେ ପରିଚାଳନା କରୁଥିଲେ ।

ଉପରୋକ୍ତ କାର୍ଯ୍ୟ ତାଲିକାରେ ପ୍ରଧାନମନ୍ତ୍ରୀଙ୍କର ସମସ୍ତ କାର୍ଯ୍ୟାବଳୀ ଅନ୍ତର୍ଭୁକ୍ତ ହୋଇ ନାହିଁ । କ୍ୟାଣ୍ଟରବରୀର ଆର୍ଚ୍ଚ ବିଶପଙ୍କ ପରାମର୍ଶ ଅନୁସାରେ ବିଶପ ନିଯୁକ୍ତି, ଲର୍ଡ଼ ଚାନ୍‌ସେଲରଙ୍କ ପରାମର୍ଶ ଅନୁସାରେ ଉଚ୍ଚ ନ୍ୟାୟାଧୀଶ ନିଯୁକ୍ତି, ରାଜକୋଷର ସ୍ଥାୟୀ ସଚିବଙ୍କ ପରାମର୍ଶ ଅନୁସାରେ ଅନ୍ୟାନ୍ୟ ସ୍ଥାୟୀ ସଚିବମାନଙ୍କ ନିଯୁକ୍ତି ଇତ୍ୟାଦି ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା କରାଯାଇଥାଏ । ରାଜନୈତିକ ଓ ସର୍ବସାଧାରଣ କାର୍ଯ୍ୟ ପାଇଁ ସମ୍ମାନିତ ହେଉଥିବା ବ୍ୟକ୍ତିମାନଙ୍କର ନାମ ତାଲିକା ତାଙ୍କ ପରାମର୍ଶରେ କରାଯାଇଥାଏ । ଏତଦ୍‌ବ୍ୟତୀତ ତାଙ୍କ ମନ୍ତ୍ରିମଣ୍ଡଳରେ ବିଭିନ୍ନ ସମସ୍ୟା ମଧ୍ୟ ସର୍ବଦା ଦେଖାଦେଇଥାଏ । ପ୍ରଧାନମନ୍ତ୍ରୀ ମନ୍ତ୍ରିମଣ୍ଡଳ ଗଠନ ପାଇଁ ପ୍ରଥମ ତାଲିକା ପ୍ରସ୍ତୁତ କଲାବେଳେ ଏହାର ସଦସ୍ୟ ସଂଖ୍ୟା ନିର୍ଦ୍ଦିଷ୍ଟ ହୋଇ

ନଥାଏ । ମନ୍ତ୍ରୀପଦ ଲାଭ କରିଥିବା ପାଇଁ ଆଶା କରିଥିବା କେତେକ ବ୍ୟକ୍ତି ସଫଳ ହେବା ସ୍ଥଳେ ଆଉ କେତେକ ନିରାଶ ହୋଇଥାନ୍ତି । କେତେକ ମଧ୍ୟ ଅନ୍ୟାନ୍ୟ ପଦ ପାଇଁ ଉପଯୁକ୍ତ ହୋଇଥାନ୍ତି । ମୃତ୍ୟୁ କିମ୍ବା ଇସ୍ତଫା ଫଳରେ ମଧ୍ୟ ବେଳେ ବେଳେ କେତେକ ସ୍ଥାନ ଖାଲି ପଡ଼ିଥାଏ । ଚର୍ଚ୍ଚିଲଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଓ ଅଟଲିଙ୍କ ଦ୍ୱାରା ଅନୁସୃତ ହୋଇଥିବା ଆଧୁନିକ ପଦ୍ଧତି ଅନୁସାରେ ମନ୍ତ୍ରିମଣ୍ଡଳ ସଦସ୍ୟମାନଙ୍କ ମଧ୍ୟରେ ଅଧିକାଂଶ ସମୟରେ ପରିବର୍ତ୍ତନ କରାଯାଇଥାଏ ।

ଉପରୋକ୍ତ କାର୍ଯ୍ୟଗୁଡ଼ିକୁ ବିଭିନ୍ନ ଶିରୋନାମାରେ ବିଭକ୍ତ କରାଯାଇପାରିଲେ ମଧ୍ୟ ସେଗୁଡ଼ିକ ମଧ୍ୟରେ ବହୁତ ସାମଞ୍ଜସ୍ୟ ଥାଏ । ସମ୍ବିଧାନରେ ସମସ୍ତ ରାସ୍ତା ପ୍ରଧାନମନ୍ତ୍ରୀଙ୍କ ପାଖରେ ମିଳିତ ହୋଇଛି । ପ୍ରଧାନମନ୍ତ୍ରୀଙ୍କଠାରୁ ବିଭିନ୍ନ ରାସ୍ତା ରାଣୀ, ସଂସଦ, ମନ୍ତ୍ରୀ, ରାଜ୍ୟ-ଗୋଷ୍ଠୀର ଅନ୍ୟାନ୍ୟ ସଦସ୍ୟ, ଏପରିକି ଚର୍ଚ୍ଚ ଅଫ୍ ଇଂଲଣ୍ଡ ଓ ଆଇନାନୁମୋଦିତ ନ୍ୟାୟାଳୟଗୁଡ଼ିକ ପର୍ଯ୍ୟନ୍ତ ଯାଇଛି । ତାଙ୍କ ସହକର୍ମୀମାନଙ୍କ ମଧ୍ୟରେ ତାଙ୍କୁ ସମାନ ବ୍ୟକ୍ତିମାନଙ୍କ ମଧ୍ୟରେ ଜଣେ ( Primers interpares ) ବୋଲି କୁହାଯାଇଥାଏ କିନ୍ତୁ ୧୮୬୮ରେ ଗ୍ଲାଡ଼ଷ୍ଟୋନ ପ୍ରଧାନମନ୍ତ୍ରୀ ହେବା ଦିନଠାରୁ ଏହି କଥାର ସତ୍ୟତା ବିଷୟରେ ସନ୍ଦେହ ପ୍ରକାଶ ପାଇଥାଏ । ହାରକୋର୍ଟଙ୍କ ମତରେ ପ୍ରଧାନମନ୍ତ୍ରୀ କ୍ଷୁଦ୍ର ତାରକାଗୁଡ଼ିକ ମଧ୍ୟରେ ଚନ୍ଦ୍ରମା ସ୍ୱରୂପ ( inter stellaluna minores ) କିନ୍ତୁ ଖାଲି ଆଖିରେ ଦେଖିଲେ କ୍ଷୁଦ୍ର ତାରକାଗୁଡ଼ିକର ଚନ୍ଦ୍ରମା ସହିତ କିଛି ସମ୍ପର୍କ ଥିଲାପରି ଜଣାଯାଏ ନାହିଁ । ବରଂ ଗ୍ରହମାନଙ୍କ ମଧ୍ୟରେ ପ୍ରଧାନମନ୍ତ୍ରୀ ସୂର୍ଯ୍ୟ ସ୍ୱରୂପ ଅଧିକ ପ୍ରତୀୟମାନ ହୋଇଥାଆନ୍ତି ( The prime Minister is much more like sun among the Planets) ।

ଏକଥା ନିଶ୍ଚିତ ଯେ, ସେ ତାଙ୍କର ସମସ୍ତ କାର୍ଯ୍ୟକୁ ଦକ୍ଷତାର ସହିତ ସମ୍ପାଦନ କରିଥାଆନ୍ତି ଓ ଏଥିପାଇଁ ବିଭିନ୍ନ ସୁଗୁଣାବଳୀର ଆବଶ୍ୟକତା ଥାଏ । ଅବଶ୍ୟ କେତେକ କ୍ଷେତ୍ରରେ ବିଫଳତା ଦେଖାଦେଇଥିଲେ ମଧ୍ୟ କମନ୍ସ ସଭାର ସଫଳତା ଉପରେ ପ୍ରଧାନମନ୍ତ୍ରୀଙ୍କ ସଫଳତା ସାଧାରଣତଃ ନିର୍ଭର କରିଥାଏ । ଚଳିତ ଶତାବ୍ଦୀରେ ରାମସେ ମ୍ୟାକଡୋନାଲ୍ଡ ଏହାର ବ୍ୟତିକ୍ରମ ଥିଲେ । ୧୯୨୪ରେ ସେ ପ୍ରଧାନମନ୍ତ୍ରୀ ହେବା ପୂର୍ବରୁ ତାଙ୍କର ମନ୍ତ୍ରୀତ୍ୱର କୌଣସି ଅଭିଜ୍ଞତା ନ ଥିଲା । ସଂସଦ ଅପେକ୍ଷା ସାଧାରଣ ମଞ୍ଚରେ ସେ ତାଙ୍କର ପ୍ରତିଭା ପ୍ରତିଷ୍ଠିତ କରିପାରିଥିଲେ । ସଦନ କିମ୍ବା ସହକର୍ମୀମାନଙ୍କୁ ପରିଚାଳିତ କରିବାକୁ ଶିଖି ନ ଥିଲେ । ଅନ୍ୟ ପକ୍ଷରେ ୧୯୨୨ରେ ବୋନାର ଲ, ତାଙ୍କୁ ଚାନ୍ସେଲର ଅଫ୍ ଦି ଏକ୍ସଚେକର କରିବା ପୂର୍ବରୁ ନେଭିଲ ଚେମ୍ବରଲେନ୍ ଜଣେ ପଛ ବେଞ୍ଚରେ ବସୁଥିବା ସଦସ୍ୟ ଥିଲେ । ସେ ତାଙ୍କ ଦଳର ସହକର୍ମୀମାନଙ୍କୁ ନିୟନ୍ତ୍ରଣ କରିବାରେ ଅବହେଳା ପ୍ରଦର୍ଶନ କରୁଥିଲେ ହେଁ, ଜଣେ କୁଶଳୀ ରାଜନୀତିଜ୍ଞ ହିସାବରେ ତାଙ୍କର

ସୁଖ୍ୟାତ ଥିଲା । ନିଜ ପ୍ରତିଭାର ବିକାଶ କରିବା ପାଇଁ ଅତ୍ୟନ୍ତ ସୁଯୋଗ ପାଇଥିବାରୁ ନେଭିଲ ଚେମ୍ବରଲେନ ଯୁଦ୍ଧ ପୂର୍ବାବସ୍ଥା ବୁଝାବୁଝିରେ ସମ୍ପୃକ୍ତ ରହିଥିଲେ, ଫଳରେ ବୈଦେଶିକ ବ୍ୟାପାର ବିଷୟରେ ସେ ବିଶେଷ ବୁଝାବୁଝି କରୁ ନ ଥିଲେ । ଲଏଡ୍ ଜର୍ଜ କିମ୍ବା ଚର୍ଚ୍ଚିଲଙ୍କ ପରି ଯୁଦ୍ଧ କାଳୀନ ପ୍ରଶାସକମାନଙ୍କ ପାଇଁ ସ୍ୱତନ୍ତ୍ର ଗୁଣାବଳୀର ଆବଶ୍ୟକତା ଥିଲା ।

Digitized by srujanika@gmail.com

# ଅଷ୍ଟମ ଅଧ୍ୟାୟ

## ରାଣୀଙ୍କ ନ୍ୟାୟ୍ ପାଳକା

## ( The Queen's Justice )

**ଆଇନ ଓ ଜନମତ ( Law and Opinion ) :**

ଇଂଲଣ୍ଡ ଇତିହାସର ଏକ ବିଶେଷତ୍ୱ ହେଲା ଯେ, ନ୍ୟାୟାଳୟ-ଗୁଡ଼ିକ ସଂସଦର ଅଧିକାର ମଧ୍ୟରେ ଥିଲେ ସୁଦ୍ଧା, ସେମାନଙ୍କର ଯଥେଷ୍ଟ ସମ୍ମାନ ଥାଏ । ସଂସଦ ଓ ନ୍ୟାୟାଳୟ, ବୈଧାନିକ ଆଇନ ଓ ସାଧାରଣ ଆଇନ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥାଏ । ନ୍ୟାୟାଳୟଗୁଡ଼ିକୁ ନିୟନ୍ତ୍ରଣ କରିବାର ଅଧିକାର ସଂସଦର ଥିଲେ ମଧ୍ୟ ଓ ବୈଧାନିକ ଆଇନ ସାଧାରଣ ଆଇନକୁ ବାତିଲ କରିଦେବାର ବ୍ୟବସ୍ଥା ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ଥିବା ସମ୍ପର୍କ, ସମାନ ବ୍ୟକ୍ତିମାନଙ୍କ ମଧ୍ୟରେ ଥିବା ସମ୍ପର୍କ ସହିତ ତୁଳନା କରାଯାଇଥାଏ । ଇଂଲଣ୍ଡର ପରମ୍ପରା ଅନୁସରଣ କରୁଥିବା ଦେଶ ମାନଙ୍କରେ ବିଚାରପତିମାନଙ୍କୁ ଉଚ୍ଚ ସମ୍ମାନ ପ୍ରଦାନ କରାଯାଇ-ଥାଏ ।

ଏହାର କାରଣ ଅନୁସନ୍ଧାନ କଲେ ଦେଖାଯାଏ ଯେ ଉଭୟ ସଂସଦ ଓ ନ୍ୟାୟାଳୟ ସେମାନଙ୍କ କ୍ଷମତା ରାଜାଙ୍କଠାରୁ ପାଇଥିଲେ ଓ ପରେ ସେମାନେ ରାଜାଙ୍କ ବିରୁଦ୍ଧରେ ଏକ ମିଳିତ ଶକ୍ତି ଗଠନ କରିଥିଲେ । କ୍ରମଶଃ "ନ୍ୟାୟାଳୟ"ର ସଂଜ୍ଞା ବଦଳି ଯାଇଥିଲା । ଏହା ରାଣୀଙ୍କ ନାମରେ ରାଣୀଙ୍କ ନ୍ୟାୟାଧୀଶମାନେ ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ଡାକିଥିବା ବୈଠକକୁ ବୁଝାଉଥିଲା । ଅବଶ୍ୟ ଏହି ବ୍ୟାପକ ଅର୍ଥର କିଛି ଅଂଶ ଏବେ ମଧ୍ୟ ରହିଛି । କୌଣସି ବ୍ୟକ୍ତିଙ୍କୁ ପ୍ରଥମେ ନ୍ୟାୟାଳୟରେ ଉପସ୍ଥିତ କରିବା ସମୟରେ ଅଥବା କୌଣସି ରାଷ୍ଟ୍ରଦୂତ "ସେଣ୍ଟଜେମସ ନ୍ୟାୟାଳୟ"ରେ ଉପସ୍ଥିତ ହେବା ସମୟରେ ଏହା ଦେଖା ଦେଇ-ଥାଏ । ସର୍ବସାଧାରଣରେ ଉପସ୍ଥିତ ହେବା ସମୟରେ ରାଜା ନିଜ ଦରବାରରେ ଥାଆନ୍ତି

ବୋଲି କୁହାଯାଏ । ସେ ତାଙ୍କ ଦରବାରର ଲୋକମାନଙ୍କ ସହିତ ବିଭିନ୍ନ ବିଷୟ ଆଲୋଚନା କରିଥାଆନ୍ତି, ବିଭିନ୍ନ ନିବେଦନ ପତ୍ର ବିଚାର କରି ସେ ବିଷୟରେ ନିର୍ଦ୍ଦେଶ ଦେଇଥାଆନ୍ତି, ଓ ତାଙ୍କ ଅଧସ୍ତନ ଲୋକମାନଙ୍କ ବିବାଦଗୁଡ଼ିକୁ ନିଷ୍ପତ୍ତି କରିଥାଆନ୍ତି । ବିଦେଶୀ ରାଷ୍ଟ୍ରଦୂତ-ମାନଙ୍କୁ ରାଜା ଗ୍ରହଣ କରିଥାଆନ୍ତି ଓ ଉତ୍ତରାଧିକାରୀ ସୂତ୍ରରେ ତାଙ୍କର ବଡ଼ ବଡ଼ ପ୍ରଜା-ମାନଙ୍କଠାରୁ ସମ୍ମାନ ସୂଚକ ପତ୍ର ପାଇଥାଆନ୍ତି ଏବଂ ବଡ଼ ଲର୍ଡ଼ମାନଙ୍କର ସନ୍ତାନମାନଙ୍କୁ ନାଇଟ୍ ପଦରେ ଭୂଷିତ କରିଥାଆନ୍ତି । ଏହିପରି ରାଜାଙ୍କର ବିଭିନ୍ନ କାର୍ଯ୍ୟ ଥିଲି ଓ ଏହି କାର୍ଯ୍ୟ ଗୁଡ଼ିକ ମଧ୍ୟରେ କ୍ରମଶଃ ପାର୍ଥକ୍ୟ ଦେଖାଦେଇଥିଲି । ଏଥିରୁ କେତେଗୁଡ଼ିଏ କାର୍ଯ୍ୟ ସଂସଦର ଉଚ୍ଚ ନ୍ୟାୟାଳୟ, ଆଉ କେତେକ କାର୍ଯ୍ୟ ରାଣୀଙ୍କ ନ୍ୟାୟାଳୟ ଏବଂ ଅବଶିଷ୍ଟ କାର୍ଯ୍ୟ ଦରବାର ବସିଥିବା ସମୟରେ ରାଣୀ ନିଜେ ସମ୍ପାଦନ କରିଥାଆନ୍ତି । ସଂସଦର ଉଚ୍ଚ ନ୍ୟାୟାଳୟ ( The High Court of Parliament ) ସର୍ବୋଚ୍ଚ ନ୍ୟାୟାଳୟ ରୂପେ ପରିଗଣିତ ହୋଇଥିଲି । ସଂସଦରେ ରାଣୀଙ୍କ ନିର୍ଦ୍ଦେଶଗୁଡ଼ିକୁ ସଂସଦର ଅଧିନିୟମ କୁହାଯାଉଥିଲି ଓ ସେଗୁଡ଼ିକୁ ରାଣୀଙ୍କ ବିଚାରପତିମାନେ ମାନିବାକୁ ବାଧ୍ୟ ଥିଲେ । ସେମାନେ ରାଣୀଙ୍କ ବିଚାରକୁ ନ୍ୟାୟାଳୟରେ କାର୍ଯ୍ୟକାରୀ କରାଉଥିଲେ ।

ମଧ୍ୟଯୁଗରେ ଇଂଲଣ୍ଡରେ ସଂସଦୀୟ ଅଧିନିୟମ ସଂଖ୍ୟା କମ୍ ଥିଲି । ଇଂଲଣ୍ଡର ଆଇନ ସଂସଦରେ ପ୍ରଣୀତ ନ ହୋଇ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ଅନ୍ୟାନ୍ୟ ନ୍ୟାୟାଳୟ ଅର୍ଥାତ୍ ବିଚାର ବିଭାଗୀୟ ନ୍ୟାୟାଳୟରେ ବିକଶିତ ହୋଇଥିଲି । ଅନ୍ୟାନ୍ୟ ନ୍ୟାୟାଳୟ ଓ ଆଙ୍ଗ୍ଲୋ-ସ୍ୟାକ୍ସନ୍ ଇଂଲଣ୍ଡର ନ୍ୟାୟାଳୟ ଉପରେ ସମ୍ରାଟଙ୍କ ନ୍ୟାୟାଳୟର ପ୍ରଭୁତ୍ୱ ଅକ୍ଷୁଣ୍ଣ ରହିବା ଫଳରେ ଇଂଲଣ୍ଡର ସାଧାରଣ ଆଇନ ପରି ଏକ ସଂଯୁକ୍ତ ଆଇନ ବ୍ୟବସ୍ଥା ବିକାଶ ଲଭ କରିଥିଲି । ଅନ୍ୟାନ୍ୟ ଦେଶରେ ବହୁବିଧ ପ୍ରଥା ଥିବାରୁ ସେଗୁଡ଼ିକ ପରିବର୍ତ୍ତେ ଗୋଟିଏ ଆଇନ ସଂହିତା ( a Code of laws ) ପ୍ରଚଳିତ ହୋଇଥିଲି । କିନ୍ତୁ ଇଂଲଣ୍ଡରେ ଗୋଟିଏ ମାତ୍ର ଆଇନ ବ୍ୟବସ୍ଥା ପ୍ରଚଳିତ ଥିଲି ଓ ରାଜାଙ୍କ ନାମରେ ରାଜାଙ୍କ ନ୍ୟାୟାଳୟ-ଗୁଡ଼ିକ ଏହା ପ୍ରୟୋଗ କରୁଥିଲେ । ରାଜାଙ୍କ ଠାରୁ ଉତ୍ପତ୍ତି ହେଉଥିବାରୁ ଓ ନ୍ୟାୟ ପାଇବା ପାଇଁ ରାଜାଙ୍କ ନାମରେ ଏହା ବ୍ୟବହୃତ ହେଉ ଥିବାରୁ ସାଧାରଣ ଆଇନର ଯଥେଷ୍ଟ କ୍ଷମତା ଥିଲି । ସ୍ୱୟଂ ରାଜାଙ୍କ ବିରୁଦ୍ଧରେ ରାଜନୀତିଜ୍ଞମାନେ ନିବେଦନ କରିପାରିଲି ଭଳି କେତେକ ନୀତି ମଧ୍ୟ ଏଥିରେ ଅନ୍ତର୍ଭୁକ୍ତ ଥିଲି । ଇଂଲଣ୍ଡରେ ଘଟିଥିବା ବିପ୍ଳବ ଗୁଡ଼ିକର ଦୁଇଗୋଟି ବିଶେଷତ୍ୱ ପ୍ରଣିଧାନଯୋଗ୍ୟ । ସେଥିମଧ୍ୟରୁ ଗୋଟିକରେ ନ୍ୟାୟାଳୟର ସାମ୍ବିଧାନିକ ଦ୍ୱନ୍ଦ୍ୱକୁ ଅନ୍ତର୍ଭୁକ୍ତ କରାଯାଇଥାଏ ଓ ଏଥିରେ ସଂପୃକ୍ତ ଥିବା ମକଦ୍ଦମାଗୁଡ଼ିକ ଆମ୍ଭମାନଙ୍କ ପୁସ୍ତକ-ଗୁଡ଼ିକରେ ତଥାପି ଖୁବ୍ ସମ୍ମାନିତ ସ୍ଥାନ ଲଭ କରିଥାନ୍ତି । ଅନ୍ୟ ବିଶେଷତ୍ୱଟି ହେଉଛି ଯେ, ସଂସଦର ଆଲୋଚନାରେ ଆଇନଜ୍ଞ—ରାଜନୀତିଜ୍ଞମାନେ ପ୍ରାଧାନ୍ୟ ବିସ୍ତାର କରିଥାନ୍ତି ଏବଂ ସେମାନେ ଅସଂଖ୍ୟ ପୂର୍ବ—ଦୃଷ୍ଟାନ୍ତର ଉଦାହରଣ ଦେଇ ଥାଆନ୍ତି । ପ୍ରଧାନ ବିଚାରପତି ପଦରୁ ବରଖାସ୍ତ ହେବା ପରେ କୋକ୍ ଏହାର ଅଗ୍ରଣୀ ହୋଇଥିଲେ । ତାଙ୍କ ମତରେ ସାଧାରଣ ଆଇନରୁ

ଉତ୍ପନ୍ନ ହେଉଥିବା ପୂର୍ବ ଦୃଷ୍ଟାନ୍ତ ଗୁଡ଼ିକ ଉପରେ ସ୍ୱାଧୀନତା ନିର୍ଭର କରିଥାଏ ଓ ସାଧାରଣ ଆଇନ ଏହି ଗଣ୍ଡଗୋଳିଆ ପରିସ୍ଥିତି ମଧ୍ୟରେ ପ୍ରଚ୍ଛନ୍ନ ଭାବରେ ରହିଥାଏ । ଜନ୍ ସେଲଡ଼େନ୍ ନାମକ ଆଉ ଜଣେ ବିଶିଷ୍ଟ ଆଇନଜ୍ଞଙ୍କ ଥିଲେ ଓ ଆଇନ ପୁସ୍ତକରେ ତାଙ୍କ ନାମ "କଳା ଅକ୍ଷର" ରେ ଲିପିବଦ୍ଧ ହୋଇଥିଲା । ରାଜପଦର ପୁନଃପ୍ରତିଷ୍ଠା ତଥା ୧୬୮୮ର ଗୌରବମୟ ବିପ୍ଳବ ପରେ ଆଇନଜ୍ଞମାନେ ଅଧିକ ପ୍ରାଧାନ୍ୟ ବିସ୍ତାର କରି ପାରି ନ ଥିଲେ । ଏହି ସମୟରେ ବଡ଼ ବଡ଼ ଭୂମିମାଲିକଙ୍କର ପ୍ରାଧାନ୍ୟ ଥିଲା । ଉଇଲିୟମ୍ ଓ ମେରୀଙ୍କ ସିଂହାସନ ଆରୋହଣ ଘଟଣାକୁ "ଆଇନ ସମ୍ମତ" କରିବା ପାଇଁ ଉଦ୍ୟମ ହୋଇଥିଲା ଓ ଏଥିପାଇଁ ସାଧାରଣ ଆଇନର ଭୂୟସୀ ପ୍ରଶଂସା କରାଯାଇଥିଲା ।

ସମ୍ବିଧାନରେ ଥିବା ସାଧାରଣ ଆଇନର ଗୁରୁତ୍ୱ ରାଜନୈତିକ କର୍ତ୍ତବ୍ୟ ପାଳନ ସମ୍ବନ୍ଧୀୟ ତାତ୍ତ୍ୱିକ ନୀତି ଉପରେ ପର୍ଯ୍ୟବସିତ ନ ହୋଇ ଆଇନଗତ ପ୍ରଶାସନର ବାସ୍ତବ-ନୀତି ଉପରେ ପ୍ରତିଷ୍ଠିତ ହୋଇଥାଏ । ରାଜାଙ୍କ ବିଶେଷାଧିକାର ଓ ସଂସଦ ମଧ୍ୟରେ ଦେଖା-ଦେଇଥିବା ଦ୍ୱନ୍ଦ୍ୱ ଅନେକାଂଶରେ କର ବସାଇବା, ଆଇନକୁ ବାତିଲ କରିବା ବା କାର୍ଯ୍ୟକାରୀ ନ କରିବା, ଯଥେଚ୍ଛାଚାରର ଭାବରେ ଅଟକ ରଖିବା, ଜୁରୀଦ୍ୱାରା ବିଚାର କରିବା ଓ ବନ୍ଦୀ ପ୍ରତ୍ୟକ୍ଷୀକରଣ କରିବା ଅଧିକାର ମଧ୍ୟରେ ସୀମିତ ରହିଥାଏ । ସଂସଦ ନ୍ୟାୟାଳୟ-ଗୁଡ଼ିକୁ ନିଜ କ୍ଷମତା ବଳରେ କର୍ତ୍ତୃତ୍ୱାଧୀନ କରିପାରିଲେ ମଧ୍ୟ ସଂସଦ ବାହାରେ ତାହା କରାଯାଇପାରେ ନାହିଁ । ଏପରିକି ସମ୍ରାଟଙ୍କଅଧିକାରୀ ମାନଙ୍କ ବିରୁଦ୍ଧରେ ମଧ୍ୟ ଆଇନ କାର୍ଯ୍ୟକାରୀ ହେଉଛି କି ନାହିଁ ତାହା ଦେଖିବା ନ୍ୟାୟାଳୟର କର୍ତ୍ତବ୍ୟ ଅଟେ । ରାଜତନ୍ତ୍ରର ପୁନଃ ପ୍ରତିଷ୍ଠା ପରେ ଜନମତ ବିକାଶ ଲାଭ କରିଥିଲା ଓ କମନ୍‌ସ ସଭାରେ ଆଲୋଚିତ ହେଉ-ଥିବା ବିଷୟ ମଧ୍ୟ କଫି ଦୋକାନମାନଙ୍କରେ ଆଲୋଚିତ ହେଉଥିଲା । ଏହି ଜନମତ ସାମ୍ବିଧାନିକ ଅଧିକାର ଅପେକ୍ଷା, ସାମ୍ବିଧାନିକ ତ୍ରୁଟି ଓ ପ୍ରତିକାର ଉପରେ ଅଧିକ ଗୁରୁତ୍ୱ ଦେଉଥିଲା । ସାମ୍ବିଧାନିକ ପ୍ରତିକାର ମାଧ୍ୟମରେ ସ୍ୱାଧୀନତା ସଂରକ୍ଷଣ କରିବା ସାଧାରଣ ଆଇନର ଲକ୍ଷ୍ୟ ଥିଲା । ସାଧାରଣ ଆଇନକୁ ଧ୍ୱଂସ କରିବା ସଂସଦର କାର୍ଯ୍ୟ ନୁହେଁ ବରଂ ଏହାର ଅସୁବିଧାମାନ ଦୂରକରି ସାଧାରଣ ଆଇନକୁ ସମ୍ପୂର୍ଣ୍ଣ ରୂପେ କାର୍ଯ୍ୟକାରୀ କରିବାକୁ ଚେଷ୍ଟା କରିଥାଏ । ବନ୍ଦୀ ପ୍ରତ୍ୟକ୍ଷୀକରଣ ବିଷୟ ଏଠାରେ ଉଦାହରଣରୂପେ ଦିଆଯାଇପାରେ ।

ଅଷ୍ଟାଦଶ ଶତାବ୍ଦୀରେ ସଂସଦ ଓ ନ୍ୟାୟାଳୟ, ବୈଧାନିକ ଆଇନ ଓ ସାଧାରଣ ଆଇନ ଏବଂ ରାଜନୈତିକ ମତାମତ ଓ ଲୋକପ୍ରିୟ ମତାମତ ମଧ୍ୟରେ ଉଲ୍ଲେଖଯୋଗ୍ୟ ସଂହତି ପରିଲକ୍ଷିତ ହୋଇଥିଲା । ଜନ୍ ଉଇଲକ୍‌ସ ଜାତୀୟ ବୀର ରୂପେ ପ୍ରତିପାଦିତ ହୋଇ-ପାରିଥିଲେ । ବୀରତ୍ୱପୂର୍ଣ୍ଣ ପରିବେଶ ମଧ୍ୟରେ ତାଙ୍କ ଅବସ୍ଥାନ ଏହାର କାରଣ ନ ଥିଲା, ବରଂ ତାଙ୍କ ବିଷୟରେ ଦୁଇଟି ଆଇନଗତ ପ୍ରଶ୍ନ ଉତ୍ଥାପିତ ହୋଇଥିଲା । ଏହି ଦୁଇଟି

ପ୍ରଶ୍ନ ହେଲା, ଜଣେ ଅନାମଧେୟ ବ୍ୟକ୍ତିଙ୍କ ଠାରୁ କେତେକ କାଗଜପତ୍ର ଜବତ କରାଯାଇଥିଲେ ତାଙ୍କୁ ଅଟକ ରଖିବା ପାଇଁ ଏକ "ସାଧାରଣ ଓ୍ୱାରେଣ୍ଟ" ଘରୋଇମନ୍ତ୍ରୀ ଜାରି କରିପାରିବେ ନା ନାହିଁ; ଏବଂ କମନ୍ସ ସଭା ପ୍ରସ୍ତାବ ଆକାରରେ ଜଣେ ସଭ୍ୟଙ୍କୁ ଉକ୍ତ ଗୃହର ସଭ୍ୟ ହେବା ଅଧିକାରରୁ ବଞ୍ଚିତ କରି ପାରିବେ କି ନାହିଁ ? ଉଇଲିୟମ୍ ପିଟ୍ ଓ ଅର୍ଲ କ୍ୟାଥାମ୍‌ଙ୍କ ପରି ତତ୍‌କାଳୀନ ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞମାନେ ଏହି ସମସ୍ୟା ସମ୍ବନ୍ଧରେ ବିଶେଷ ଚିନ୍ତିତ ଥିଲେ । ସର୍ବୋପରି, ସମ୍ମତି ନ ନେଇ ଆମେରିକାର ଉପନିବେଶଗୁଡ଼ିକ ଉପରେ ଗ୍ରେଟ୍‌ବ୍ରିଟେନ୍‌ର ସଂସଦ କର ନିର୍ଦ୍ଧାରଣ କରିପାରିବ କି ନାହିଁ ଏହି ଆଇନଗତ ସମସ୍ୟାକୁ ଭିତ୍ତିକରି ଆମେରିକାରେ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଥିଲା । ଉଇଲିୟମ୍ ପିଟ୍ ଓ ସେ ସମୟର ଶ୍ରେଷ୍ଠତମ ପ୍ରଚାରକ ଏଡ଼ମଣ୍ଡ ବର୍କ ଏହି ବିଷୟରେ ଦୃଷ୍ଟାନ୍ତ ଖୋଜିବାକୁ ଆବଶ୍ୟକ ମନେ କରିଥିଲେ । ଆଇନ ସମସ୍ୟାକୁ ନିଜ ବ୍ୟକ୍ତିଗତ ଓ ରାଜନୈତିକ ସ୍ୱାଧୀନତା ସହିତ ଏକତ୍ର ବିଚାର କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ।

ଫରାସୀ ବିପ୍ଳବର ପ୍ରତିକ୍ରିୟା ଦ୍ରୁତ ଶିଳ୍ପୋନ୍ନତ ଇଂଲଣ୍ଡରେ ଦେଖାଦେଇଥିଲା । ଭୂମ୍ୟଧିକାରୀଶ୍ରେଣୀ ସ୍ୱାଧୀନତା ଓ ସମତା ଚିନ୍ତାଧାରା ଲକ୍ଷ୍ୟ କରି ଭୟଭୀତ ହୋଇଥିଲେ । ଦ୍ରୁତ ବୃଦ୍ଧି ପ୍ରାପ୍ତ ସହରାଞ୍ଚଳର ଶ୍ରମଜୀବୀ ଶ୍ରେଣୀ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ଶିଳ୍ପକ୍ଷେତ୍ରରେ ମଧ୍ୟବିତ୍ତ ଶ୍ରେଣୀ ମଧ୍ୟରେ ଏହି ଚିନ୍ତାଧାରା ପ୍ରବେଶ କରିଥିଲା ଏବଂ ଶେଷୋକ୍ତ ଶ୍ରେଣୀ ପକ୍ଷରେ ଏହା କମ୍ ବିପଜ୍ଜନକ ଥିଲା । ଚାର୍ଲସ୍ ଜେମସ୍ ଫକ୍ସଙ୍କ ପରି ଆଶା କରାଯାଉ ନ ଥିବା ବ୍ୟକ୍ତି ସ୍ୱାଧୀନତାର ଧ୍ୱଜା ଧାରଣ କରିଥିଲେ । ଏ କଥା ସତ ଯେ, ଆଇନ ସମ୍ବନ୍ଧରେ ତାଙ୍କର ଅଳ୍ପ ଜ୍ଞାନ ଥିଲା ଓ ଆଇନକୁ ସେ ବୋଧହୁଏ କମ୍ ଖାତିର କରୁଥିଲେ । କିନ୍ତୁ ୧୬୮୮ର ବିପ୍ଳବ ଦ୍ୱାରା ପ୍ରତିଷ୍ଠା କରାଯାଇଥିବା ପୁରାତନ ସ୍ୱାଧୀନତା ଉପରେ ଫକ୍ସଙ୍କ ଦ୍ୱାରା ସମର୍ଥିତ ହ୍ୱିଗ୍‌ମାନେ ନିଶ୍ଚିତ ଭାବରେ ଗୁରୁତ୍ୱ ଆରୋପ କରିଥିଲେ । ୧୭୯୨ର ମାନହାନିକର ପ୍ରକାଶନ ଅଧିନିୟମ ସହିତ ଫକ୍ସଙ୍କର ନାମ ଜଡ଼ିତ ଥିଲା । ଏହା ଫଳରେ "ସାତଜଣ ବିଶପଙ୍କ ମକଦ୍ଦମାରେ" ପ୍ରକାଶ ପାଇଥିବା ପୁରାତନ ନିୟମକୁ ଅନୁକରଣ କରାଯାଇଥିଲା । ଏହି ନିୟମକୁ ଲର୍ଡ଼ ମ୍ୟାନାସ୍ ଫିଲ୍ଡ଼ ପ୍ରଧାନ ବିଚାରପତି ଥିଲାବେଳେ ଅସ୍ୱୀକାର କରିଥିଲେ । ଏହା ଫଳରେ ଗୁରୁତର ମାନହାନିକର ଲେଖା ବିଚାର କଲାବେଳେ ବିଚାରପତି କେବଳ ଉକ୍ତ ଲେଖା ପ୍ରକାଶନର ପ୍ରମାଣ ନ ଚାହିଁ, ଲେଖକ ଦୋଷୀ କି ନାହିଁ ତାହା ମଧ୍ୟ ବିଚାର କରୁଥିଲେ ଏବଂ ବିଚାରକମଣ୍ଡଳୀ ଆଇନଗତ କିମ୍ବା ସ୍ୱେଚ୍ଛାଚାର ଦୃଷ୍ଟିରୁ ଲେଖା ମାନହାନିକର କି ନାହିଁ ବିଚାର ନ କରି ସାଧାରଣଜ୍ଞାନ ଦୃଷ୍ଟିରୁ ମଧ୍ୟ ବିଶ୍ଳେଷଣ କରୁଥିଲେ । ୮୧୭ରେ କୁଖ୍ୟାତ "ଛଅଗୋଟି ଅଧିନିୟମ"ରେ ଯେଉଁ ସ୍ୱେଚ୍ଛାଚାର ଆଇନ ପ୍ରଣୀତ ହୋଇଥିଲା ତାହାକୁ ବାଦ୍ ଦେଲେ ଅପ୍ରତିନିଧିମୂଳକ ସରକାର ଅନ୍ୟ କୌଣସି ମତାମତକୁ ଚାହୁଁ ନ ଥିଲେ । ସେଥିପାଇଁ ସମ୍ପୃକ୍ତ ବ୍ୟକ୍ତିଙ୍କୁ ଦୋଷୀ ସାବ୍ୟସ୍ତ କରିବା ପାଇଁ ବିଚାରକମଣ୍ଡଳୀ ମଧ୍ୟ ଚାହୁଁ ନ ଥିଲେ । ସ୍ୱାଧୀନତା ଓ ସହନଶୀଳତା ଅଷ୍ଟାଦଶ ଶତାବ୍ଦୀରେ

ବ୍ରିଟେନ୍‌ର ବିଶେଷତ୍ୱ ଥିଲି ଏବଂ ଉପରୋକ୍ତ ବ୍ୟବସ୍ଥା ଫଳରେ ଏହି ପରମ୍ପରା ଅକ୍ଷୁଣ୍ଣ ରହିଥିଲି ।

ଶିଳ୍ପବିପ୍ଳବର ଅଗ୍ରଗତି ଫଳରେ ବହୁ ବ୍ୟକ୍ତି ଧନୀ ଓ ଶିକ୍ଷିତ ହୋଇଥିଲେ । ସାମ୍ବିଧାନିକ ଆଇନ କିପରି ଜନମତ ଉପରେ ପ୍ରତିଷ୍ଠିତ ଥିଲି ତାହାର ପ୍ରମାଣ ଇତିହାସରୁ ମିଳିଥାଏ । ଏପରିକି ୧୮୨୯ରେ ପିଲ୍ ପୋଲିସ ବିଭାଗର ଯେଉଁ ସଂସ୍କାର ବ୍ୟବସ୍ଥା କରିଥିଲେ ତଦ୍ୱାରା ସ୍ୱାଧୀନତା ଉପରେ ଆକ୍ରମଣ ହୋଇଥିଲି । ଏହା ଫଳରେ ପୋଲିସକୁ ଗୋଟିଏ ଛିଦ୍ରବାଦୀ ସରକାରର ଅଭିକର୍ତ୍ତା ( agent ) ରୂପେ ଗ୍ରହଣ କରା ନ ଯାଇ ତାଙ୍କୁ ରାସ୍ତାରେ କୌଣସି ବ୍ୟକ୍ତି ଅସୁବିଧାରେ ପଡ଼ିଲେ ସାହାଯ୍ୟ କରିବା ପାଇଁ ଠିଆ ହୋଇଥିବା "ବବି" ( Bobby ) ସହିତ ତୁଳନା କରାଯାଇଥାଏ । କେବଳ ବିଶିଷ୍ଟ ଲେଖା ଓ ସମ୍ବାଦ ଆଲୋଚନାରେ ଲୋକପ୍ରିୟ କୁସଂସ୍କାର ପ୍ରକାଶ ପାଇ ନ ଥାଏ, ବରଂ ସେଲୁନ୍ ଓ କଲି-ଗୃହରେ ବି ଏହା ପ୍ରକାଶ ପାଇଥାଏ ଓ ବ୍ୟକ୍ତିଗତ ସ୍ୱାଧୀନତାରେ ହସ୍ତକ୍ଷେପ ନ କରିବା ପାଇଁ ଥିବା ସୁଦୀର୍ଘ ପରମ୍ପରା ଉପରେ ଏହା ପ୍ରତିଷ୍ଠିତ । "ଏହା ଠିକ୍ ନୁହେଁ" କିମ୍ବା "ସେମାନେ ଏହା କରିବା ଉଚିତ୍ ନୁହେଁ" ବୋଲି କହିବା ଅତୀତ ସାମ୍ବିଧାନିକ ବିବାଦର ଭଗ୍ନାବଶେଷ ରୂପେ ରହିଛି । ପାର୍ମିମ୍ ଓ ହାମ୍ପଡେନ୍, ପିଟ୍ ଓ ବର୍କ, ଫକ୍ସ ଓ ଅନ୍ୟାନ୍ୟ ସମର୍ଥକମାନେ ସ୍ୱେଚ୍ଛାଚାରୀ ବ୍ୟବସ୍ଥାର ପ୍ରବର୍ତ୍ତନକୁ ବିରୋଧ କରି ନିଜ ମତାମତଗୁଡ଼ିକୁ ଲୋକପ୍ରିୟ କରିପାରିଛନ୍ତି ।

ଏହାର ଦ୍ୱିବିଧ ଗୁରୁତ୍ୱ ଅଛି । ପ୍ରଥମତଃ, ବ୍ୟକ୍ତିଗତ ସ୍ୱାଧୀନତା ଉପରେ ହସ୍ତକ୍ଷେପ ହେଲେ ଏହାର ପ୍ରତିକାର କରିବା ପାଇଁ ସଂସଦକୁ ଏକ ଦୃଢ଼ ସଂସ୍ଥାରୂପେ ଗ୍ରହଣ କରାଯାଇ-ଅଛି । ଜନ୍ ଉଇଲ୍‌କିସଙ୍କ ପରି ଅନାମଧେୟ ବ୍ୟକ୍ତି ମଧ୍ୟ ଯେତେବେଳେ ବ୍ୟକ୍ତିଗତ ଅଭିଯୋଗ ସମ୍ବନ୍ଧୀୟ ସାମ୍ବିଧାନିକ ପ୍ରଶ୍ନ କମନ୍ସ ସଭାରେ ଉତ୍ଥାପନ କରନ୍ତି, ସେତେବେଳେ ଏହି ସଭାର ଆଲୋଚନା ଖୁବ୍ ସରଗରମ ହୋଇଥାଏ । ଦ୍ୱିତୀୟତଃ, ସ୍ୱାଧୀନତା ସଂରକ୍ଷଣ କରିବାରେ ସର୍ବସାଧାରଣଙ୍କ ଦୃଷ୍ଟିରେ ନ୍ୟାୟାଳୟଗୁଡ଼ିକର ଯଥେଷ୍ଟ ସମ୍ମାନ ଥାଏ । ରାଜନୈତିକ ହସ୍ତକ୍ଷେପରୁ ଏହା ବ୍ୟକ୍ତିମାନଙ୍କୁ ରକ୍ଷା କରିଥାଏ ଏବଂ କୌଣସି ଭୟ ବା ଅନୁଗ୍ରହ ଦ୍ୱାରା ପ୍ରଭାବିତ ନ ହୋଇ ସ୍ୱାଧୀନ ଭାବରେ ସେମାନଙ୍କ କାର୍ଯ୍ୟ ସମ୍ପାଦନ କରିବା ପାଇଁ ସୁଯୋଗ ପ୍ରଦାନ କରିଥାଏ ।

**ନ୍ୟାୟପାଳିକାର ସ୍ୱାଧୀନତା (The Independence of the Judiciary) :**

ସୁସ୍ଥ ଜନମତ ନ ଥିଲେ କୌଣସି ସାମ୍ବିଧାନିକ ସୂତ୍ର ଦ୍ୱାରା ନ୍ୟାୟପାଳିକାର ସ୍ୱାଧୀନତା ରକ୍ଷା କରାଯାଇପାରିବ ନାହିଁ । ଗୋଟିଏ ଆଘାତରେ ଏହାକୁ ନଷ୍ଟ କରିଦେବା

ପାଇଁ ସଂସଦର ଯଥେଷ୍ଟ କ୍ଷମତା ଅଛି । ତଥାପି ଏଥିପାଇଁ କେତେକ ବ୍ୟବସ୍ଥା ଗ୍ରହଣ କରାଯାଇଅଛି । ଲର୍ଡ଼ ଚାନ୍ସେଲରଙ୍କ ଦ୍ୱାରା କିମ୍ବା ଲର୍ଡ଼ ଚାନ୍ସେଲରଙ୍କ ପରାମର୍ଶରେ ପ୍ରଧାନମନ୍ତ୍ରୀଙ୍କ ଦ୍ୱାରା ଉଚ୍ଚ ନ୍ୟାୟାଳୟର ବିଚାରପତି ନିଯୁକ୍ତ ହୋଇଥାଆନ୍ତି । ଏହି ଅଲିଖିତ ତଳେ ଏହି ନିଯୁକ୍ତି ସମ୍ପୂର୍ଣ୍ଣ ରୂପେ ରାଜନୈତିକ ପ୍ରଭାବରୁ ମୁକ୍ତ ନ ଥିଲା । ବିଗତ ପଚାଶବର୍ଷ ମଧ୍ୟରେ ବୋଧହୁଏ କେବଳ ତିନିଗୋଟି ଘଟଣାରେ ରାଜନୈତିକ ପ୍ରଭାବ ପଡ଼ିଥିବା କଥା ଜଣାପଡ଼େ । ଥରେ ନିଯୁକ୍ତ ପାଇସାରିଲା ପରେ ଜଣେ ବିଚାରପତି ସମ୍ପୂର୍ଣ୍ଣ ଭାବେ ସ୍ୱାଧୀନ ଅଟନ୍ତି । ରାଜାଙ୍କର ଅନ୍ୟ କର୍ମଚାରୀମାନଙ୍କ ପରି "ରାଜାଙ୍କ ଅନୁଗ୍ରହ ଉପରେ" ତାଙ୍କ କାର୍ଯ୍ୟକାଳ ନିର୍ଭର କରି ନ ଥାଏ । "ଭଲ ଆଚରଣ ପ୍ରଦର୍ଶନ" କରୁଥିବା ପର୍ଯ୍ୟନ୍ତ ସେ ତାଙ୍କ ପଦବୀରେ ରହିଥାନ୍ତି । ଜଣେ ବିଚାରପତି ନିଜ ପଦର ଅପବ୍ୟବହାର କଲେ ବୋଧହୁଏ ଏଥିପାଇଁ ଆଇନଗତ ପ୍ରତିକାର ଥାଇପାରେ; କିନ୍ତୁ ପ୍ରକୃତ କ୍ଷେତ୍ରରେ ଏହି ପ୍ରଶ୍ନ କେବେହେଲେ ଉତ୍ଥାପିତ ହୋଇ ନ ଥିବାରୁ ଏ ସମ୍ବନ୍ଧରେ ଥିବା ଆଇନ ବିଷୟରେ ସନ୍ଦେହ ପ୍ରକାଶ ପାଇଥାଏ । ସଂସଦର ଉଭୟ ସଦନରେ ଗୋଟିଏ ପ୍ରସ୍ତାବ ଅନୁମୋଦନ କରିବା ଏଥିର ରାଜନୈତିକ ପ୍ରତିକାର ବୋଲି ୧୭୦୧ରେ ସିଂହାସନ ନିର୍ଣ୍ଣୟ ଅଧିନିୟମରେ ବ୍ୟବସ୍ଥା କରାଯାଇଅଛି । କିନ୍ତୁ ଏହି ପ୍ରତିକାର ଏ ପର୍ଯ୍ୟନ୍ତ କେବେହେଲେ ପ୍ରୟୋଗ କରାଯାଇ ନାହିଁ । ସମ୍ରାଟଙ୍କର ଅଧିକାଂଶ କର୍ମଚାରୀଙ୍କ ଦରମା ଯେପରି ଭାବରେ ପ୍ରତିବର୍ଷ ସଂସଦ ଦ୍ୱାରା ଗୃହୀତ ହୋଇଥାଏ, ବିଚାରପତିଙ୍କ ଦରମା ସେପରି ଗୃହୀତ ହୋଇ ନ ଥାଏ । ରାଣୀଙ୍କ ବ୍ୟକ୍ତିଗତ ବ୍ୟୟସୂଚୀ ପରି ବିଚାରପତିମାନଙ୍କ ଦରମା "ଘନୀଭୂତ ନିଧି" (Consolidated Fund)ରୁ ଖର୍ଚ୍ଚ କରାଯାଇଥାଏ । କୌଣସି ଯୁକ୍ତିଯୁକ୍ତ ପ୍ରସ୍ତାବ ଆଗତ କରାଯାଇ ନ ଥିଲେ ବିଚାରପତିମାନଙ୍କୁ ସଂସଦରେ ସମାଲୋଚନା କରାଯାଇ ନ ଥାଏ । ଏଥିରୁ ଏହା ସୂଚିତ ହୁଏ ଯେ, ନ୍ୟାୟିକ ପ୍ରଶାସନ କ୍ଷେତ୍ରରେ ଗୁରୁତର ତ୍ରୁଟି ଥିଲେ ସଂସଦ ଏହାକୁ ସମାଲୋଚନା କରିପାରେ; କିନ୍ତୁ କୌଣସି ଦୁର୍ବ୍ୟବହାରର ପ୍ରମାଣ ନ ଥିଲେ ବ୍ୟକ୍ତିଗତ ଭାବରେ ବିଚାରପତିମାନଙ୍କୁ ସଂସଦରେ ସମାଲୋଚନା କରାଯାଇପାରିବ ନାହିଁ । ଇଂଲଣ୍ଡରେ ନ୍ୟାୟିକ ପ୍ରଶାସନ କ୍ଷେତ୍ରରେ ରାଜନୈତିକ ହସ୍ତକ୍ଷେପକୁ ଏକ ଅଭିଶାପ ବୋଲି ଗ୍ରହଣ କରାଯାଇଥାଏ ।

ଉପରୋକ୍ତ ସାମ୍ବିଧାନିକ ବ୍ୟବସ୍ଥାଗୁଡ଼ିକ ନିମ୍ନସ୍ତରରେ ଥିବା ନ୍ୟାୟିକ ପ୍ରଶାସନକୁ ସମାନ ଭାବରେ ସୁରକ୍ଷା କରି ନାହିଁ । ତଥାପି ମଧ୍ୟ ଅଧସ୍ତନ ନ୍ୟାୟାଳୟ ଓ ତାର ବିଚାରପତି‌ମାନେ ସମାନ ଭାବରେ ସ୍ୱାଧୀନତା ଉପଭୋଗ କରି ଆସିଛନ୍ତି । ବିଚାରପତିମାନେ ଏପରି ଏକ ବୃତ୍ତିରୁ ଆସିଥାଆନ୍ତି, ଯେଉଁଥିରେ ସ୍ୱାଧୀନମତ ବ୍ୟକ୍ତ କରିବା ସେମାନଙ୍କ ଅଭ୍ୟାସ ରୂପେ ଗ୍ରହଣ କରାଯାଇଥାଏ । ଏହି ଯୁକ୍ତି ସମସ୍ତ ବୃତ୍ତିଗତ ନ୍ୟାୟାଧୀଶମାନଙ୍କ ପକ୍ଷରେ ପ୍ରଯୁଜ୍ୟ ହୋଇଥାଏ । ନ୍ୟାୟାଧୀଶମାନେ ସରକାରୀ କର୍ମଚାରୀ ନୁହଁନ୍ତି ଓ ସେମାନେ ସରକାରୀ ସେବାଗୋଷ୍ଠୀର ନ୍ୟାୟିକ ବିଭାଗର ସଭ୍ୟ ନୁହଁନ୍ତି । ସେମାନେ ଆଇନଜୀବୀମାନଙ୍କ ମଧ୍ୟରୁ

ବସ୍ତ୍ର ଯାଇ ଥାଆନ୍ତି ଓ ବୃତ୍ତି ଭାବରେ ଆଇନଜୀବୀ ସଂସ୍ଥାର ସ୍ୱାଧୀନତାର ଦୀର୍ଘ ପରମ୍ପରା ରହିଛି । ପୃଥିବୀର ସବ ପୁରାତନ ସଂସ୍ଥାର ସଭ୍ୟବୋଲି ଆଇନଜୀବୀମାନେ ଦାବୀ କରି ଥାଆନ୍ତି । ବୋଧହୁଏ ସେମାନଙ୍କର ଏହି ଦାବୀ ଯୁକ୍ତିଯୁକ୍ତ ନୁହେଁ, କାରଣ ସେମାନଙ୍କ ପୂର୍ବରୁ ଧର୍ମ-ଯାଜକମାନେ ଥିଲେ । ଅବଶ୍ୟ ଏକଥା କୁହାଯାଇପାରେ ଯେ ଇଂଲଣ୍ଡରେ ସୁସଂଗଠିତ ପେଶାଦାର ସଂସ୍ଥା ମଧ୍ୟରେ ଆଇନଜୀବୀ ସଂସ୍ଥା ପ୍ରାଚୀନତମ ଅଟେ । ଅଧିକାଂଶ ଦେଶରେ ଆଇନଜୀବୀମାନେ ବିଶ୍ୱବିଦ୍ୟାଳୟର ସ୍ନାତକ ଅଟନ୍ତି; କିନ୍ତୁ ଇଂଲଣ୍ଡରେ ୱେଷ୍ଟମିନ୍‌ଷ୍ଟରଠାରେ ଥିବା ରାଜାଙ୍କ ନ୍ୟାୟାଳୟର ଆଇନଜୀବୀମାନେ ସେମାନଙ୍କ ନିଜ ସଂଗଠନ ପ୍ରତିଷ୍ଠା କରିଛନ୍ତି ଓ ସେମାନେ ଏହାର ସଦସ୍ୟ ଗ୍ରହଣ କରିବା ପଦ୍ଧତିକୁ ନିୟନ୍ତ୍ରଣ କରୁଛନ୍ତି । ଅକ୍‌ସଫୋର୍ଡ ଓ କ୍ୟାମ୍ବ୍ରିଜ ବିଶ୍ୱବିଦ୍ୟାଳୟ ପରି "ଇନସ୍‌ଅଫ କୋର୍ଟ" ପ୍ରଥମେ ଏକ ବେସରକାରୀ ପ୍ରତିଷ୍ଠାନ ରୂପେ ଆରମ୍ଭ ହୋଇଥିଲା । କ୍ରମଶଃ "ସମ୍ପୂର୍ଣ୍ଣ ବାରିଷ୍ଟର" ଗ୍ରହଣ କରିବା ପାଇଁ ଓ ଯେଉଁ ବାରିଷ୍ଟରମାନେ ଓକିଲ ସଂସ୍ଥା ବାହାରେ କାର୍ଯ୍ୟ କରିବେ ସେମାନଙ୍କୁ ସଭ୍ୟଭୁକ୍ତ କରିବାପାଇଁ ଏହା ନିଜ ଏକଚାଟିଆ କ୍ଷମତା ଅତୁଟ ରଖିଥିଲେ । ଆଇନଜୀବୀ ସଂସ୍ଥାରେ ବ୍ୟବସାୟ କରୁଥିବା ସର୍ଜେଣ୍ଟ ଆଟ୍-ଲ ( Sergeants at-law ) ରାଜାଙ୍କ ଠାରୁ ଅଧିକାର ପତ୍ର ପାଉଥିଲେ ଓ ନିଜର "ଇନସ୍" ପ୍ରତିଷ୍ଠା କରିଥିଲେ । ସର୍ବୋଚ୍ଚ ନ୍ୟାୟାଳୟର ନ୍ୟାୟାଧୀଶମାନେ ସର୍ଜେଣ୍ଟମାନଙ୍କ ମଧ୍ୟରୁ ନିଯୁକ୍ତ ହେଉଥିଲେ ଓ ସେମାନେ "ସର୍ଜେଣ୍ଟଇନସ୍"ର ସଭ୍ୟ ହୋଇ ରହୁଥିଲେ । ସର୍ଜେଣ୍ଟ ବ୍ୟବସ୍ଥା ଲୋପ ପାଇବା ପରେ ରାଜାଙ୍କ ପରାମର୍ଶ ଦାତାମାନଙ୍କ ମଧ୍ୟରୁ ନ୍ୟାୟାଧୀଶ ବଛା ଯାଉଥିଲେ । ଆବଶ୍ୟକ ହେଲେ ରାଜାଙ୍କୁ ପରାମର୍ଶ ଦେବାପାଇଁ ପ୍ରମାଣପତ୍ର ଲାଭ କରିଥିବା ବାରିଷ୍ଟରମାନଙ୍କୁ ପରାମର୍ଶ ଦାତା ରୂପେ ନିଯୁକ୍ତ ଦିଆଯାଉଥିଲା । ସୁତରାଂ ସେମାନେ ଆଇନଜୀବୀ ସଂସ୍ଥା ମଧ୍ୟରେ ଓକିଲାତି କରିବାକୁ ହକଦାର ହେବା ସଙ୍ଗେ ସଙ୍ଗେ ନିଜ "ଇନ୍‌ସର" ସଭ୍ୟରୂପେ ରହୁଥିଲେ । ଏହି ବ୍ୟବସ୍ଥା ଫଳରେ ନ୍ୟାୟାଧୀଶମାନେ ବର୍ତ୍ତମାନ ମଧ୍ୟ ଇନସ୍‌ର ସଭ୍ୟ ଭାବରେ ରହୁଛନ୍ତି । ସେମାନେ ଛାତ୍ର ହିସାବରେ ପ୍ରଥମେ "ଇନସ୍‌ରେ" ଯୋଗଦାନ କରି, ପରେ ଓକିଲାତି କରିବାପାଇଁ ଓକିଲ ସଂସ୍ଥାରେ ଯୋଗ ପାଇଥାନ୍ତି । ଓକିଲ ସଂସ୍ଥାରେ ଯଥାର୍ଥ ସହୃଦୟତା ଥାଏ । ଯେଉଁ ବାରିଷ୍ଟର ନ୍ୟାୟାଳୟରେ ସମ୍ମାନ ପାଇଥାଏ, ସେ ମଧ୍ୟ ନ୍ୟାୟାଳୟ ବାହାରେ ସେହି ସମ୍ମାନର ଅଧିକାରୀ ହୋଇ-ଥାଏ । ଏଠାରେ ବୃତ୍ତିଗତ ମତ ଉପରେ ମଧ୍ୟ ଗୁରୁତ୍ୱ ଦିଆଯାଇଥାଏ । ଏହି ମତ ମଧ୍ୟ କଡ଼ା ନ୍ୟାୟିକ ସ୍ୱାଧୀନତା ସପକ୍ଷରେ ଥାଏ । ଜଣେ ତୋଷାମୋଦକାରୀ ବିଚାରପତି କିମ୍ବା ରାଜନୈତିକ ଚାପ ବା ଜନମତର ଚାପରେ ନଇଁଯାଇଥିବା ବିଚାରପତିକୁ ନିଜ ଇନସ୍‌ରେ ତାଙ୍କ ସହକର୍ମୀମାନେ ତୀବ୍ର ନିନ୍ଦା କରି ଥାଆନ୍ତି । ସୁତରାଂ ସାମ୍ବିଧାନିକ ବ୍ୟବସ୍ଥା ଫଳରେ ନ୍ୟାୟପାଳିକାର ସ୍ୱାଧୀନତା ସଂରକ୍ଷିତ ହୋଇଛି, ବୃତ୍ତିଗତ ମତ ଫଳରେ ଏହା ସୁଦୃଢ଼ ହୋଇଛି ଓ ପରିଶେଷରେ ଏହା ଜନମତ ଉପରେ ସୁ-ପ୍ରତିଷ୍ଠିତ ହୋଇଛି ।

ନିଜକୁ ରକ୍ଷା କରିବାରେ ଆଇନଜୀବୀମାନେ ପଛଘୁଞ୍ଚା ଦେଇ ନ ଥାନ୍ତି । "ଜଣେ ବିଚାରପତି ପକ୍ଷରେ ଯାହା ଉଚିତ ବିବେଚିତ ହେବ" ତାହା ସେ କରିବେ ବୋଲି ଲର୍ଡ଼

ଲୋକ୍ ପ୍ରଥମ ଜେମସ୍‌ଙ୍କୁ କହିଥିଲେ । ବିଗତ ତୁଇଶହ ପଚାଶ ବର୍ଷ ଧରି ବିଚାରପତିମାନେ ଲୋକଙ୍କର ଏହି ଧ୍ୱନିକୁ ପ୍ରତିଧ୍ୱନିତ କରି ଆସୁଅଛନ୍ତି । ସ୍ୱସ୍ୱ ଅଧିକାର ବାହାରେ କାର୍ଯ୍ୟ କରି ନ ଥିଲେ କୌଣସି ନ୍ୟାୟାଧୀଶ ନ୍ୟାୟିକ ପ୍ରଶାସନ କ୍ଷେତ୍ରରେ ପ୍ରକାଶ କରାଯାଇଥିବା ଉକ୍ତି ପାଇଁ ଦାୟୀ ହୋଇ ନ ଥାନ୍ତି । ଏହି ବ୍ୟତିକ୍ରମ ଜଣେ ଉଚ୍ଚ ନ୍ୟାୟାଧୀଶଙ୍କ ପ୍ରତି ଲାଗୁ ହୋଇ ନ ଥାଏ, କାରଣ ତାଙ୍କର ଅସୀମ ଅଧିକାର ଥାଏ । ଏହା ବ୍ୟତୀତ ଅଦାଲତ ଅବମାନନା ଦୋଷ ମଧ୍ୟ ଅଛି ଓ ଏହା ଫଳରେ ନ୍ୟାୟାଧୀଶମାନଙ୍କୁ ପକ୍ଷପାତିତା କିମ୍ବା ଅଯୋଗ୍ୟତା ପରି ଅଭିଯୋଗରୁ ରକ୍ଷା କରାଯାଇଥାଏ ।

ସୁତରାଂ କେତେକ ସାମ୍ବିଧାନିକ ବ୍ୟବସ୍ଥା ଓ ଜନମତ ତଥା ବୃତ୍ତିଗତ ଶକ୍ତି ଫଳରେ ନ୍ୟାୟପାଳିକାର ସ୍ୱାଧୀନତା ରକ୍ଷା କରାଯାଇଛି । ବ୍ରିଟିଶ୍ ନ୍ୟାୟାଧୀଶମାନଙ୍କ ବିରୁଦ୍ଧରେ କଦାପି ପକ୍ଷପାତିତା ତୁର୍ନୀତି ବା ରାଜନୈତିକ ପ୍ରଭାବ ଅଭିଯୋଗ ହୋଇ ନାହିଁ । ଜଣେ ସାଧାରଣ ଇଂରେଜ ଲୋକର ବିଶେଷତ୍ୱ ତାଙ୍କଠାରେ ଦେଖିବାକୁ ମିଳେ । ସେମାନେ କେବଳ ସ୍ୱାଧୀନ ନୁହଁନ୍ତି, ବରଂ କଠୋରଭାବେ ସ୍ୱାଧୀନ ଅଟନ୍ତି । ଆଇନ ଯେଉଁ ବ୍ୟକ୍ତିଙ୍କ ସପକ୍ଷରେ ଥାଏ, ବିଚାରପତିମାନେ ମଧ୍ୟ ସେହି ବ୍ୟକ୍ତିର ସପକ୍ଷରେ ଥାଆନ୍ତି । ଆଇନରେ ଯାହା ଦୋଷ ତ୍ରୁଟି ଥାଉ ନା କାହିଁକି ବିଚାରପତିମାନେ କୌଣସି ଅନୁଗ୍ରହ ବା ଭୟ ନ ରଖି ଏହାକୁ ସ୍ୱାଧୀନ ଓ ଯଥାର୍ଥ ଭାବରେ ପ୍ରୟୋଗ କରନ୍ତି ବୋଲି ନାଗରିକମାନଙ୍କୁ ଆଶ୍ୱାସନା ଦିଆଯାଇଥାଏ ।

## ନ୍ୟାୟପାଳିକାର କାର୍ଯ୍ୟାବଳୀ ( Functions of the Judiciary )

ନ୍ୟାୟାଳୟଗୁଡ଼ିକର ପ୍ରଶାସନିକ କାର୍ଯ୍ୟକ୍ଷେତ୍ର ସମ୍ବନ୍ଧରେ ବିଭିନ୍ନ ମତାମତ ପ୍ରକାଶ ପାଇଥାଏ । ନ୍ୟାୟାଳୟଗୁଡ଼ିକର ତିନୋଟି ବିଶେଷତ୍ୱ ଅଛି । ସେଗୁଡ଼ିକ ସ୍ୱାଧୀନ ଓ ନିରପେକ୍ଷ । ଆଇନ କ୍ଷେତ୍ରରେ ତାଲିମପ୍ରାପ୍ତ ବ୍ୟକ୍ତିମାନଙ୍କ ଦ୍ୱାରା ସେଗୁଡ଼ିକ ପରିଚାଳିତ ( କେବଳ ଗ୍ରେଟ ଗ୍ରେଟ ସନ୍ଧ୍ୟା ନ୍ୟାୟାଳୟ ବ୍ୟତୀତ ) ଓ ସେହି ବ୍ୟକ୍ତିମାନଙ୍କର ବୈଷୟିକ ଜ୍ଞାନ ନ ଥିଲେ ବି ମାନବିକତା ସମ୍ବନ୍ଧରେ ବ୍ୟାପକ ଜ୍ଞାନ ଥାଏ । ପୁନଶ୍ଚ, ବିଳମ୍ବ ଓ ଖର୍ଚ୍ଚ ସାପେକ୍ଷ ହେଲେ ମଧ୍ୟ ନ୍ୟାୟାଳୟଗୁଡ଼ିକରେ ପ୍ରକୃତ ତଥ୍ୟ ପରିବେକ୍ଷଣ କରିବା ପାଇଁ ସୁଦକ୍ଷ ବ୍ୟବସ୍ଥା କରାଯାଇଥାଏ । ନ୍ୟାୟାଳୟଗୁଡ଼ିକ ସ୍ପଷ୍ଟ ଭାବରେ ଦେଓ୍ୱାନୀ ଓ ଫୌଜଦାରୀ ଅଧିକାର ଉପଭୋଗ କରିଥାଆନ୍ତି । ଅବଶ୍ୟ ଏହି ତୁଇଟି ମଧ୍ୟରେ ପାର୍ଥକ୍ୟ ନିର୍ଣ୍ଣୟ କରିବାରେ ଅସୁବିଧା ଦେଖାଯାଇଥାଏ । ରାଷ୍ଟ୍ର ଓ ଜନ୍ ଡୋଙ୍କ ମଧ୍ୟରେ ମତଭେଦ ଦେଖାଦେଲେ ତାହାକୁ ଆଉ ଜଣେ ନିରପେକ୍ଷ ମଧ୍ୟସ୍ଥ ସାଲିସ୍ କରିବା ଉଚିତ ନୁହେଁ । ଉଦାହରଣସ୍ୱରୂପ, ଗୋଟିଏ ସ୍ଥାନୀୟ ସଂସ୍ଥା ଏକ ବାଳଗୃହ ପ୍ରତିଷ୍ଠା କରିବାପାଇଁ କୌଣସି ସ୍ଥାନକୁ ଦଖଲ କଲେ ଏହାର ମାଲିକ ଅଭିଯୋଗ ଆଗତ କରିପାରେ । ଶେଷ ଜୀବନରେ ଶାନ୍ତିରେ ରହିବା ପାଇଁ ହୁଏତ ମାଲିକ ସେହି ସ୍ଥାନକୁ କିଣିଥିଲେ । ଏଥିପାଇଁ

ସମ୍ପୃକ୍ତ ମାଲିକଙ୍କୁ ଭଲ ଦାମ୍ ଦିଆ ହୋଇଥିଲେ ମଧ୍ୟ ଏହା ଦ୍ୱାରା ତାଙ୍କୁ ବହୁତ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲ । ଅବଶ୍ୟ ଏହିପରି ସମସ୍ୟା ନ୍ୟାୟାଳୟଦ୍ୱାରା ନିଷ୍ପତ୍ତି ହୋଇଥାଏ । ଅନ୍ୟ ଜମିକୁ ନ ନେଇ ସେହି ଜମିକୁ ନେବାର କାରଣ ସ୍ଥାନୀୟ ସଂସ୍ଥାର ଆଇନ ପରାମର୍ଶଦାତା ଦର୍ଶାଇଥାନ୍ତି । ଜନ୍-ଡୋ ସମ୍ମୁଖୀନ ହୋଇଥିବା ଅସୁବିଧା କଥା ତାଙ୍କ ପରାମର୍ଶଦାତା ମଧ୍ୟ କହନ୍ତି । ଏହି ଘଟଣାରେ ଜନ୍-ଡୋଙ୍କ ଅସୁବିଧା ଅପେକ୍ଷା ସମାଜର ଆବଶ୍ୟକତା ବେଶୀ କି ନାହିଁ ବୁଝାଇ ଦିଆଯାଇଥାଏ । ଅବଶ୍ୟ ଏହି ସରଳ ପ୍ରଶ୍ନର ଉତ୍ତର ପାଇଁ ବହୁ ବିଳମ୍ବ ଓ ଖର୍ଚ୍ଚାନ୍ତ ହେବାକୁ ପଡ଼ିଥାଏ । ନ୍ୟାୟାଳୟ ଅପେକ୍ଷା ସ୍ୱାୟତ୍ତ ଶାସନ ମନ୍ତ୍ରଣାଳୟର ଜଣେ ପରିଦର୍ଶକ ଏହି ପ୍ରଶ୍ନକୁ ଅତି ସହଜରେ ସମାଧାନ କରି ପାରନ୍ତି ଓ ଏଥିପାଇଁ ସମ୍ପୃକ୍ତ ପରିଦର୍ଶକଙ୍କର କେବଳ ଗସ୍ତ ଖର୍ଚ୍ଚହିଁ ଆବଶ୍ୟକ ହୋଇଥାଏ । ପୁନଶ୍ଚ ଜନ୍-ଡୋଙ୍କୁ ଯେଉଁ କ୍ଷତିପୂରଣ ଦିଆଯିବ ତାହା ମଧ୍ୟ ନ୍ୟାୟାଳୟ ବିଚାର କରିପାରେ ଓ ନ୍ୟାୟାଳୟରେ ଉଭୟ ପକ୍ଷ ଉଚିତ ଦାମ୍ ସମ୍ବନ୍ଧରେ ଅଭିଜ୍ଞ ସାକ୍ଷ୍ୟ ଦିଅନ୍ତି । ଅବଶ୍ୟ ଜଣେ ସ୍ୱାଧୀନ ମୂଲ୍ୟ ନିର୍ଦ୍ଧାରଣକାରୀଙ୍କୁ ଏହି କାର୍ଯ୍ୟ ଦିଆଗଲେ ତାହା ସହଜ ଓ ଶସ୍ତା ହୋଇଥାଏ । କେବଳ ଏହି ଗୋଟିଏ ପ୍ରକାର ମୋକଦ୍ଦମା ହୁଏ ନାହିଁ । ଜଣେ ବ୍ୟକ୍ତି ବେକାର କି ନାହିଁ ଓ ସେ ପ୍ରକୃତରେ କାର୍ଯ୍ୟ ଖୋଜୁଛନ୍ତି କି ନାହିଁ ତାହା ମଧ୍ୟ ନ୍ୟାୟାଳୟ ନିଷ୍ପତ୍ତି କରିଥାଏ । ସମ୍ପୃକ୍ତ ବ୍ୟକ୍ତି ପକ୍ଷରେ ଏହାର ଗୁରୁତ୍ୱ ଥାଏ । କାରଣ ଏହାଦ୍ୱାରା ସେ ବେକାରୀ ବୀମା ସୁଯୋଗ ପାଇବ କି ନାହିଁ ତାହା ନିଷ୍ପତ୍ତି ହୋଇଯାଏ । ସେ ଯାହା ହେଉନା କାହିଁକି ସମ୍ପୃକ୍ତ ବ୍ୟକ୍ତି ଯଦି କର୍ମଚାରୀଙ୍କ ବିରୁଦ୍ଧରେ ନ୍ୟାୟାଳୟରେ ଅଭିଯୋଗ କରନ୍ତି ତେବେ ସେ କଦାପି ନ୍ୟାୟ ପାଇବେ ନାହିଁ । ସମ୍ପୃକ୍ତ କର୍ମଚାରୀ ମଧ୍ୟ ଯଦି ବୀମା ସୁଯୋଗ ପାଉଥିବା ବ୍ୟକ୍ତିଙ୍କ ବିରୁଦ୍ଧରେ ନ୍ୟାୟାଳୟରେ ଅଭିଯୋଗ କରନ୍ତି ତାହାହେଲେ ସେ ମଧ୍ୟ ସେହି ସୁଯୋଗ କଦାପି ଉପଭୋଗ କରିପାରିବେ ନାହିଁ । ଏହି ପ୍ରକାର ଅନେକ ମକଦ୍ଦମା ଦେଖାଯାଏ ଏବଂ ଏଥିରେ ବିଳମ୍ବ ଓ ଖର୍ଚ୍ଚ ଉପରେ ଗୁରୁତ୍ୱ ଦିଆଯାଇଥାଏ । ଜଣେ ବିଶିଷ୍ଟ ବିଚାରପତି ଥରେ ମନ୍ତବ୍ୟ ଦେଇ କହିଥିଲେ—ନ୍ୟାୟାଳୟଗୁଡ଼ିକ ରିଜ ହୋଟେଲ ପରି ପ୍ରତ୍ୟେକ ବ୍ୟକ୍ତିଙ୍କ ପାଇଁ ଖୋଲିଅଛି "(The courts are open to every one like the Ritz Hotel)" ।

ଆଧୁନିକ ଯୁଗରେ ସାମାଜିକ ଓ ଅର୍ଥନୈତିକ ବ୍ୟାପାରରେ ରାଷ୍ଟ୍ର ଅଧିକ ହସ୍ତକ୍ଷେପ କରୁଥିବାରୁ ରାଷ୍ଟ୍ରର ଅଧିକାର ସୀମା ସମ୍ବନ୍ଧରେ ବହୁ ଯୁକ୍ତିତର୍କ କରାଯାଇପାରେ । କର୍ମଚାରୀମାନେ ନିଜର କ୍ଷମତା ପରିସର ବୃଦ୍ଧି କରିବା ପାଇଁ ଆଗ୍ରହୀ ଥିବାରୁ ସେମାନେ ନ୍ୟାୟାଳୟ କାର୍ଯ୍ୟରେ ହସ୍ତକ୍ଷେପ କରୁଛନ୍ତି ବୋଲି ଆଇନଜ୍ଞମାନେ ଆପତ୍ତି କରନ୍ତି । ୧୯୩୦ ବେଳକୁ ଦୁଇଖଣ୍ଡ ପୁସ୍ତକ ପ୍ରକାଶ ପାଇଥିଲା । ଗୋଟିଏ ହେଲା, "ବିଜୟୀ ଅମଲାତନ୍ତ୍ର" (Bureaucracy Triumphant) ଓ "ନୂତନ ସ୍ୱେଚ୍ଛାଚାର" (The New Despotism) । ଅପର ପକ୍ଷରେ କର୍ମଚାରୀମାନଙ୍କ ମତରେ ଆବଶ୍ୟକ

ସଂସ୍ଥାଗୁଡ଼ିକ ପାଇଁ ପ୍ରତିବନ୍ଧକ ଓ ଶତ୍ରୁତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଓକିଲମାନେ ମୋକଦ୍ଦମା କରନ୍ତି । ସରକାରୀ ସେବାଗୋଷ୍ଠୀ ଏକ ନୀରବଗୋଷ୍ଠୀ ହୋଇଥିବାରୁ ଏହା କୌଣସି ପୁସ୍ତକ ନ ଲେଖି ନିଜ ମତାମତ କେବଳ ଗୁପ୍ତ ଫାଇଲମାନଙ୍କରେ ଲେଖିଥାନ୍ତି । ଏଥିରୁ ବୋଧହୁଏ ଏକଥା ଜଣାପଡ଼ିଥିଲି ଯେ, କ୍ଷମତା ପରିସର ବୃଦ୍ଧି ବିରୁଦ୍ଧରେ ଆପତ୍ତି କରୁଥିବା ଲୋକେ ସମକ୍ଷବରେ ପ୍ରଣୀତ ଆଇନର ପ୍ରକୃତି ସମ୍ବନ୍ଧରେ ଆପତ୍ତି କରିଥିଲେ । ପୁଣି ଯେପରି ଅଧିକ କାର୍ଯ୍ୟର ଅର୍ଥ ଅଧିକ କର୍ମଚାରୀ ନିଯୁକ୍ତି ଠିକ୍ ସେହିପରି ଓକିଲଙ୍କ ପକ୍ଷରେ ଅଧିକ କାର୍ଯ୍ୟର ଅର୍ଥ ଅଧିକ ପାଉଣା ( fees ) ଉପାର୍ଜନ ବୁଝାଇଥାଏ ।

କେତେକ ବିଷୟକୁ "କାର୍ଯ୍ୟ ପାଳକ" କିମ୍ବା "ପ୍ରଶାସକ" ଓ ଆଉ କେତେକ ବିଷୟକୁ "ନ୍ୟାୟିକ" କାର୍ଯ୍ୟରୂପେ ଶ୍ରେଣୀ ବିଭାଗ କରାଯାଇ ପାରିବ ବୋଲି ଧାରଣା ଯୋଗୁ ଜଟିଳ ସମସ୍ୟା ଉପୁଜିଛି । ଅଧୁନା ଗୁରୁତ୍ୱ ହରାଇଥିବା "ବୈଧାନିକ" କାର୍ଯ୍ୟ ହେଉଛି ତୃତୀୟ ଶ୍ରେଣୀର କାର୍ଯ୍ୟ । ସରକାରୀ ସେବାଗୋଷ୍ଠୀ ଏହି କାର୍ଯ୍ୟରେ ମଧ୍ୟ ହସ୍ତକ୍ଷେପ କରୁଛନ୍ତି ବୋଲି କୁହାଯାଇଥାଏ । ଏହି ତ୍ରିବିଧ କ୍ଷମତା ପୃଥକ୍ କରଣ ବିଷୟରେ ପ୍ରଥମେ ଆରିଷ୍ଟଟଲ ଲେଖିଥିଲେ । ଗୌରବଜନକ ବିପ୍ଳବ ( The Glorious Revolution )ର ସମର୍ଥକ ଜନ୍ ଲକ୍, ଏହି ବିଷୟରେ ନିଜର ମତାମତ ବ୍ୟକ୍ତ କରିଥିଲେ ଓ ଇଂରାଜୀ ସମ୍ବିଧାନକୁ ଅନୁଧ୍ୟାନ କରିବା ପରେ ମଣ୍ଟେସ୍କ୍ୟୁ ବି ଏହାର ବିଶଦ ବ୍ୟାଖ୍ୟା କରି ଏହାକୁ ଏକ ନୀତିରୂପେ ଗ୍ରହଣ କରିଥିଲେ । ବାସ୍ତବରେ ଆଧୁନିକ ଶ୍ରେଣୀ ବିଭାଗ ମଣ୍ଟେସ୍କ୍ୟୁଙ୍କ ଆଧୁନିକ ଅବଦାନ ନୁହେଁ । ଏହି ତଥ୍ୟ ମାଡ଼ିସନ୍ "ଦି ଫେଡ଼େରାଲିଷ୍ଟ" (The Federalist) ପୁସ୍ତକରେ ପ୍ରକାଶ କରିଛନ୍ତି । ଏହି ପୁସ୍ତକଟି ଯୁକ୍ତରାଷ୍ଟ୍ର ଆମେରିକାର ତଠା ସମ୍ବିଧାନକୁ ସମର୍ଥନ କରିବାପାଇଁ ରଚିତ ହୋଇଥିଲି । ଲଣ୍ଡନରେ ତିନିଗୋଟି କେନ୍ଦ୍ରୀୟ କ୍ଷମତାସୀନ ସଂସ୍ଥା ଥିବା ଫଳରେ ଏହି ନୀତିର ଯଥାର୍ଥତା ପ୍ରତିପାଦିତ ହୋଇଥାଏ । ଓ୍ୱେଷ୍ଟମିନଷ୍ଟରଠାରେ ସଂସଦ, ହ୍ୱାଇଟ ହଲରେ ପ୍ରାପ୍ତ ସମସ୍ତ ସରକାରୀ ବିଭାଗ ଓ ଷ୍ଟ୍ରାଣ୍ଡଠାରେ ରାଜାଙ୍କ ବିଚାର ନ୍ୟାୟାଳୟ ଯଥାର୍ଥରେ ତିନିଗୋଟି ସ୍ୱତନ୍ତ୍ର ସଂସ୍ଥା ପରି ଅଛନ୍ତି । ଏହି ଭୌଗୋଳିକ ବିଭାଜନ ସମ୍ପୂର୍ଣ୍ଣରୂପେ ଇତିହାସରେ ଏକ ଆକସ୍ମିକ ଘଟଣା ନୁହେଁ । ଆମ ସରକାରୀ ପଦ୍ଧତି ପ୍ରତି ଉପରୋକ୍ତ ତିନି ବିଭାଗର ଯଥେଷ୍ଟ ଅବଦାନ ଅଛି । ଏକଥା ନିର୍ବିଘ୍ନରେ କୁହାଯାଇପାରେ ଯେ, ଓ୍ୱେଷ୍ଟମିନ୍ଷ୍ଟରଠାରେ ଥିବା ଆମ ପ୍ରତିନିଧିମାନେ ଫୌଜଦାରୀ ଆଇନ ପ୍ରଣୟନ କରନ୍ତି । ଜଣେ ଦୋଷୀର ବିଚାର ଅନ୍ୟ କୌଣସିଠାରେ ନ ହୋଇ ଷ୍ଟ୍ରାଣ୍ଡଠାରେ ଥିବା ଜଣେ ନିରପେକ୍ଷ ବିଚାରପତିଙ୍କ ଇଜଲାସରେ ହୋଇଥାଏ ଏବଂ ଉକ୍ତ ଦୋଷୀର ଦୋଷ ପ୍ରମାଣିତ ହେଲେ ତାକୁ ଜେଲ ଭୋଗକରିବାକୁ ହୋଇଥାଏ ଏବଂ ହ୍ୱାଇଟ ହଲ ଦ୍ୱାରା ନିୟନ୍ତ୍ରିତ ଜେଲରେ ତାକୁ ରହିବାକୁ ପଡ଼ିଥାଏ ।

"କାର୍ଯ୍ୟ ପାଳିକା" ଓ "ନ୍ୟାୟପାଳିକା" କାର୍ଯ୍ୟଗୁଡ଼ିକର ସଂଜ୍ଞା ଦେବା କଷ୍ଟକର । ହ୍ୱାଇଟହଲ୍ ଓ ଷ୍ଟ୍ରାଣ୍ଡ ମଧ୍ୟରେ ଥିବା ପାର୍ଥକ୍ୟ ଅଭିଜ୍ଞତା-ସିଦ୍ଧ ହୋଇଥିଲେ ମଧ୍ୟ ଏହି ପାର୍ଥକ୍ୟ ଯେ,

ନିତାନ୍ତ ମୂଳମୁକ୍ତ ଏହା କହିହେବ ନାହିଁ । ସାମ୍ବିଧାନିକ ଆଇନ ହେଉ ବା ହେବା ପରିବର୍ତ୍ତେ ଅଭିଜ୍ଞତା ଉପରେ ପ୍ରତିଷ୍ଠିତ ହୋଇଥାଏ । ବେଳେ ବେଳେ ଏହା ଅଭିଜ୍ଞତା ଅଥବା ସମୀଚୀନତା ଉପରେ ନିର୍ଭର ନ କରି ଇତିହାସରୁ ସମ୍ଭୂତ ହୋଇଥାଏ । ଦେବାଳିଆ ଭୂସମ୍ପତ୍ତିର ପରିଚାଳନା, ଗ୍ରୀନ୍‌ ସେଣ୍ଟର ଓ୍ୱାର୍ଡ଼ମାନଙ୍କର ଯତ୍ନ ଓ ଟ୍ରଷ୍ଟମାନଙ୍କର ଦାୟିତ୍ୱ ହୁଏତ ଷ୍ଟାଣ୍ଡ ଅଥବା ହ୍ୱାଇଟ୍‌ ହଲ୍‌କୁ ଦିଆଯାଇପାରେ । କେତେଗୁଡ଼ିଏ ଅଧିନିୟମକୁ ନ୍ୟାୟପାଳିକା ଓ ଆଉ କେତେଗୁଡ଼ିଏ ଅଧିନିୟମକୁ କାର୍ଯ୍ୟପାଳିକା ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇପାରିବ ନାହିଁ । ବିଂଶ ଶତାବ୍ଦୀରେ ଆଇନଜ୍ଞମାନଙ୍କ ସମାଲୋଚନା ଫଳରେ ଲର୍ଡ଼ ଚାନ୍‌ସେଲର୍‌ ମନ୍ତ୍ରୀମାନଙ୍କ କ୍ଷମତା ସମ୍ବନ୍ଧରେ ଗୋଟିଏ ସମିତି ( A Committee on Minister's Powers ) ନିଯୁକ୍ତ କରିଥିଲେ ଓ ଏହି ସମିତି ୧୯୩୨ରେ ନିଜ ବିବରଣୀ ପ୍ରକାଶ କରିଥିଲେ । "ନ୍ୟାୟିକ" କାର୍ଯ୍ୟର ବ୍ୟାଖ୍ୟା କରିବା ପାଇଁ ଏହି ସମିତି ସମସ୍ତ ଚେଷ୍ଟା କରି ସୁଦ୍ଧା କେବଳ "ନ୍ୟାୟିକ" ପଦ୍ଧତିର ସଂଜ୍ଞା ଦେଇଥିଲେ; ଏଥିରେ ବି ସଫଳ ହୋଇ ପାରିଲେ ନାହିଁ । ତଥାପି ଏହା କେତେଗୁଡ଼ିଏ "ଅର୍ଦ୍ଧନ୍ୟାୟିକ" ( quasi-judical ) କାର୍ଯ୍ୟର ତାଲିକା କରିଥିଲେ । ଗୋଟିଏ ହାତୀ ଏକ ହାତୀଛୁଆ ଜନ୍ମ କଲେ ଏହାକୁ ହାତୀ କହିବା ଯାହା, କୌଣସି କାର୍ଯ୍ୟରେ ନ୍ୟାୟିକ ପଦ୍ଧତି ବ୍ୟବହୃତ ହେଉଥିବାରୁ ତାହାକୁ ନ୍ୟାୟିକ କାର୍ଯ୍ୟ କହିବା ଠିକ୍‌ ତାହା । ଏଠାରେ ପ୍ରଶ୍ନ ହେଉଛି କୌଣସି କାର୍ଯ୍ୟ ହ୍ୱାଇଟ୍‌ ହଲକୁ ଦିଆଗଲେ ସେଠାରେ ପ୍ରଶାସନିକ ପଦ୍ଧତି ଅନୁସରଣ କରାଯାଇଥାଏ କିମ୍ବା ଷ୍ଟାଣ୍ଡକୁ ଦିଆଗଲେ ସେଠାରେ ନ୍ୟାୟିକ ପଦ୍ଧତି ଅନୁସୃତ ହୋଇଥାଏ । ତଥାପି ଏହା ମଧ୍ୟ ଠିକ୍‌ ଭାବରେ କୁହାଯାଇ ନ ଥାଏ, କାରଣ "ପ୍ରଶାସନିକ ପଦ୍ଧତି" ଓ "ନ୍ୟାୟିକ ପଦ୍ଧତି"ର ସଂଜ୍ଞା ସହଜରେ ଦିଆଯାଇପାରିବ ନାହିଁ ।

ରାଜାଙ୍କ ନୌ-ବିଭାଗର ଦାୟିତ୍ୱ ହ୍ୱାଇଟ୍‌ ହଲ୍‌କୁ ଓ ଦୋଷପାଇଁ ଅଭିଯୁକ୍ତ ବ୍ୟକ୍ତିକୁ ଦଣ୍ଡଦେବା ଦାୟିତ୍ୱ ଷ୍ଟାଣ୍ଡକୁ ଅର୍ପଣ କରିବା ପାଇଁ କୌଣସି ଯୁକ୍ତିର ଆବଶ୍ୟକତା ନାହିଁ । ଭାଙ୍ଗି ଯାଇଥିବା ନର୍ଦ୍ଦମାକୁ ମରାମତି କରିବା ପାଇଁ, ଜଣେ ସ୍ୱାସ୍ଥ୍ୟରକ୍ଷା ପରିଦର୍ଶକ ନିର୍ଦ୍ଦେଶ ଦେବେ ନା ଜଣେ ବିଚାରପତି ଦେବେ ତାହା ସହଜରେ ନିଷ୍ପତ୍ତି କରି ହୋଇ ନ ଥାଏ । ଆଧୁନିକ ରାଷ୍ଟ୍ରରେ ଅନେକ କାର୍ଯ୍ୟ ଏହିପରି ପ୍ରଶାସନର ସୀମା ମଧ୍ୟରେ ରହିଥାଏ । ଜଣେ କର୍ମଚାରୀ ବା ଗୋଟିଏ ନ୍ୟାୟାଳୟକୁ କୌଣସି କାର୍ଯ୍ୟ ଦେବାରେ ଉଭୟ ଦୋଷଗୁଣ ଥାଇ-ପାରେ । ଅବଶ୍ୟ ଏହି କ୍ଷେତ୍ରରେ କର୍ମଚାରୀ ଜଣକର ଅଧିକ ଅଭିଜ୍ଞତା ଥାଏ ଓ କୌଣସି ତ୍ରୁଟିର ପରିଣତି ସମ୍ବନ୍ଧରେ ସେ ବେଶୀ ଅବହିତ ଥାଏ ( ଉଦାହରଣସ୍ୱରୂପ, ଭାଙ୍ଗି ଯାଇଥିବା ନର୍ଦ୍ଦମା ବିଷୟକୁ ବିଚାରକୁ ନିଆଯାଇପାରେ ) । ସୁତରାଂ ଏହି କ୍ଷେତ୍ରରେ କାର୍ଯ୍ୟଟି ଶୀଘ୍ର ଓ ଶସ୍ତାରେ କରାଯାଇପାରେ । ଅପର ପକ୍ଷରେ ଜଣେ ବିଚାରପତି ସ୍ୱାଧୀନ ଓ ତାଙ୍କ ନିଜର କୌଣସି ସ୍ୱାର୍ଥ ନ ଥାଏ । କୌଣସି ନିଷ୍ପତ୍ତି ନେବା ପୂର୍ବରୁ ସେ ଅଧିକ ସତର୍କତା ଅବଲମ୍ବନ କରି ଥାଆନ୍ତି ଓ କୌଣସି ବିଷୟକୁ ସେ ନିଜ ଅଭିଜ୍ଞତା ବଳରେ ଭଲ ଭାବରେ ବିଚାର

କରି ଥାଆନ୍ତି । ସାଧାରଣତଃ ନାଗରିକର ସ୍ୱାର୍ଥ ପ୍ରତି ସେ ଅଧିକ ଦୃଷ୍ଟି ଦେଇଥାଆନ୍ତି । ଏହି ଅବସ୍ଥାରେ ଜଣେ ବ୍ୟକ୍ତି ଉଭୟ ପଦ୍ଧତିର ଉପକାରିତା ଓ ଅପକାରିତାକୁ ତୁଳନା କରିଥାନ୍ତି ।

କୌଣସି ବିବାଦ ଦେଖାଗଲେ ତତ୍ ସମ୍ବନ୍ଧୀୟ ଧାରଣା ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ । ଯଦ୍ୟପି ବ୍ୟକ୍ତିଗତ ଅଧିକାର କ୍ଷେତ୍ରରେ ଅଧିକ ସାବଧାନ ହେବା ଉଚିତ୍, ସରକାରୀ କର୍ମଚାରୀ ଜଣକ ହୁଏତ ଅତ୍ୟାଗ୍ରହୀ କିମ୍ବା ଧୈର୍ଯ୍ୟ-ହୀନ ହୋଇ ପାରନ୍ତି ଏବଂ ବିଚାରପତି ଜଣକ ସର୍ବଦା ସତର୍କ ଓ ନିରପେକ୍ଷ ବୋଲି ଧାରଣା ଥାଏ । ଅବଶ୍ୟ ମନ୍ତ୍ରି-ମଣ୍ଡଳୀୟ କ୍ଷମତା ସମ୍ବନ୍ଧୀୟ ସମିତି ପ୍ରଶାସନିକ କାର୍ଯ୍ୟ ଠାରୁ ନ୍ୟାୟିକ କାର୍ଯ୍ୟକୁ ପୃଥକ୍ କରି ଦେଖାଇବାରେ ସଫଳ ହୋଇ ନ ଥିଲେ ତଥାପି କାର୍ଯ୍ୟପାଳିକାର କ୍ରମବର୍ଦ୍ଧିଷ୍ଣୁ କ୍ଷମତା ଲାଳସାକୁ ପ୍ରତିହତ କରିବା ପାଇଁ ଉପାୟ ବତାଇବାରେ ସେମାନେ କେତେକାଂଶରେ ସଫଳ ହୋଇଥିଲେ । ଇଂରାଜ ଆଇନ ବ୍ୟବସ୍ଥାରେ ନାଗରିକର ସ୍ୱାର୍ଥ ସଂରକ୍ଷିତ ହୋଇଥାଏ ଓ ଏହାହିଁ ଉପରୋକ୍ତ ଘଟଣାରୁ ସୂଚିତ ହୁଏ ।

ସର୍ବୋପରି ପ୍ରଶାସନିକସଂସ୍ଥା ଗୁଡ଼ିକୁ ନିୟନ୍ତ୍ରଣ କରିବା ପାଇଁ ନ୍ୟାୟାଳୟଗୁଡ଼ିକ ଗୋଟିଏ ପଦ୍ଧତି ବାହାର କରିଛନ୍ତି । କୌଣସି କର୍ମଚାରୀକୁ ସଂସଦ ଦ୍ୱାରା କୌଣସି କ୍ଷମତା ଦିଆହେଲେ, ନ୍ୟାୟାଳୟ ଦ୍ୱାରା ତାହା ସ୍ୱୀକୃତ ହେବା ଆବଶ୍ୟକ ଏବଂ ନାଗରିକର ସ୍ୱାର୍ଥକୁ ବାଧା ନ ଦେବା ପାଇଁ ଉକ୍ତ କ୍ଷମତା ବ୍ୟବହୃତ ହେବା ଉଚିତ୍ ବୋଲି ନ୍ୟାୟାଳୟ କହି ପାରନ୍ତି । ସଂସଦ କୌଣସି ପଦ୍ଧତି ନିର୍ଣ୍ଣୟ କରିଥିଲେ, ଏହି ପଦ୍ଧତିର ଯଥାର୍ଥତା ନ୍ୟାୟାଳୟ ଗୁଡ଼ିକ ଦ୍ୱାରା ସ୍ୱୀକୃତ ହେବା ଆବଶ୍ୟକ । ଏହାକୁ ସ୍ୱାଧୀନ ଓ ଉଦ୍ଦେଶ୍ୟହୀନ ଭାବରେ ପ୍ରୟୋଗ କରାଯିବା ଉଚିତ । ପୁନଶ୍ଚ କୌଣସି କର୍ମଚାରୀ ନିଜ କ୍ଷମତା ବହିର୍ଭୂତ କାର୍ଯ୍ୟ ଯେପରି ନ କରେ ତାହା ଦେଖିବା ନ୍ୟାୟାଳୟର କର୍ତ୍ତବ୍ୟ । କର୍ମଚାରୀଙ୍କ କାର୍ଯ୍ୟରେ ବୈଧତା ଥିଲେ ଓ ସେ ସାଧାରଣ ସ୍ୱାର୍ଥ ପାଇଁ ଉକ୍ତ କାର୍ଯ୍ୟ କରିଥିଲେ କିମ୍ବା କୌଣସି ଉଚ୍ଚ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶାନୁସାରେ ଓ ରାଣୀଙ୍କ ନାମରେ ଏହା କରିଥିଲେ ତାଙ୍କ ପକ୍ଷ ସମର୍ଥନ କରି ଏକଥା ନ୍ୟାୟାଳୟରେ କୁହାଯାଇପାରେ । ରାଣୀ ଓ ତାଙ୍କ କର୍ମଚାରୀମାନଙ୍କର ବ୍ୟାପକ କ୍ଷମତା ଥାଏ; କିନ୍ତୁ ସେହି କ୍ଷମତାଗୁଡ଼ିକର ସଂଜ୍ଞା ସ୍ପଷ୍ଟ ଭାବରେ ଆଇନଦ୍ୱାରା ନିର୍ଣ୍ଣୟ କରାଯିବା ଉଚିତ । ଏପରି କି ଜରୁରୀ ଅବସ୍ଥା ବେଳେ ବିଶେଷ କ୍ଷମତା ଥିଲେ ମଧ୍ୟ ଏହାର ସୀମା ନିର୍ଣ୍ଣୟ କରାଯାଇଥାଏ ଏବଂ ରାଣୀଙ୍କ ସରକାର ସଂସଦର ସ୍ପଷ୍ଟ ଅନୁମତି ନ ନେଇ ଉକ୍ତ ସୀମା ଅତିକ୍ରମ କରିବାକୁ ସାହସ କରି ନ ଥାନ୍ତି । ଯୁଦ୍ଧ ସମୟରେ ଆଇନ କାର୍ଯ୍ୟ କରେ ନାହିଁ । ( Inter arma silent leges ) ବୋଲି ନୀତିବାକ୍ୟ ଲିଙ୍କନଙ୍କ ଇନ ( Lincoln's In )ର ମୂକ ସ୍ମାରକୀ ଉପରେ ଲେଖା ହୋଇଛି । ଏହି ନୀତିଟି ମଧ୍ୟ ଆଇନର ଏକ ନିଦର୍ଶନ । ଏହା "ସିପ୍‌ମନି" ମକଦ୍ଦମାରେ ( The case of Shipmoney ) ନିଷ୍ପତ୍ତି ହୋଇଥିଲା ଓ ଏଠାରେ ସଂଖ୍ୟାଗରିଷ୍ଠ ମତକୁ ଭୁଲ ବୋଲି ସଂସଦ ଘୋଷଣା କରିଥିଲା । ଯୁଦ୍ଧ ସମୟରେ ରାଣୀ ବ୍ୟାପକ କ୍ଷମତାର ଅଧିକାରିଣୀ ହୋଇ-

ଥାନ୍ତି, କିନ୍ତୁ ସେତେବେଳେ ଆଇନଗୁଡ଼ିକ ନୀରବ ରହି ନ ଥାନ୍ତି । ତଥାପି ସେତେବେଳେ ରାଣୀଙ୍କ କ୍ଷମତା ଆଇନ ଦ୍ୱାରା ନିର୍ଣ୍ଣୀତ ହୋଇଥାଏ ଏବଂ ଉକ୍ତ କ୍ଷମତାର ସୀମା ଅତିକ୍ରମ କଲେ ତାଙ୍କ ପ୍ରଜାମାନେ ଆଇନାନୁମୋଦିତ ପ୍ରତିବିଧାନ ପନ୍ଥାର ଆଶ୍ରୟ ନେଇ ପାରନ୍ତି ।

ପ୍ରଜାମାନଙ୍କ ସ୍ୱାଧୀନତାକୁ ସୁରକ୍ଷା କରିବା ପାଇଁ ବନ୍ଦୀ ପ୍ରତ୍ୟକ୍ଷୀକରଣ-( Habeas Corpus ) ନିର୍ଦ୍ଦେଶନାମା ଚୂଡ଼ାନ୍ତ ଆଇନ ସମ୍ମତ ପ୍ରତିକାର ଥିଲା ଓ ଏବେ ମଧ୍ୟ ଅଛି ଏବଂ ଏଥିପାଇଁ ଇଂଲଣ୍ଡ ଇତିହାସରେ ଏହାର ଗୁରୁତ୍ୱ କ୍ରମଶଃ ବୃଦ୍ଧି ପାଉଛି । ଏହିପରି ଏକ ବୈଷୟିକ ପ୍ରତିକାର ବିଷୟ ରାଜନୈତିକ ଆନ୍ଦୋଳନର ବିଷୟବସ୍ତୁ ଥିବା ଇଂରେଜମାନଙ୍କ ସ୍ୱାଧୀନତାର ବିଶେଷତ୍ୱ ଅଟେ । ଯଦି ନ୍ୟାୟାଳୟ ଏହାକୁ କାର୍ଯ୍ୟକାରୀ କରିବାକୁ ନ ଥାନ୍ତା କିମ୍ବା ଏହାର ପ୍ରତିକାର ବ୍ୟବସ୍ଥା କରିବା କ୍ଷମତା ନ୍ୟାୟାଳୟର ନ ଥାନ୍ତା, ତେବେ ବ୍ୟକ୍ତି-ଗତ ସ୍ୱାଧୀନତା ଅଧିକାର ନିରର୍ଥକ ହୋଇଥାନ୍ତା । ଅବଶ୍ୟ ଏଥିପାଇଁ ଅନ୍ୟାନ୍ୟ ପ୍ରତିକାର ବ୍ୟବସ୍ଥା ଅଛି ଓ ଆଧୁନିକ ଯୁଗରେ ଏହା ବହୁଳ ଭାବରେ ଆବଶ୍ୟକ ହେଉଛି । ପ୍ରତିଷେଧ ( Prohibition ) ସମାଦେଶ ବଳରେ ଗୋଟିଏ ନ୍ୟାୟାଳୟ ତାର ଅଧସ୍ତନ ନ୍ୟାୟାଳୟକୁ କୌଣସି ବିଷୟ ବିଚାର କରିବା ପାଇଁ ବାରଣ କରିଥାଏ । ଅଧିକାର ନ ଥାଇ କୌଣସି ବିଷୟରେ ନିଷ୍ପତ୍ତି ନିଆଯାଇ ଥିଲେ ଉତ୍‌ପ୍ରେଷଣ ( Certiorari ) ସମାଦେଶ ବଳରେ ତାହାକୁ ରଦ କରି ଦିଆଯାଇପାରେ । ପରମାଦେଶ ( Mandamus ) ସମାଦେଶ ବଳରେ କର୍ତ୍ତବ୍ୟ ଅର୍ପଣ କରାଯାଇଥିବା କୌଣସି କାର୍ଯ୍ୟ କରିବା ପାଇଁ କୌଣସି କର୍ମଚାରୀକୁ ବାଧ୍ୟ କରାଯାଇପାରେ । 'ଅଧିକାର ପ୍ରଶ୍ନ ( Quo—Warranto ) ସମାଦେଶ ଦ୍ୱାରା କୌଣସି କର୍ମଚାରୀଙ୍କୁ ତାଙ୍କର ନିଜର ପଦରେ ରହିବାର ଯଥାର୍ଥତା ଦର୍ଶାଇବା ପାଇଁ ବାଧ୍ୟ କରାଯାଇଥାଏ । ଅଧିକ ଦ୍ରୁତ, ଶସ୍ତା ଓ ଦୃଢ଼ ପ୍ରତିକାର ବ୍ୟବସ୍ଥା ଫଳରେ ସେହି ସମାଦେଶ ଗୁଡ଼ିକୁ ଅତିକ୍ରମ କରାଯାଇଅଛି, କିନ୍ତୁ ଆଇନରେ ସେ ସମ୍ବନ୍ଧରେ ଆବଶ୍ୟକୀୟ ବ୍ୟବସ୍ଥା କରାଯାଇଅଛି । ଜଣେ କର୍ମଚାରୀ ଆଇନ ଅନୁସାରେ ନିଜ କାର୍ଯ୍ୟ କରେ ଓ ସେ ନିଜ କ୍ଷେତ୍ରାଧିକାରକୁ ଅତିକ୍ରମ କରେ ନାହିଁ । ସେ ତାଙ୍କ କାର୍ଯ୍ୟଗୁଡ଼ିକୁ ଉତ୍ତମ ଓ ନିରପେକ୍ଷ ଭାବରେ କରିବେ ବୋଲି ଆଶା କରାଯାଏ ।

ଆହୁରି ମଧ୍ୟ ନିଜ କର୍ତ୍ତବ୍ୟ ସମ୍ପାଦନ ବେଳେ ଜଣେ କର୍ମଚାରୀ କୌଣସି ଭୁଲ କଲେ ଜଣେ ନାଗରିକ ହିସାବରେ ସେ, ସେଥିପାଇଁ ବ୍ୟକ୍ତିଗତ ଭାବରେ ଦାୟୀ ରହନ୍ତି ଓ ନ୍ୟାୟାଳୟରେ ତାଙ୍କ ନାମରେ ମକଦ୍ଦମା କରାଯାଇପାରେ । ବାସ୍ତବ କ୍ଷେତ୍ରରେ ଏହି ପ୍ରଶଂସନୀୟ ନୀତିଟି ପ୍ରଥମରୁ ଏପରି ନ ଥିଲା । ଚୁକ୍ତିଭଙ୍ଗ ବିରୁଦ୍ଧରେ ଏହି ପଦ୍ଧତି ବାହାର କରାଯାଇ ଥିଲେ ବି ( ଅଧିକାର ପତ୍ର ଅନୁଯାୟୀ ) ରାଣୀଙ୍କୁ ନିଜର ନ୍ୟାୟାଳୟରେ ଦୋଷୀ ସାବ୍ୟସ୍ତ କରାଯାଇ ପାରୁ ନ ଥିଲା । କର୍ମଚାରୀମାନେ ତାଙ୍କ ସେବକ ହୋଇଥିବାରୁ ତାଙ୍କ କ୍ଷମତା ସେମାନଙ୍କ ମାଧ୍ୟମରେ ବ୍ୟବହୃତ ହେଉଥିଲା । ସୁତରାଂ ନିଜ କର୍ତ୍ତବ୍ୟ ସମ୍ପାଦନ

ବେଳେ ଗୋଟିଏ ଘରୋଇ ମଟରଗାଡ଼ିର ଚାଳକର ଅବହେଳା ପାଇଁ ତାଙ୍କ ମାଲିକ ଦାୟୀ ହେଉଥିଲା ବେଳେ ଗୋଟିଏ ସୈନ୍ୟବାହିନୀର ମଟର ଚାଳକର ଅବହେଳା ପାଇଁ ତାଙ୍କ ମାଲିକ ଦାୟୀ ହେଉ ନ ଥିଲେ, କାରଣ ରାଣୀ ହିଁ ତାଙ୍କର ନିଯୁକ୍ତିକାରୀ ଥିଲେ । ବାସ୍ତବ କ୍ଷେତ୍ରରେ ଏହି ସମସ୍ୟା ବିଶେଷ ଗୁରୁତ୍ୱପୂର୍ଣ୍ଣ ନ ଥିଲା, କାରଣ ରାଣୀ ସାଧାରଣତଃ କ୍ଷତି-ପୂରଣ ଦେଉଥିଲେ । ତଥାପି ଏହିପରି କ୍ଷତିପୂରଣ ମାଗିବା ପାଇଁ କୌଣସି ଆଇନଗତ ଅଧିକାର ନ ଥିଲା ଓ ଏଥିପାଇଁ ୧୯୪୭ରେ ଆଇନକୁ ପରିବର୍ତ୍ତିତ କରାଯାଇଥିଲା ।

## ଆଇନାନୁମୋଦିତ ଶାସନ ( Government According to Law )

ଉପରୋକ୍ତ ଆଲୋଚନା ଦ୍ୱାରା ଆମ୍ଭେମାନେ ଗୋଟିଏ ବୃତ୍ତର ସମ୍ପୂର୍ଣ୍ଣ ପରିଧି ବୁଲି ଆସିଅଛୁ ଓ ଆମ୍ଭେମାନେ ଯେଉଁଠାରେ ଆରମ୍ଭ କରିଥିଲୁ ସେହିଠାରେ ହିଁ ଆସି ପହଞ୍ଚିଛୁ । ଏହା ମାଗ୍ନାକାର୍ଟା ଓ ଆଇନର ଶାସନରୁ ଆରମ୍ଭ ହୋଇଥିଲା । ଆଇନ ମାନି ଚଳୁଥିବା ନାଗରିକ ପ୍ରତି କର୍ମଚାରୀମାନଙ୍କର ଯଥେଷ୍ଟ ସମ୍ମାନ ଥାଏ । ତାଙ୍କ କ୍ଷମତା ଅଥବା ରାଣୀ ବା ମନ୍ତ୍ରୀଙ୍କ କ୍ଷମତା ଭଲଭାବେ ଆଇନ ଦ୍ୱାରା ନିର୍ଦ୍ଧାରିତ ହୋଇଥାଏ । ବ୍ରିଟିଶ୍ ପରମ୍ପରା ଅନୁକରଣ କରୁ ନଥିବା ଦେଶଗୁଡ଼ିକ ତୁଳନାରେ ଇଂଲଣ୍ଡରେ ଆଇନର ଯଥେଷ୍ଟ ପାର୍ଥକ୍ୟ ଥାଏ । ରାଣୀ ବା ମନ୍ତ୍ରୀ ବା କର୍ମଚାରୀଙ୍କ ହାତରେ କୌଣସି ନିର୍ଦ୍ଦିଷ୍ଟ ସାମାଜିକ କିମ୍ବା ଅର୍ଥନୈତିକ ସମସ୍ୟା ସମାଧାନ କରିବା ପାଇଁ ସାଧାରଣ କ୍ଷମତା ଦେବା ପାଇଁ ବୈଧାନିକ ବ୍ୟବସ୍ଥା ହୋଇ ନ ଥାଏ । ଏହା ପୁଙ୍ଖାନୁପୁଙ୍ଖ ଭାବରେ ସବୁ ବ୍ୟବସ୍ଥା କରିଥାଏ ଓ ରାଣୀ ବା ମନ୍ତ୍ରୀ ବା କର୍ମଚାରୀ କଣ କରିପାରନ୍ତି ଓ କିପରି କରିପାରନ୍ତି ତାହା ବି ଲିପିବଦ୍ଧ ଥାଏ । ପ୍ରଶାସନିକ କାର୍ଯ୍ୟ ପାଇଁ ଦଣ୍ଡ ପାଉଥିବା ବ୍ୟକ୍ତିମାନଙ୍କ କ୍ଷେତ୍ରରେ ମଧ୍ୟ ପ୍ରତିକାର ବ୍ୟବସ୍ଥା ଥାଏ । ଏକଥା ସତ୍ୟ ଯେ ଅନ୍ୟାନ୍ୟ ବିଶଦ ତଥ୍ୟ ଗୁଡ଼ିକୁ ବୈଧାନିକ ଉପାୟରେ ମନ୍ତ୍ରୀ ଉପସ୍ଥାପିତ କରିଥାନ୍ତି, କିନ୍ତୁ ଏହି ଉପାୟ ନିର୍ଦ୍ଧାରଣ କରିବାପାଇଁ ପ୍ରଦତ୍ତ କ୍ଷମତା ବି ଯଥେଷ୍ଟ ସଙ୍କୁଚିତ ହୋଇଛି । ଆଇନରେ ସାଧାରଣ ନିର୍ଦ୍ଦେଶନାମା ଦେବା ପାଇଁ କେଉଁଠାରେ ବ୍ୟବସ୍ଥା ନ ଥାଏ । ଆଇନକୁ କାର୍ଯ୍ୟକାରୀ କରିବା ପାଇଁ ସାଧାରଣ ନିୟମ ପ୍ରଣୟନ କରିବା ହେଉଛି ଗୋଟିଏ ଫରାସି ଚିନ୍ତାଧାରା, କାରଣ ଏପରି ବ୍ୟବସ୍ଥା ବ୍ରିଟେନ୍‌ରେ ଦେଖାଯାଇ ନ ଥାଏ ।

ଆଇନରେ ବିନିୟମ ପ୍ରବର୍ତ୍ତନ କରିବା ବ୍ୟବସ୍ଥା ଥିବା ଫଳରେ ଯେଉଁଠାରେ କର୍ମଚାରୀ ନିଜ କ୍ଷମତା ବହିର୍ଭୂତ କାର୍ଯ୍ୟ କରିଥାଆନ୍ତି କିମ୍ବା ପ୍ରଦତ୍ତ କ୍ଷମତାର ଅସଦ୍ ବ୍ୟବହାର କରିଥାଆନ୍ତି ବୋଲି ଅଭିଯୋଗ ହୋଇଥାଏ ଏବଂ ଯେ ରାଣୀ ବା ମନ୍ତ୍ରୀଙ୍କ ତରଫରୁ ଏହା କରିଥିଲେ ବୋଲି କୁହାଯାଏ, ସେଠାରେ ହସ୍ତକ୍ଷେପ କରିବା ନ୍ୟାୟାଳୟ-ଗୁଡ଼ିକର ଅଧିକାର ଓ କର୍ତ୍ତବ୍ୟ ଅଟେ । ଏହି କ୍ଷମତା ସେମାନଙ୍କର ଅଛି ବୋଲି ନ୍ୟାୟାଳୟଗୁଡ଼ିକ ଧରି ନିଅନ୍ତି ଓ ଏଥିପାଇଁ ଆବଶ୍ୟକ ହେଉଥିବା ବିଚାର ପଦ୍ଧତି ମଧ୍ୟ ସେମାନେ ବାହାର କରିଛନ୍ତି ।

ସପ୍ତଦଶ ଶତାବ୍ଦୀରେ ସାମ୍ବିଧାନିକ ବିବାଦଗୁଡ଼ିକ ଉଭୟ ନ୍ୟାୟାଳୟ ଓ ସଂସଦରେ କାର୍ଯ୍ୟକାରୀ ହେଉଥିଲା ଓ ଏହା ଫଳରେ ସେମାନଙ୍କର ରାଷ୍ଟ୍ରର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସମ୍ବନ୍ଧରେ ଆଲୋଚନା କରିବାର ଅଧିକାର ଥିଲା । ବିପ୍ଳବ ଫଳରେ ନ୍ୟାୟାଳୟଗୁଡ଼ିକର ସ୍ୱାଧୀନତା ସୁରକ୍ଷିତ ହୋଇଛି ଓ "ଅନମନୀୟ ବୃଦ୍ଧ କୋକ୍"ଙ୍କ ପରମ୍ପରା ତାଙ୍କର ଉତ୍ତରାଧିକାରୀମାନେ ଅତୁଟ ରଖିବାକୁ ସମର୍ଥ ହୋଇଛନ୍ତି । ରାଣୀଙ୍କ ଉଚ୍ଚ ପଦ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶିତ ହୁଏ । କିନ୍ତୁ ରାଜପଦର ଆଇନାନୁମୋଦିତ ଅସ୍ତିତ୍ୱ ଥିବାରୁ ଏହାକୁ ସର୍ବଦା ସନ୍ଦେହ ଚକ୍ଷୁରେ ଦେଖାଯାଇଥାଏ । ଜଣେ ଅଧିକାରୀ ଜଣେ ବ୍ୟକ୍ତିଠାରୁ ଭିନ୍ନ ନୁହେଁ । ସେ ଜଣେ ନାଗରିକ ମାତ୍ର ଏବଂ ଯଥେଷ୍ଟ ସାଧୁତା ଓ ଯୋଗ୍ୟତା ଥିବାରୁ ସେ କେତେକ ବିଶେଷ କ୍ଷମତା ଉପଭୋଗ କରିଥାଏ । ସାଧାରଣ ସ୍ୱାର୍ଥର ସୁରକ୍ଷା ପାଇଁ କୌଣସି ବିଷୟକୁ ସମର୍ଥନ କରାଯାଇ ନ ପାରେ କାରଣ ସାଧାରଣ ସ୍ୱାର୍ଥ କେବଳ କେତେକ ବ୍ୟକ୍ତିଗତ ସ୍ୱାର୍ଥର ସମଷ୍ଟି ମାତ୍ର । ସୁତରାଂ ସାଧାରଣ ସ୍ୱାର୍ଥ ପାଇଁ କୌଣସି ଅନ୍ୟାୟ କରାଯାଇ ପାରିବ ନାହିଁ । ଶାସନ କରିବା ପାଇଁ ସରକାରଙ୍କର ଆଇନସମ୍ମତ କ୍ଷମତା ଅଛି ସତ୍ୟ, କିନ୍ତୁ ସରକାର ନିଶ୍ଚିତ ଭାବରେ ଆଇନ ଅନୁସାରେ ଶାସନ କରିବା ଉଚିତ ।

## ଆମ ସଂସ୍ଥାଦ୍ୱାରା ପ୍ରକାଶିତ ରାଜନୀତି ବିଜ୍ଞାନ ସମ୍ବନ୍ଧୀୟ ଅନ୍ୟାନ୍ୟ ପୁସ୍ତକ

ଏଚ୍

। ବିଜ୍ଞାନ—ଅଧ୍ୟାପକ ବିଷ୍ଣୁ ଚରଣ ସାହୁ — ଟ ୫-୦୦

୨ ଶାସନ—ଡକ୍ଟର ଭାସ୍କରଚନ୍ଦ୍ର ଦାସ — ଟ ୮-୨୫

ବି. ଏ.

୧ । ସୋଭିଏଟ୍ ୟୁନିୟନ ଓ ସ୍ୱିଜରଲାଣ୍ଡର ସମ୍ବିଧାନ—
ଅଧ୍ୟାପକ ପରମେଶ୍ୱର ବେହେରା — ଟ ୩-୦୦

୨ । ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ—
ଅଧ୍ୟାପିକା ଶାରଦା ରଥ — ଟ ୭-୫୦

୩ । ଆନ୍ତର୍ଜାତିକ ଆଇନ—ଅଧ୍ୟାପକ ବଣ୍ଟମୋହନ ମିଶ୍ର — ଟ ୧୧-୦୦